# ଭିନ୍ନ ପାଉଁଶ

ଲେଖକ
ଶ୍ରୀ କିଶୋରୀ ଚରଣ ଦାସ

ପ୍ରକାଶକ
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ : ସ୍ୱଜାଆଁ ୧୯୮୪
ଦ୍ୱିତୀୟ ସଂସ୍କରଣ : ଶ୍ରୀଚୁଣ୍ଡିଗ୍ଭ ୧୯୯୭

ମୁଦ୍ରଣ :
ମା' ସନ୍ତୋଷୀ ପ୍ରେସ୍
କାଜିବଜାର, କଟକ-୧

ମୂଲ୍ୟ : ପଞ୍ଚତିରିଶ ଟଙ୍କା (ସାଧାରଣ)
ଶୋଭନ : ଚାଳିଶ ଟଙ୍କା ମାତ୍ର

**BHINNA PAUNSA**

By
**SRI KISHORI CHARANA DAS**
Member (F), A S E B
Narangi, Gauhati, 781026
(Assam)

Published by
**Sri Gobinda Charan Patra**
**ORISSA BOOK STORE**
Binode Behari, Cuttack-753 002
2nd Edition : 1997

PRICE : Rs. 40/
ISBN 81-7400-183-2

ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ ଶ୍ରୀଚରଣକମଳେଷୁ ।

ସମସାମୟିକ ଓ ପ୍ରାୟ ସମବୟସ୍କ ଗାଳ୍ପିକ ହିସାବରେ ଆମେ ଦୁଇଜଣ ଏଇ ସୃଷ୍ଟିଛଡ଼ା ସଂସାରରେ କଣ ବା ସୃଷ୍ଟି କଲୁ ଏବଂ ତା'ର ମୂଲ୍ୟ କଅଣ, ସେ ବିଗ୍ରହ ଆମ ହାତରେ ନାହିଁ । କିନ୍ତୁ ମନରେ ଆସୁଛି ଯେ "ବିଧାତା"ର ବଗଦ ଥିଲି ଆମେ ଏକା ସମୟରେ ଏଠିକି ଆସିବା ଓ କିଛି ଗୁଡ଼ାଏ ଲେଖିଯିବା । କେତେକ କୁହନ୍ତି ଯେ ଭାଷାବିନ୍ୟାସରେ ମୋର କାର୍ପଣ୍ୟ ଓ ଆପଣଙ୍କର ବଦାନ୍ୟତା, ଭାବ ଭାବନାରେ ମୋର ସଂକୋଚ ଓ ଆପଣଙ୍କର ସାହସ, ମୋର ନୈସର୍ଗିକ ଦୁଃଖ ଓ ଆପଣଙ୍କର ଆନନ୍ଦ, ମୋର ସହାନୁଭୂତି ଓ ଆପଣଙ୍କର କରୁଣା, ଇତ୍ୟାଦିର ବୈଷମ୍ୟ ସାହିତ୍ୟକୁ ସୁଖୀ କରିଛି । ସତେକି ଆମେ ସଲ୍ପସୂତର ହୋଇ ଏମିତି ଲେଖୁଛୁ, ପାଠକର ମନୋରଞ୍ଜନ ପାଇଁ !

କିନ୍ତୁ ସେମାନେ ଜାଣିବେ ନାହିଁ ଯେ ସଲ୍ପସୂତର ହୋଇନାହୁଁ ସିନା, ମୁଁ କେତେଥର ଆପଣଙ୍କର ଅନାବିଲ ଆବେଗ ଓ ଆନ୍ତରିକତାରୁ ଚୋରି କରି ନେବା ପାଇଁ ଚାହିଁଛି । ନିଜ ଅଜାଣତରେ କିଛି ନେଇ ନ ଥିବି ବୋଲି କିଏ କହିବ ? ଏବଂ ବହୁଭାବରେ ବହୁ କ୍ଷେତ୍ରରେ ଆପଣଙ୍କର ଶ୍ରଦ୍ଧା ହାସଲ କରି ନେଇଛି । ଉଚିତରୁ ଅଧିକ । ସେହି ଋଣ ଶୁଝେଇ ହେବ ନାହିଁ କିନ୍ତୁ ସ୍ୱୀକାର କରି ହେବ ତ, ଏହି ଭାବରେ ମୋର "ଭିନ୍ନ ପାର୍ବଣ"ଟିକୁ ଆପଣଙ୍କ ହାତରେ ଦେଲି । ଇତି

କିଶୋରୀ ଚରଣ

# ମୁଖବନ୍ଧ

ମୃତ୍ୟୁର ଆଗମନରେ ସ୍ୱାମୀ ବିବେକାନନ୍ଦ ଜଣେ ବନ୍ଧୁଙ୍କ ପାଖକୁ ଚିଠି ଲେଖିଥିଲେ—ମୋର ଆନନ୍ଦ ଯେ ମୁଁ ଜନ୍ମ ହୋଇଥିଲି, ଆନନ୍ଦ ଯେ ଏତେ ଦୁଃଖ କଷ୍ଟ ଭୋଗିଲି, ଆନନ୍ଦ ଯେ କେତେକ ମସ୍ତବଡ ଭୁଲ କରି ପକାଇଲି, ଏବଂ ଆନନ୍ଦ ଯେ ଶାନ୍ତିର କୂଳରେ ପହଞ୍ଚିଲିଣି । କାହାରିକୁ ବନ୍ଧନରେ ଛାଡ଼ି ଦେଇ ଯାଉନାହିଁ କି କେଉଁ ବନ୍ଧନକୁ ସାଙ୍ଗରେ ନେଇ ଯାଉ ନାହିଁ···

ମୃତ୍ୟୁଶଯ୍ୟାରେ ଥାଇ ସମ୍ରାଟ ଔରଙ୍ଗଜେବ୍ ତାଙ୍କର ପ୍ରିୟ କାମବକ୍ସଙ୍କ ପାଖକୁ ଚିଠି ଲେଖିଥିଲେ—ଆଶ୍ଚର୍ଯ୍ୟ ଯେ ମୁଁ କିଛି ନ ନେଇ ସଂସାରକୁ ଆସିଥିଲି, କିନ୍ତୁ ବର୍ତ୍ତମାନ ବିରାଟ ପାପର କ୍ୟାରାଭାନ୍ ସାଙ୍ଗରେ ନେଇ ଫେରୁଛି···

ଦୁଃଖର ବିଷୟ ଏ ଦୁଇଜଣଙ୍କ ମଧ୍ୟରୁ କେହି ଆଧୁନିକ ଲେଖକ ନ ଥିଲେ । ତାହାହେଲେ ପରମ ଶାନ୍ତି ଅବା ଚରମ ଗ୍ଲାନିର କ୍ଲାଇମାକ୍ସରୁ ବର୍ତ୍ତି ଯାଇଥାଆନ୍ତେ । କାହିଁକିନା ଇତି ସମାପ୍ତିର ଅସଭ୍ୟତା ଆମ ଧାତୁରେ ଯାଏ ନାହିଁ । ମୃତ୍ୟୁର ମୁହାଁମୁହିଁ ହେଲେ ମଧ୍ୟ ଆମେ କହିପାରୁ ଆମର ସନ୍ଦେହ ହେଉଛି ତୁମେ ମୃତ୍ୟୁ ନୁହଁ । ଜୀବନପରି ଆଉ ଗୋଟାଏ ଛଳନା । ସତର ମିଛ । ତୁମକୁ ନେଇ ମଧ୍ୟ ଗପ ଲେଖି ହେବ, ଅପେକ୍ଷା କର ।



# ମୁଖବନ୍ଧ

ମୃତ୍ୟୁର ଆଗମନରେ ସ୍ୱାମୀ ବିବେକାନନ୍ଦ ଜଣେ ବନ୍ଧୁଙ୍କ ପାଖକୁ ଚିଠି ଲେଖିଥିଲେ—ମୋର ଆନନ୍ଦ ଯେ ମୁଁ ଜନ୍ମ ହୋଇଥିଲି, ଆନନ୍ଦ ଯେ ଏତେ ଦୁଃଖ କଷ୍ଟ ଭୋଗିଲି, ଆନନ୍ଦ ଯେ କେତେକ ମସ୍ତବଡ ଭୁଲ କରି ପକାଇଛି, ଏବଂ ଆନନ୍ଦ ଯେ ଶାନ୍ତିର କୂଳରେ ପହଞ୍ଚିଥିଲିଣି । କାହାରିକୁ ବନ୍ଧନରେ ଛାଡ଼ି ଦେଇ ଯାଉନାହିଁ କି କେଉଁ ବନ୍ଧନକୁ ସାଙ୍ଗରେ ନେଇ ଯାଉ ନାହିଁ···

ମୃତ୍ୟୁଶଯ୍ୟାରେ ଥାଇ ସମ୍ରାଟ ଔରଙ୍ଗଜେବ୍ ତାଙ୍କର ପ୍ରିୟ କାମବକ୍ସଙ୍କ ପାଖକୁ ଚିଠି ଲେଖିଥିଲେ—ଆଶ୍ଚର୍ଯ୍ୟ ଯେ ମୁଁ କିଛି ନ ନେଇ ସଂସାରକୁ ଆସିଥିଲି, କିନ୍ତୁ ବର୍ତ୍ତମାନ ବିରାଟ ପାପର କ୍ୟାରଭାନ୍ ସାଙ୍ଗରେ ନେଇ ଫେରୁଛି···

ଦୁଃଖର ବିଷୟ ଏ ଦୁଇଜଣଙ୍କ ମଧ୍ୟରୁ କେହି ଆଧୁନିକ ଲେଖକ ନ ଥିଲେ । ତାହାହେଲେ ପରମ ଶାନ୍ତି ଅବା ଚରମ ଗ୍ଲାନିର କ୍ଲାଇମାକ୍ସରୁ ବର୍ତ୍ତି ଯାଇଥାଆନ୍ତେ । କାହିଁକିନା ଇତି ସମାପ୍ତିର ଅସଭ୍ୟତା ଆମ ଧାତୁରେ ଯାଏ ନାହିଁ । ମୃତ୍ୟୁର ମୂହାଁ । ମୁହିଁ ହେଲେ ମଧ୍ୟ ଆମେ କହିପାରୁ ଆମର ସନ୍ଦେହ ହେଉଛି ତୁମେ ମୃତ୍ୟୁ ନୁହଁ । ଜୀବନପରି ଆଉ ଗୋଟାଏ ଛଳନା । ସତର ମିଛ । ତୁମକୁ ନେଇ ମଧ୍ୟ ଗପ ଲେଖି ହେବ, ଅପେକ୍ଷା କର ।



## ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ

**ଓଡ଼ିଆ**

ଭଙ୍ଗା ଖେଳଣା, ଘରବାହୁଡ଼ା, ଲକ୍ଷବନ୍ଧଙ୍ଗ, ମଣିହରା,
ଠାକୁର ଘର, ନାଲି ଗୁଲୁଗୁଲୁ ସାଧବ ବୋହୂ, ଗମନ,
ଖେଳର ନାଆଁ ରଙ୍ଗ—ଗଳ୍ପ ସଂକଳନ

ମିନ କାମନା—କବିତା ସଂକଳନ

**ଇଂରାଜୀ**

Faces in the Dark —କବିତା ସଂକଳନ

Death of an Indian and other Stories—ଗଳ୍ପସଂକଳନ

## ଏଥିରେ ଅଛି—





# ଶୂନ୍ୟ ନେଇଗଲା ତାମସ କାଉ

ବାହାରେ ବର୍ଷା ପିଟୁଛି । ଘର ଭିତରେ କାଚ ଆଲମାରୀରେ ସଜା ହୋଇଥିବା ଦାମୀ ବନ୍ଧେଇ ବହି ସ୍ଥିତି ଓ ସଂପଦର ପରିଚୟ ଦେଉଛି । ବାହାରେ ପ୍ରାକୃତିକ ପ୍ଲାବନ । ପୃଥିବୀର ନାନାଦି ମିଛସତ, ମନ୍ତ୍ରୀମାନଙ୍କର ଅନାବଶ୍ୟକ ବାଜେ କଥା, କଣ୍ଠାଥୁଣ୍ଟା ଓ ଅନାବନାକୁ ସତ୍ତ ଏକାକାର କରି ଦେବାର ଚମତ୍କାର । ଆଉ ଭିତରେ କ'ଣ ଅଛି ? ଦୀନବନ୍ଧୁ ବାବୁ ମନକୁ ମନ ହସିଲେ ଭିତରେ ଉତ୍ତମ, ଐଶ୍ୱର୍ଯ୍ୟ ଇତ୍ୟାଦି ଅଛି ବୋଲି କହିଲେ କୁହ, ଦୀନବନ୍ଧୁ ''ଦୁର୍ବାସାକୁ' କେତେଜଣ ଜାଣନ୍ତି ? ଦେଖିବାକୁ ସେ ଅନେକ ଲେଖିଛି, ନାଆଁ କମେଇଛି, ଟଙ୍କା ଜମେଇଛି, କୋଠା ତୋଳିଛି, ନିଜ ଲେଖା ଓ ପର ଲେଖା ବହିମାନଙ୍କୁ ଠିକଣା ଭାବରେ ସଜେଇଛି ଏବଂ ପ୍ରସିଦ୍ଧ ପେଣ୍ଟିଙ୍ଗ୍ ମାନଙ୍କର ପ୍ରତିଲିପି ବେଠିକଣା ଭାବରେ ଦର୍ଶେଇଛି, ଇଣ୍ଟେଲେକ୍‌ଚୁଆଲମାନଙ୍କ କର୍ମ କୁଟୀରରେ ଯେମିତି ଆଶା କରିବା ସ୍ୱାଭାବିକ । ଏଠି ଲକ୍ଷ୍ମୀ ଓ ସରସ୍ୱତୀଙ୍କର ଅପୂର୍ବ ସମନ୍ୱୟ କହିଲେ ମଧ୍ୟ ଭୁଲ ହେବ ନାହିଁ, କିନ୍ତୁ ଦୁର୍ବାସା ଲେଖାଲେଖି ବନ୍ଦ କରି କେବଳ ଆରାମ କରୁଛି ବୋଲି ଭାବୁଛ ? ଭକ୍ତ ଭୋଗକୁ ଚୁକୁଲେଇ ହେଉଛି ବୋଲି ମନେ କରୁଛ ? ବୁଝି ପାରିବ ନାହିଁ । ଆଉ କାହା କଥା କ'ହିବି, ନିଜେ ନ ଧନୀ ମଧ୍ୟ ଧରି ପାରୁନାହିଁ —।

ସେ ତା'ର ସୁଲେଖକ ସୁସମ୍ପନ୍ନ ସ୍ୱାମୀ ନାମଦାମ ଗ୍ରୁଣ୍ଡ଼ି ଦେଇ ଗୋଟିଏ କଥାକୁ ଅନେଇ ବସିଛି । ଅନୁଭବ । ତା'ର ଚରିତମାନେ ଯାହା କରିଛନ୍ତି, ପାଠକମାନଙ୍କ ଆଖିରେ ଭେଲିକି ଲଗେଇଛନ୍ତି, ସେଇଥିରୁ ସଡ଼୍‌କିଛିତ୍ ।

ମାନେ ଅତ୍ୟନ୍ତର ଅନୁଭବ । ଯେମିତିକି ''ବୃଦ ବୃଦର ଢେଉ'' ଉପନ୍ୟାସରେ ଉର୍ମିପର ପୁରୁଷକୁ ମହା ବିଳମ୍ବରେ ପାଇଲା, ଯେତେବେଳେ ତା'ର ମୁଣ୍ଡବାଳ ଝୋଟ ହୋଇଯାଇଥିଲା, ଆଖିକୁ ଭଲ କରି ଦିଶୁ ନଥିଲା ଏବଂ ପାଇଲାରୁ ପାଉଁଶ ହୋଇଗଲା । ଯେତେକ ଅତୀତ ଭବିଷ୍ୟତକୁ ମୁକ୍ତ କରି ଦେଲା, କିମ୍ବା ''ଚ୍ଛେଦନ''ର ଅନାଦି ମହାନ୍ତ, ଯାସ ଜୀବନ ପୃଥିବୀ ସହିତ ଯୁଦ୍ଧ କରି ଯେଉ ପୂର୍ବ

,

ସନ୍ତାନକୁ ଠିଆ କରାଇଥିଲା. ତା' ସ୍ୱପ୍ନାଣୀର ଦର୍ପଣରେ ନିଜର କୃଷ୍ଣକୁ ଦେଖୁଥିଲା, ସେଇ ପୁଅର ମରିଗଲା ପରେ (କୁଷ୍ଠିତ ରୋଗରେ ମରିଗଲା ପରେ) ସେ କେମିତି ତା' ମାଟି କୃଷ୍ଣର ମୁଣ୍ଡ କାଟି ଦେଲା । ଆତ୍ମାକୁ ନାଶ କଲା । ଚାଲିଗଲା । "ଜଟାଲଟା"ରେ ନିରୁପମା ତା'ର ଲମ୍ପଟ ସ୍ୱାମୀକୁ କୌଣସି ମତେ ବଶ କରି ନ ପାରି ଶେଷକୁ ଫ୍ୟାଣ୍ଟାସିର ଆଶ୍ରୟ ନେଲା, ସ୍ୱାମୀକୁ ଶିବ ବୋଲି ଭାବିଲା ଓ ସେକ୍ସ କଲା, ଅପର୍ଯ୍ୟାପ୍ତ ସେକ୍ସ କଲା ଓ କାନ୍ଦିଲା । ଏମିତି କାନ୍ଦିଲା କାନ୍ଦିଲା ସେ—। ଆଃ ! ଦୁର୍ବାସା ପରି କେତେ ଜଣ ଲେଖକ ଅଛନ୍ତି, ଦୁଃସାହସୀ, ଯେଉଁମାନେ ଏଭଳି ଅଭ୍ୟନ୍ତର ଅନୁଭବ, ସେଥିରେ ପାପ ଥାଉ କି ପୁଣ୍ୟ ଥାଉ, କି ଛେନା ବଡ଼ା ଥାଉ, ଆଣି ଦେଇ ପାରିଛନ୍ତି ? ମୁଁ ମୋ ପାଠକମାନଙ୍କୁ ଠକେଇଛୁ ବୋଲି କହୁଛ ? ମୋଟେ ନୁହେଁ । ମୁଁ ଜଣେ ଏମିତି ହୁଏ । ହେଲେ ଯାଇଁ ମୁକ୍ତି । ସାର୍ଥକତା ।

ମୋର ମଧ୍ୟ ହେବ । ସେଇଥିପାଇଁ ଅନେଇ ବସିଛୁ ।

ଦୀନବନ୍ଧୁ ବାବୁ ବର୍ଷାକୁ ଅନେଇ ରହିଲେ । ଗ୍ରେଟିଆ ଆଖି ଦୁଇଟିରେ (ସେଥିରେ ବିଷାଦର ଗମ୍ଭୀର ଦିଶି ଯାଉଛି ବୋଲି ଜଣେ ସାକ୍ଷାତ୍କାରୀ ଲେଖିଥିଲେ) ସମସ୍ତ ଶକ୍ତି ଦେଇ ବାରମ୍ବାର ଅନେଇଲେ । ଚଟେଇର ଡେ଼ଣା ଅଧୁରା ଅଧୁରା ଓଦା ହେଲେ ଯାଇଁ ···ଶାଗୁଆ ପତ୍ରରୁ ଯେତିକି ଶାଗୁଆ ଫୁଟି ଉଠିଲା ପରେ, ରଙ୍ଗଟିକ ଚପୁଡ଼ି ହୋଇ ଝରିଗଲା ପରେ·· ପାଓ୍ୱାର ଷ୍ଟେସନ୍‌ର ଧୂଆଁ ବର୍ଷା ସାଙ୍ଗରେ ଲଢ଼େଇ କରୁଛି, ଧୂଆଁରେ ବର୍ଷା ପୋଡ଼ି ହୋଇଯିବ, ବର୍ଷାରେ ଧୋଇ ହୋଇଯିବ, ତା' ହେଲେ ଯାଇଁ ରବୀନ୍ଦ୍ରନାଥ କହୁଥିଲେ—ଏମନ ଦିନେ ତା'ରେ ବଲା ଯାଏ—କାହିଁକି କହୁଥିଲେ ? କାହିଁକିନା ବର୍ଷାର ଅଧିଶଯ୍ୟତାରେ ଏକ ବିଶେଷତ୍ୱ ଅଛି, ସ୍ନିଗ୍ଧତାର ଅତିଗୃଢ଼, ଯାହା ଖାସ୍ ଆମଭଳିମାନଙ୍କ ପାଇଁ ଭକ୍ତି-ପ୍ରେମିକ-ଲେଖକମାନଙ୍କ ପାଇଁ, ଯେଉଁମାନେ ହିଂସାର ଧାର ଧାରନ୍ତି ନାହିଁ, ଅଥଚ ଏଇଥିରୁ ଅଭ୍ୟନ୍ତର ଆଶ୍ୱାସ ପାଇବେ । ଊର୍ମି, ଅନାଦି ମହାନ୍ତି ଇତ୍ୟାଦିଙ୍କ ପାଇଁ ନୁହେଁ । ନିଜ ପାଇଁ ।

ନିଜ ପାଇଁ ନ ହେଲେ ବର୍ଷାକୁ ଅନେଇବା ଦରକାର ନାହିଁ । ଯଥେଷ୍ଟ ଦେଖିଛୁ । ବରଂ ପିଲାଙ୍କ କମିକ୍ ବହିରୁ ଗୋଟାଏ ନେଇଆସି ପଢ଼ିଲେ ଭଲ । ଦୀନବନ୍ଧୁ ବାବୁ ଭାବିଲେ ।

ଭାବିଲେ ଯେ ଦୁଃଖର ବିଷୟ ତାଙ୍କ ନାଆଁ ପଛରେ "ଦୁର୍ବାସା" ଲାଗିଥିଲେ ମଧ୍ୟ ତାଙ୍କୁ କ୍ରୋଧୀ ବୋଲି କେହି ବିଶ୍ୱାସ କରନ୍ତି ନାହିଁ । ସ୍ତ୍ରୀ ପରିବାର ବନ୍ଧୁ ପରିଜନ କେହି ବୁଝନ୍ତି ନାହିଁ ଯେ ଭାବୁକର ରାଗ ବାହାରକୁ ଜଣା ପଡ଼େନାହିଁ

ଥିଲା, ତାହା ସବୁଠାରୁ ମାରାତ୍ମକ । ମଣିଷକୁ ମାରିଦେବା ସହଜ, କିନ୍ତୁ କଳା କଳ୍ପନାର ଅହଲ୍ୟାମାନଙ୍କୁ ମିଛ ବୋଲି କହି ପୁଣି ପଥର କରିଥେବା କେଡ଼େ ଭୟଙ୍କର, ସାଧାରଣ ଲୋକମାନଙ୍କ ମୁଣ୍ଡରେ ପଶିବ ନାହିଁ; କିନ୍ତୁ ଦରକାର ହେଲେ ତା' ମଧ୍ୟ କରିବ ମୋର ତେଇଶ ଖଣ୍ଡ ଉପନ୍ୟାସ, ଦୁଇଶହରୁ ଊର୍ଦ୍ଧ୍ୱ ଗଳ୍ପ, ସବୁଗୁଡାକ ଗୋଟି ଗୋଟି କରି....

"ବାପା, ଫଳବାଲା ଆସିଛି । କହୁଛି ଭଲ ଆମ୍ବ ଆଣିଛି, ଲଂଗ୍‌ଡ଼ା···"

ଏଁ ? ଲଂଗଡ଼ା ଆମ୍ବ ? କଏ ଆଣିଲା ? କାହିଁକି ? ବର୍ଷା କ'ଣ ବନ୍ଦ ହୋଇଗଲାଣି ?

କିଛିକ୍ଷଣ ଉତ୍ତରରୁ ଚେତା ପଶିଲା ଯେ ଧ୍ୟାନ ଭାଙ୍ଗିଗଲା ସିନା, ବର୍ଷା ବନ୍ଦ ହୋଇନାହିଁ । କଡ଼ା କଡ଼ା ପ୍ରଶ୍ନମାନଙ୍କର ଉତ୍ତର ମିଳିବା ଦୂରର କଥା, ଶତ୍ରୁପକ୍ଷ ସାମନାରେ ଆସି ଛିଡ଼ା ହୋଇଛି । ମୁଣ୍ଡରେ ଟୋକେଇ । ଟୋକେଇରେ ଅମ୍ବ ।

ସମ୍ମୁଖର ଦୃଶ୍ୟ ଉପରେ ପୁରାପୁରି ଫୋକସ୍ କରି ସାରିଲା ପରେ ଦୀନବନ୍ଧୁ ବାବୁ ଆଶ୍ଚର୍ଯ୍ୟ ହେଲେ । ଫଳବାଲା ସିଧାସଳଖ ଘର ଭିତରକୁ ପଶି ଆସିଲା କେମିତି ? ଯେ କବାଟ ଖୋଲିଲା ତା'ର କହିବା ଉଚିତ ଥିଲା—ରହିଥା' 'ମୁଁ ମାଆଙ୍କୁ ଡାକ ଦେଉଛି, ହଁ, ମାଆଙ୍କୁ ଡାକିବା କଥା, ମୋତେ ନୁହେଁ । ଫଳବାଲାମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ମୋ କାମ ନୁହେଁ । ସମସ୍ତେ ଜାଣନ୍ତି ।'

କିନ୍ତୁ ବୁଝିବାକୁ ଡ଼େରି ହେଲାନାହିଁ ଯେ ବର୍ତ୍ତମାନ ଘରେ କେହି ନାହାନ୍ତି । କେବଳ ନନ୍ଦିନୀ ଓ ଜସ୍ମା । ନନ୍ଦିନୀ ବୋଧହୁଏ ଗାଧୁଆ ଘରେ ଅଛି । ଜସ୍ମାଟା ହୁଣ୍ଡୀ ।

ଜସ୍ମାଟା ନହାତି ହୁଣ୍ଡୀ । ତା' ବୋଉ କହେ ବାଉସା ଘର ଝିଅ ହୋଇ-ଥିଲେ ହେଁସେ ପିଲା ହୁଅନ୍ତେଣି । ମୁଁ ସେମିତି କହେ ନାହିଁ କାଳେ ତା, ମନକୁ ବାଧିବ; କିନ୍ତୁ ମୋଟ ଉପରେ କଥାଟା ସତ, ଜସ୍ମାର ମୋଟେ ବୁଦ୍ଧି ହେଉନାହିଁ ।

ଦୀନବନ୍ଧୁ ବାବୁ ଲକ୍ଷ୍ୟ କଲେ ଯେ ଜସ୍ମା ବାପାକୁ ଖବର ଦେଇ ପଳେଇ ଯାଇନାହିଁ । ଚୁପ୍‌କିନା ପଛରେ ଛିଡ଼ାହୋଇ ରହିଛି । ସତେ କି ମୋ ଧ୍ୟାନଭଙ୍ଗ ଅବସ୍ଥାରେ ମଜା ଦେଖୁଛି । ମୋତେ ଚଡ଼ଉଛି । ଯେମିତିକି ସିଏ ବି ମୋ ଗେହ୍ଲା ଝିଅ ।

(ଗେହ୍ଲା ଝିଅ ନୁହେଁ ତ ଆଉ କଅଣ ? ମୋ ଗେହ୍ଲାରେ ଟିକିଏ ବୋଲି ପାତର ଅନ୍ତର ନାହିଁ । ଜସ୍ମା ଯେମିତି, ପ୍ରିୟା ସେମିତି । ପ୍ରଣବ ମଧ୍ୟ ସେମିତି ।)

‘‘ଆଜ୍ଞା, ଇଏ ଅପଲ ବନାଉଛି ଲଂଗଡ଼ା ।’’ ଲୋକଟା ମୁଣ୍ଡରୁ ଟୋକେଇ କାଢ଼ି ଗାଲିଚ୍ଚ ଉପରେ ବସି ପଡ଼ିଲାଣି । ବେଶ୍ ଝଶୁଆ ଅଛୁ । ବିନା ସାହାଯ୍ୟରେ ଟୋକେଇକୁ ଓହ୍ଲେଇ ଦେଲା । ବେଶି ବୟସ ହେବ ନାହିଁ । ଯାହାହେଉ ଆମ୍ବ କିଣିଲେ କିଣିବ ପଛକେ ତାକୁ ଶୀଘ୍ର ବିଦା କରିବାକୁ ହେବ । ଧାନବନ୍ଧୁ ବାବୁ ପ୍ରସ୍ତୁତ ହେଲେ ଏବଂ ସେହି ସମୟରେ ତାଙ୍କର ମନେହେଲା ଯେ ଜସ୍ନା ଅନ୍ଧାର ପାଖେଇ ଆସିଲେଣି, ସୋଫାର ପିଠିରେ ଲଦହୋଇ ଛିଡ଼ା ହୋଇଛି । ତା’ମୁଣ୍ଡ ବାଳରୁ କେବଳ ମୋ ଅଡ଼କୁ ଉଡ଼ି ଆସୁଛି । ତା’ର ମୋଟା ଗ୍ଲାଇ···

(ସେ ମୋଟୀ ବୋଲି ମୁଁ ଅକ୍ଷେପ କରୁନାହିଁ । ସେ କାଳୀ ବୋଲି ଗ୍ଲାନି ପଡ଼ୁଛି ବୋଲି କହୁ ନାହିଁ । ସେ ମଧ୍ୟ ମୋର ଝିଅ । ସେ ମଧ୍ୟ ମୋର ସ୍ନେହୀ ଝିଅ ।)

ଧାନବନ୍ଧୁ ବାବୁ ଅମ୍ବ ମୂଲେଇଲେ । ଜସ୍ନା ସାମନାକୁ ଅସିଗଲାଣି । ଆଣ୍ଠେଇଲା ପରି ବସି ଫଳ ବାଛୁଛି । ତା’ ମୁହଁ ପାଖରେ ଫଳବାଲାର ମୁହଁ ବେଶି ଦୂରରେ ନାହିଁ । ହୁଏତ ତା’ର ଗୋଟାଏ କୁଞ୍ଚୁକୁଞ୍ଚିଆ ମୁଣ୍ଡ ବାଳ ଫଳ ବାଲାର ମୁହଁ ପାଖକୁ ମଧ୍ୟ ଉଡ଼ି ଅସୁଥିବ । ଦୁହିଁଙ୍କ ଦେହ ରଙ୍ଗରେ ବିଶେଷ ପ୍ରଭେଦ ନାହିଁ । ଧାନବନ୍ଧୁ ବାବୁ ଚମକି ଉଠିଲେ । ଜସ୍ନା ମୋ ଉପନ୍ୟାସର ଚରିତ୍ର ନୁହେଁ, ସେ ମୋ ଝିଅ । କାଳୀ ହେଉ, ମୋଟୀ ହେଉ, ଯାହା ହେଉ । ମୁଁ ତା’କୁ ଫଳବାଲା ସାଙ୍ଗରେ ଏକାଠି କରି ଦେଖିବାକୁ ଚାହୁଁନାହିଁ ଅସମ୍ଭବ । ମୁଁ ତା’ ବୋଝ ପରି ବ୍ୟସ୍ତ ହୋଇ ପଡ଼ୁନାହିଁ ଯେ ଝିଅଟିର କେଉଁଠି ହେଲେ ବାହାଘର ଜୁଟିଲା ନାହିଁ, ଯେମିତି ଚେହେରା ପାଠଶାଠ ତଦ୍ରୂପ, କୌଣସି ମତେ ପାର କରି ଦେଲେ ରକ୍ଷ, ଇତ୍ୟାଦି । ସେ ସବୁ ମୋଟେ ବାହା ନହୁଏ, ସବୁଦିନେ ଏଇଠି ରହେ, ମୁଁ ଟିକିଏ ବୋଲି ଦୁଃଖ କରିବ ନାହିଁ । ମୁଁ ଦିତ କହୁଛି........ ଧାନବନ୍ଧୁ ବାବୁ ସୁସ୍ପଷ୍ଟରୂପେ ସଫେଇ ଦେବାକୁ ବ୍ୟାକୁଳ ହେଲେ । ଆଶା କଲେ ତା’ର ଲଇଁଣି ଝିଅକୁ ଦିଶି ଯାଉଥିବ ।

ପାଛିଅରେ ଅମ୍ବଗୁଡ଼ିକ ସଜେଇ ନେଇ ଫେରିଗଲାବେଳକୁ ଜସ୍ନା ଗୋଟିଏ ସାଧାରଣ ସ୍ମିତହାସ ଦେଇଥିଲା । ଧାନବନ୍ଧୁ ବାବୁ ତା’ର ମୂଲ୍ୟ ଦେବାକୁ ଚାହିଁଲେ । ହସିଲେ ବାପ ପରି ଦେଖାଯାଉଛି । ସାକ୍ଷାତ୍କାରୀ ମୋ ହସକୁ ନେଇ କ’ଣ ଲେଖି ଥିଲେଟି ? ନା, ଇଏ ହୁଏତ ଅନ୍ଧାର ସରଳ, କୋମଳ, ଅମାୟିକ··· ।

ଧାନବନ୍ଧୁ ବାବୁଙ୍କ ମନକୁ ଆଉ ଗୋଟିଏ ଧାରଣା ମଧ୍ୟ ଛୁଇଁ ଚାଲିଗଲା । ଜସ୍ନା ବୁଦ୍ଧିର ଅଭାବରୁ ମୋତେ ହତଭମ୍ବ କଲା ତା’ ନୁହେଁ, ସେ ଜାଣିଶୁଣି

ବାପାକୁ ଡାକିଲ, ବାପାକୁ ନେଇ ଅମୃ କହିଲ, ବାପାକୁ ନେଇ ତା'ର ନିଜସ୍ୱ ମୂଲ୍ ଉଠିଲ······ବେଶ୍ !

ସେ ଦିନର ବର୍ଷା ପଥ କ୍ରମେ ଗୁନ ହୋଇଗଲା । ତେବେ ଅଷାଢ଼ ମାସ, ତେଣୁ ପରବର୍ତ୍ତୀ ଦିନମାନଙ୍କରେ ପୁଣି କେତେଥର ବର୍ଷା ଗାଜିଲ, ଝିପିଝିପି ହେଲ ଓ ଗୁମ୍ଫି ହେଲ, କିନ୍ତୁ ଅତ୍ୟନ୍ତର କାମନା ଯେ ବାରମ୍ବାର ଉଠି ଆସି ଦୀନବନ୍ଧୁ ବାବୁଙ୍କୁ ଆକ୍ରମଣ କଲ ତା' ନୁହେଁ । ଦୀନବନ୍ଧୁ ବାବୁ ଆଜିକାଲି ଲେଖାଲେଖି ଛାଡ଼ି ଦେଇଛନ୍ତି' "ବାଣୀ ବିଳାସ" ପବ୍ଲିସିଙ୍ଗ୍ ହାଉସ୍‌ରୁ କୋଡ଼ିଏ ବର୍ଷିଆ ଚାକିରିରୁ ଇସ୍ତଫା ଦେଇଥାନ୍ତି, ହେଲେ ତାଙ୍କର ସାଧାରଣ କାମ ଯଥେଷ୍ଟ ଅଛି । ପୁଅ ପ୍ରଣବ "ପ୍ରିୟା ପ୍ରକାଶିନୀ" ନାମକ ନୂଆ ପବ୍ଲିସିଙ୍ଗ ହାଉସ ଖୋଲିଛି । ମୂଳଧନ ତାଙ୍କ ନିଜ ଉପାର୍ଜନରୁ ଆସିଛି । ତା'ଛଡ଼ା ସେ ଗର୍ବ ବୋଧକରନ୍ତି ଯେ ନାଆଁଟିକୁ ସେ ନିଜେ ବାଛିଛନ୍ତି । ଝାଲି ବଡ଼ ଝିଅ ପ୍ରିୟାର ନାଆଁ ନୁହେଁ, ଜ୍ୟୋତିର୍ମୟୀ ସଫଳତାର ନାଆଁ । ବ୍ୟବସାୟ ବେଶ ଚାଲିଛି, ଚାଲିବା କଥା, କିନ୍ତୁ ପ୍ରଣବଟା ଟିକିଏ ଅଳସୁଆ କିନା, ତା'କୁ ମଝିରେ ମଝିରେ ଖେଞ୍ଚିବାକୁ ପଡ଼ିବ । ଦୋକାନରେ ଘଣ୍ଟାଏ ଖଣ୍ଡେ ବସି ପୁଅ'କୁ ତାକୁ ଫୋନ୍ ନ କଲେ ଚଳିବ ନାହିଁ । ଲୋକେ ନ ଜାଣିଥିଲେ ଜାଣିବେ ଯେ 'ପ୍ରିୟା ପ୍ରକାଶିନୀ' ବାସ୍ତବରେ ସୁପ୍ରସିଦ୍ଧ ଲେଖକ ଦୀନବନ୍ଧୁ ଦୁର୍ବାସାଙ୍କ ସନ୍ତାନ ପ୍ରଣବ ଦାସଙ୍କ ଦୋକାନ । ଶିକ୍ଷା ବିଭାଗର ସେକ୍ରେଟେରୀ ହୁଅନ୍ତୁ, ଟେକ୍ସଟବୁକ୍ କମିଟିର ସଂପାଦକ ହୁଅନ୍ତୁ, ଦୁର୍ବାସାଙ୍କ କଣ୍ଠସ୍ୱର ଶୁଣିଲେ କିଏ ଚେଇଁ ଉଠିବ ନାହିଁ ? ଯଥାବିଧି ଦସ୍ତଖତ କରିବ ନାହିଁ ? ମଞ୍ଜୁରି ଦେବ ନାହିଁ ? ଘରେ ମଧ୍ୟ ଅନ୍ୟ କାମ ଅଛି । ପ୍ରିୟାକୁ ଚିଠି ଲେଖିବା ଗୋଟାଏ କାମ । ବ ପ ଝିଅ ପାଖକୁ ଲେଖୁଛି, ସେତିକି ନୁହେଁ, ଜଣେ ବଡ଼ ଲେଖକ ତା'ର ସୁନ୍ଦରୀ ପାଠୋଇ ଝିଅ ପାଖକୁ ଚିଠି ଲେଖୁଛି । ସେଥିରେ କେତେ ଭାବର ଗରିମା, ଗମ୍ଭୀରତା, କେତେ ଭାଷାର ଚମକ । ନନ୍ଦିନୀ ମଧ୍ୟ ଆଜି କାଲି ତା'ର ମହତ୍ତ୍ୱ ବୁଝିଲଣି ବୋଲି ଦୀନବନ୍ଧୁ ବାବୁ ଖୁସି ହୁଅନ୍ତି । ଚିଠି ପଢ଼ିବାକୁ ଦେଲେ ସେ ଆଗଭଳି ତରତର ହୋଇ ପାଶ ଦେଉ ନାହିଁ, ମନ ଦେଇ ପଢ଼ୁଛି ବୁଝି ନ ପାରିଲେ ପଚାରୁଛି । ଏହା ବ୍ୟତୀତ ଘରେ ଘରଣୀ ଅଛି, ଘରକରଣା ଅଛି, ଫରମାଏସ୍ ଅଛି । ଜୟା ମଧ୍ୟ ଅଛି । ଅତଏବ ଅନ୍ତରତମ ଅଭାବ ଯେ କୌଣସି ବର୍ଷା, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଇତ୍ୟାଦିର ଦୃଶ୍ୟ ବାଟେ ପଶି ଆସି ପାରିବ ନାହିଁ । ଦୀନବନ୍ଧୁ ବାବୁ ନିହାତି ନିରସ୍ତ ନୁହନ୍ତି ।

ତେବେ ଆଶ୍ଚର୍ଯ୍ୟ କଥା, ଅସ୍ତଚୂଡ଼ାକ ମଧ୍ୟ ବେଳେବେଳେ ଏକ ସି, ଏକାନ୍ତ ଦୁର୍ବଳ ବୋଲି ମନେ ହେଉଛି । ପ୍ରିୟା ପାଖକୁ ଚିଠି ଲେଖିବାର ମଝିରେ ଜାମ

ରହି ଯାଉଛି । ମନରେ ଆସୁଛି ଯେ ସବୁ ଚିଠିରେ ଯାହା ସବୁ ଲେଖା ଯାଇଥିଲା,
ତା'ର ଯଥାର୍ଥ ପ୍ରିୟା ପାଖରେ ପହଞ୍ଚି ପାରିନାହିଁ । କାରଣ ··କାରଣ
ଖୋଜିବାକୁ ପଡ଼ିବ ନାହିଁ । ମୁଁ ଲେଖକ ହୋଇଥିଲେ । ତା'ଆଡୁ ଆସିଥିବା
ସ୍ନେହର ଧାଡ଼ିମାନଙ୍କ ଭିତରେ ପଶି ବୁଝି ପାରନ୍ତି କେଉଁଟି ସତ, କେଉଁଟି ମିଛ,
କେଉଁଟି କେତେ ଗଭୀର । ନା-ନା-ମୁଁ କହୁନାହିଁ ଯେ ପ୍ରିୟା ଦୂରେଇ ଗଲାଣି,
ତା'ର ବିଚକ୍ଷଣ ଡ଼ାକ୍ତର ସ୍ୱାମୀକୁ ନେଇ ମଜ୍ଜି ଗଲାଣି କିମ୍ବା ଉପର ମହଲର ସୌଖ-
ସମ୍ଭ୍ରମରେ ଏତେ ବିଭୋର ହୋଇ ଗଲାଣି ଯେ, ତା' ବିଦ୍ୟାବୃଦ୍ଧିର ବାପ କିଏ
ଭୁଲିଗଲାଣି । ହେଲେ ମନେ ହେଉଛି ଆବେଗ ଧୀମେଇ ଗଲାଣି, ବନ୍ଧନ ହୁଗୁଳି
ଗଲାଣି । ସେ ମୋ ସାଙ୍ଗରେ ତାଳ ଦେଇ ପାରୁ ନାହିଁ । ଆଚ୍ଛା, ପ୍ରିୟାର ପିଲାପିଲି
ହେବ ନାହିଁ ? କେବେ ହେବ ? ଦୀନବନ୍ଧୁ ବାବୁ ଅଂଶାଭମାସ୍ତ ଭାବନାକୁ
ଘଉଡ଼େଇ ଦିଅନ୍ତି, ଭାବନ୍ତି ପ୍ରିୟାର ପିଲାଟିଏ ହେଲେ ସବୁ ଠିକ୍ ହୋଇଯିବ ।
ପ୍ରିୟାର ପିଲାଦିନୁ ଟିକିଏ ଆପଣାଭୋଳା, ଇଣ୍ଟ୍ରୋଭର୍ଟ ନୁହେଁ କି ? ବାପର ଝିଅ
କିନା ! ଦୀନବନ୍ଧୁ ବାବୁ ପୁଣି ଏକପ୍ରକାର ଗର୍ବ ଅନୁଭବ କରନ୍ତି । କଲମ
ଆଗେଇ ଚାଲେ ।

ପ୍ରିୟ' ସିନା ବାପ ପରି, ପ୍ରଣବର କ'ଣ ହୋଇଛି ? ପ୍ରଣବ ଇଣ୍ଟ୍ରୋଭର୍ଟ
ବୋଲି ଭୁଲରେ ବୁଝା କେହି କହିବ ନାହିଁ; କିନ୍ତୁ ମୁଁ ଦୋକାନରେ ଆସି ପହଞ୍ଚି
ଗଲେ ତା'ର ଚେହେରା ବଦଳି ଯାଏ କି ହିନ୍ନ " ଯେପରିକି ତା'ର ଗମ୍ଭୀର ହେବା
କଥା । ମୁଁ ହେଉଛି ତା'ର ଦୁଃସ୍ୱପ୍ନର ହେଡ଼୍ ମାଷ୍ଟର ! କେବଳ ଗମ୍ଭୀର ହୋଇ
ରହିଲେ ମୁଁ ଭାବନ୍ତି ଯେ ହଁ, ସେ ବାପ ଆଗରେ କର୍ତ୍ତବ୍ୟବୋଧର ଛଳନା କରୁଛି,
କିନ୍ତୁ ତା'ର ଭୂରୁ ମଧ୍ୟ କୁଞ୍ଚେଇ ହୋଇଯାଏ, ମୁଣ୍ଡ ବଥେଇଲା ପରି ମନେହୁଏ
କିମ୍ବା ତଣ୍ଟି ପାଖରେ କିଛି ଗୋଟାଏ ରହିଗଲା, ସକାଳୁ ସକାଳୁ ରସବୋଧ
ମରିଗଲା, ଇତ୍ୟାଦିର ସନ୍ଦେହ ହୁଏ । ଯାହା କିଛି କହିଲେ ଚୁଚ୍ଛାକୁ ମୁଣ୍ଡ
ହୁଙ୍କାରେ, କ୍ୱଚିତ୍ ପାଟି ଫିଟାଏ, ହିତ୍ୟାହିତ ସାମାନ୍ୟ ଲକ୍ଷଣ ଦେଖାଯାଏ
ନାହିଁ । ବୁଝୁଁଛି । ପୁଅ ଆଜିଯାଏଁ ବଡ଼ ହୋଇନାହିଁ । ବାପ ଏଷ୍ଟାବ୍ଲିସମେଣ୍ଟର
ପ୍ରତୀକ ହୋଇଯା'ଇଛି, ଅଥଚ ବିଦ୍ରୋହ କରିବାର ଅବକାଶ ନାହିଁ, କିନ୍ତୁ ମୁଁ
କଅଣ କରିବି ? ମୋ ଦୋଷ କଅଣ ?? ଦୀନବନ୍ଧୁ ବା'ବୁ ମନେ ମନେ କାନ୍ଦିଲା
ପରି ହୋଇ ଉତ୍ତର ମାଗନ୍ତି । କିଏ ଉତ୍ତର ଦେବେ ? ବେଳେ ବେଳେ ପ୍ରିୟା
ପ୍ରକାଶନୀର ଅନ୍ୟତମ ବିଶେଷତ୍ୱ ଉତ୍କଳ ସୁନ୍ଦରୀ କ୍ୟାଲେଣ୍ଡର୍‌ର ଚଳନ୍ତି ସୁନ୍ଦରୀ
ତାଙ୍କ ଆଡ଼କୁ ଚାହେଁ । ଦସ୍ତ' ଦେଖାଇଲା ପରି । ······ରବିସ୍ ! ବାପପୁଅଙ୍କ
ମଝିରେ କୌଣସି ନାରୀର ଦଖଲ ଦେବା ଦରକାର ନାହିଁ । ଦୀନବନ୍ଧୁ ବାବୁ
ଫୋନଟାକୁ ଟାଣି ଆଣି ପୁଣି କାହାକୁ ଡାକିବେ ବୋଲି ଭାବୁଥନ୍ତି ।

ବହୁବାର ଦୀନବନ୍ଧୁ ବାବୁ ନିଜେ ଆପଣାର ନାରୀ ଚରିତ୍ରମାନଙ୍କ ପ୍ରତି ଦୟା ଦେଖାନ୍ତି । ସେମାନେ ମୋ ହାତର ଖେଳଣା, କଣ୍ଢେଇ, ମାଟି କାଢୁଅ । ମୁଁ ତାଙ୍କୁ କଣ ବୋଲି କଣ କରି ପାରିଛି ! ସେହି ସମୟରେ ସେ ପତ୍ନୀ ନନ୍ଦିନୀଙ୍କୁ ପାଖରେ ଆସି ବସିବାକୁ କହନ୍ତି ! ନନ୍ଦିନୀ ପୂର୍ବରୁ ନାରୀ ହୋଇ ନାହିଁ, ତାଙ୍କୁ ଅଗଭୀର ପ୍ରେମ କରି ହେଉନାହିଁ, ସେ ଅଗଭୀର ପ୍ରେମ କରି ପାରୁନାହିଁ, ଏହି ଧରଣର ଭାବନାଗୁଡ଼ିକ କେବଳ ମିଛୁଆ ନୁହେଁ, ବେକାର ବୋଲି ନିଜକୁ କହନ୍ତି । ନାରୀ ଚରିତ୍ରର କେତେ ରଙ୍ଗ କେତେ ବାଗ···

ତା'ଛଡ଼ା ମୋ ସ୍ତ୍ରୀ ହୋଇଛୁ ବୋଲି ସେ ମୋର ଯେତେକ ଅଭାବ ପୁରାଇବାର ଠେକା ନେଇଛୁ ନା କଅଣ ? ଦୀନବନ୍ଧୁ ବାବୁ ପରମ ଦୟା ତଥା ସ୍ନେହରେ ନନ୍ଦିନୀଙ୍କୁ ଆଉଁସି ଦିଅନ୍ତି ।

ଗୋଟିଏ ଟାଣୁଆ ଅସ୍ତ୍ରକୁ ସେ କେବେ ହେଲେ ହାତଛଡ଼ା କରିବାକୁ ଦିଅନ୍ତି ନାହିଁ । ଯେ ଏଇ ହେଉଛି ଲେଖକର ଦୁଃଖ ଓ ଗୌରବ । ଏଇ ଅଭାବ ଅଭାବ, ପୂରଣ ଅପୂରଣ, ନିଜ ଲେଖନୀର ମାପରେ ନିଜକୁ ପାଇବାର କାମନା ମୁକୁଟ ମଣ୍ଡିତ ଶିର ନୁହଇ ଶାନ୍ତ ଅପ୍ରଦ.... ।

× × ×

ଫଲବାଲ ଘଟଣା ପରେ ଦୀନବନ୍ଧୁ ବାବୁ ଜସ୍ମା ପ୍ରତି ଅଧିକ ସଚେତନ ହେଲେ ବୋଲି କୁହାଯାଇ ନ ପାରେ । କାହିଁକିନା ତା'ର ଜନ୍ମଠାରୁ ଆଜିଯାଏଁ ଜସ୍ମା ପ୍ରାୟ ସବୁଦିନେ ଏଇଠି ଅଛି ବାପ ମାଆଙ୍କ ପାଖରେ । ସ୍କୁଲ ପଢ଼ା ଅଧାରୁ ରହିଗଲା, ତେଣୁ ପ୍ରିୟା ପ୍ରଣବଙ୍କ ପରି ଭିନ୍ନ ସହରକୁ ଲମ୍ବା କଲେଜ ହଷ୍ଟେଲକୁ ଯିବାକୁ ପଡ଼ିବ ନାହିଁ । କିଛି ଦିନ ଗୀତ ଶିଖୁଥିଲା, ଗୀତ ମାଷ୍ଟର କହୁଥିଲେ ଗଳାଟି ମିଠା, କିନ୍ତୁ ମାଷ୍ଟର ନିଜର ସ୍କୁଲ ବସେଇଲାରୁ ଝିଅ ସେଠିକି ଯିବାକୁ ମଙ୍ଗିଲା ନାହିଁ । ପ୍ରଣବ କହିଲା ତାକୁ ଡର ମାଡ଼ୁଛି, ନନ୍ଦିନୀ କହିଲେ ତାକୁ ଲାଜ ଲାଗୁଛି । କେହି ତାକୁ ବଳେଇଲେ ନାହିଁ, ଦୀନବନ୍ଧୁ ବାବୁ ଷୋଡ଼ଶ ଉପନ୍ୟାସ ଲେଖାରୁ ମୁଣ୍ଡ ଟେକି "ଆଚ୍ଛା" ବୋଲି କହିଲେ । ତେଣୁ ସେଠିକି ମାତ୍ର ଦୂରେଇ ଯିବା ସମ୍ଭବ ହେଲା ନାହିଁ । ଜସ୍ମା ଘରେ ରହିଗଲା । ଗୃହ ଘରେ ଥିଲା, ଭଡ଼ା ଘରେ ଥିଲା, ଏବେ ଲବ୍ଧପ୍ରତିଷ୍ଠ ଲେଖକ ବାପାଙ୍କର ଦୁଇମହଲା କୋଠା ଘରେ ଅଛି । ସ୍ଥିରତା, ସ୍ଥୂଳତା ଓ ନୀରବତାର ପ୍ରତିମୂର୍ତ୍ତି ହୋଇ କାରବାର ହେଉଛି । ଦୀନବନ୍ଧୁ ବାବୁ ଜାଣନ୍ତି ସେ ଅଛି । ରହିବ । ଚେତନାର ଅନ୍ତର୍ଭୁକ୍ତ ଅଙ୍ଗ, ଯଥା ଦେଶପ୍ରେମ, ଅଥବ ଭାରତର ଦରିଦ୍ରତା । ତେଣୁ ଉଠିଲେ ଦେଶର ଚେହେରା ପାଲଟି ଯିବ ନାହିଁ, କି ଦରିଦ୍ରତା କଟିଯିବ ନାହିଁ ।

ନିକଟ ଅତୀତରେ, ଛଅ ମାସ କି ବର୍ଷେ ହୋଇ ଗଲାଣି ମନେ ରଖିବା କଷ୍ଟ, ଜସ୍ମାଗତ ଚେତନା ଥରୁଟିଏ ଚହଲି ଉଠିଥିଲା । ସେତେବେଳେ ଦୀନବନ୍ଧୁ ବାବୁ ଏକଦା ସନ୍ଧ୍ୟାରେ ଘରେ ଧ୍ୱନିତ ହେଉଥିବା ସଙ୍ଗୀତ ଶୁଣି ପାରିଲେ । ରେଡ଼ିଓରୁ ଆସୁନାହିଁ ତ ? ବାହାର ମାଇକ୍ରୋଫୋନରୁ ଭାସି ଭାସି ଆସି ଏଇଠି ସରୁ ହୋଇଯାଉଛି ? ନା, ଧ୍ୱନି ସୁଲଳିତ ହେଲେ ମଧ୍ୟ ସୁସ୍ପଷ୍ଟ । ଯେମିତିକି କହୁଛି —ଶୁଣ, ମୁଁ ପର ଘରେ ରହୁଥିବା ସାନ ଝିଅ ଜସ୍ମା, ଆଉ କେହି ନୁହେଁ । ସେଇ ଦିନ ଦୀନବନ୍ଧୁ ବାବୁ କିଞ୍ଚିତ୍ ବିସ୍ମିତ ଓ କିଞ୍ଚିତ୍ ଆମୋଦିତ ହୋଇଥିଲେ । ଝିଅ କେଡ଼େ ସୁନ୍ଦର ଗୀତ ବୋଲି ପାରୁଛି । ଏଥର ବରଘର ବାଲାଙ୍କୁ ପ୍ରଥମେ ପରଦା ଆଢୁଆଳରୁ ଗୀତ ଶୁଣେଇଲେ ହୁଅନ୍ତା, ଧୀରେ ଧୀରେ ଗୀତର ପଦ ଶୁଣେଇ ସାରିଲା ପରେ ଝିଅ ଆତ୍ମପ୍ରକାଶ କରନ୍ତା । ତଥାପି କ'ଣ ତାର ଚେହେରା ଆଗନ୍ତୁକର ଦୃଷ୍ଟି ପଥକୁ ମାଡ଼ି ବସନ୍ତା ? ହାଲୁକା ହୋଇ ଛୁଇଁ ପାରନ୍ତା ନାହିଁ ? ହାୟ !

ଯାହା ହେଉ, ଏବେ ଶ୍ରାବଣ ସରିବା ଆଗରୁ ସାନ ଝିଅର ସାଙ୍ଗ ଓ ସମ ପ୍ରକାଶକ ଗୋପ ରାଉତଙ୍କ କଥାରେ ସେ ଏମିତି ଚିଡ଼ି ଉଠିଲେ କାହିଁକି ?

ଗୋପ ବାବୁ ଗପ ମାରିବାକୁ ଆସିଥିଲେ । ମଝିରେ ମଝିରେ ଆସନ୍ତି । କଥା ପଡ଼ୁ ପଡ଼ୁ କହିଲେ—"ଦୀନୁ ଭାଇ ଆଉ କେତେଦିନ ହାତଗୋଡ଼ ବାନ୍ଧି କରି ବସିବ । ଉପନ୍ୟାସ ନ ହେଲା ନାହିଁ, ଅନେକ ଲେଖିଛ, ଏଥର ଗୋଟାଏ କାବ୍ୟ ଲେଖ । କଣ କହୁଛ ?"

ଦୀନବନ୍ଧୁ ଈଷତ୍ ହସି ଦେଇ ଚୁପ ରହିଲେ, ଉତ୍ତର ପ୍ରତିକ୍ରିୟା । ଧନ୍ୟବାଦ, ମୁଁ ଯାହା କରିବ ମୁଁ ଜାଣେ. ତେବେ ତୁମର ସଦିଚ୍ଛାକୁ ଟିପି ରଖିଲି. ହସି ଦେଲି । କିନ୍ତୁ ଗୋପବାବୁଙ୍କର ଆହୁରି କିଛି କହିବାକୁ ଥିଲା । କହିଲେ, "ଅବଶ୍ୟ ସେଥିପାଇଁ ବହୁ ପରିଶ୍ରମ ଦରକାର, କିନ୍ତୁ ତୁମର ଆଉ ଚିନ୍ତା କଅଣ ? ପ୍ରିୟା ତାର ସୁଖରେ ଅଛି । ଏଣେ 'ପ୍ରିୟା ପ୍ରକାଶିନୀ' ବେଶ୍ ଚାଲିଛି । ହଁ, ଜସ୍ମା ପାଇଁ ଟିକିଏ ଭାବିବା କଥା........କିନ୍ତୁ ଭଗବାନ ଚାହିଁଲେ—"

ସେଇଠୁଁ ଦୀନବନ୍ଧୁ ବାବୁ ଚିଡ଼ି ଉଠିଲେ । ତାଙ୍କ ମୁହଁ ଗୋରା ହୋଇଥିଲେ ହୁଏତ ଲାଲ୍ ଦେଖାଯାଇଥାଆନ୍ତା । କହିଲେ—

"ଜସ୍ମା-ଜସ୍ମା ପାଇଁ କିଛି ଭାବିବାର ନାହିଁ ' ମାନେ ଜସ୍ମା ସାଙ୍ଗରେ କାବ୍ୟର କୌଣସି ସମ୍ବନ୍ଧ ନାହିଁ ।"

କ୍ରୋଧ ଦମନ କରି ସାଗଲା ପରେ ଦୀନବନ୍ଧୁ ବାବୁ କହୁ ଥିଲେ ଯେପରିକି ତାଙ୍କ ସାମାନ୍ୟ କ୍ରୋଧ ସାହିତ୍ୟସମ୍ଭୂତ ବୋଲି ବୁଝା ପଡ଼ିବ । "ତୁମେ ଜଣ ଭାବିଛ ଯେ ଗୋଟାଏ ଲମ୍ବା ଧାଡ଼ିବନ୍ଧା କାହାଣୀ ଲେଖିଲେ କାବ୍ୟ ହୋଇ-ଗଲା ? ତା' ସହିତ ଶତାବ୍ଦୀର ସମ୍ପର୍କ ନାହିଁ ? ଭୁଲ୍ । ଆମର ଏଇ ଆଣବିକ ଯୁଗରେ ଭାବକୁ ଯୋଡ଼େଇ ଶବ୍ଦକୁ ସଜେଇ କଥାକୁ ଲମ୍ବେଇ ଲମ୍ବେଇ କହିବାର ଅବକାଶ ନାହିଁ । ବୁଝିଲ ଗୋପବାବୁ ? କାବ୍ୟର ଯୁଗ ଚାଲି ଗଲାଣି । ସେଭଳି ପୋଜ୍ କେବଳ ମାତ୍ର ବିଳାସ ନୁହେଁ ପାପ । ବୁଝିଲ !"

ଗୋପ ରାଜିତ ସାହିତ୍ୟିକ ନୁହନ୍ତି । ସେ ଯୁକ୍ତି କରିବା ପାଇଁ ପ୍ରସ୍ତୁତ ନ ଥିଲେ; କିନ୍ତୁ ପ୍ରସ୍ତାବଟିକୁ ଏପରି ଭାବରେ ନଷ୍ଟ କରାଯାଇ ପାରେ ବୋଲି ସେ ଭାବି ନ ଥିଲେ । ତେଣୁ ସେ ଧରି ନେଲେ ଯେ ରାଗିବାର କାରଣ ଭିନ୍ନ । ଜସ୍ମା । ବୁଢ଼ୀ ଅଭିଆଡ଼ି ଝିଅ ।

ଜସ୍ମା ? ଜସ୍ମ ଜନିତ ଦୁଃଖ ମାନବଙ୍କୁ ଗ୍ରହ୍ୟାନ୍ତି ନାହିଁ, ସେଇଥି ପାଇଁ ତାଙ୍କର ଏମିତି ହେଲା ? ନା ମୋ ଝିଅ ମୋର, ତା'କୁ ନେଇ ଦୁଃଖ ମଧ ମୋର, ତୁମେ ସେଥିରେ କଥା କହିବାକୁ କିଏ, ଏଇ ଭାବରେ ସେ ହଠାତ୍ ରାଗି ଉଠିଲେ । ଏଇ ଉତ୍କଟ ମମତା ଆସିଲା କେଉଁଠୁ ? କେଉଁଠୁ ?

ଉପରୋକ୍ତ ପ୍ରଶ୍ନ ଗୋଟିକରେ ଦୀନବନ୍ଧୁ ବାବୁ ଆହୁରି ରାଗି ଯାଆନ୍ତେ, ସନ୍ଦେହ ନାହିଁ । କହନ୍ତେ କେବେଠୁ ମାନେ କଅଣ ?

ବର୍ଷା ପରେ ଶରତ ଆସ ଆସ ହେଲା । ଆକାଶରେ ଗୁଡ଼ି ଉଡ଼ିଲା । ବେଳେ ବେଳେ ଦୀନବନ୍ଧୁ ବାବୁଙ୍କ ମନ ହେଲା ଝରକାରୁ ଲୁଦ ପଡ଼ିବେ, ଏକତମ ଗୁଡ଼ିକ ଆଶ୍ରା କରି ପଇଁତରା ମାରିବେ ଓ ଆକାଶର ମଝିରେକନ ଶୋଇ ପଡ଼ିବେ । ଶୋଇଲେ ଶୋଇବ । ନ ହେଲେ ସେମିତି ଏଇ ଘରକୁ ନେଇ ସ୍ୱର୍ଗକୁ ଯିବ ।

କିନ୍ତୁ ଗୋଟିଏ ସୁନେଲି ସକାଳରେ ନନ୍ଦିନୀ ଯାହା କରିବାକୁ କହିଲେ, ସେଥିରେ ପୁଷ୍ପ କିମ୍ବା ସ୍ୱର୍ଗର ଆଗ୍ରହ ନଥିଲା । କହିଲେ—ଆଜି ତମର ଆଲ ମାରିକା ସଫା କର । ମଣିଷକୁ ଟିକିଏ ବଞ୍ଚିବାକୁ ଦିଅ । ଦୀନବନ୍ଧୁ ବାବୁ ପ୍ରତିବାଦ କରି ପାରି ଆଆନ୍ତେ ଯେ ଆଲମ ଲଜା କେବଳ ମୋର ନୁହେଁ, ତୁମର, ପିଲଙ୍କର, ଯୁଗଯୁଗର । ହେଲେ ସେ କେବଳ ଠିକ୍ ହସନ୍ତିଏ ଦେଲେ ଓ ବେଶ ବୋଲି କହିଲେ, ସତେକି ବର୍ତ୍ତମାନ ପରିସ୍ଥିତିରେ ଯେ କୌଣସି କାମ କଲେ ଚଳିବ ।

ତତ୍‌ପରେ ସ୍ୱାମୀ ସ୍ତ୍ରୀ ଗୋଟାଏ କୋଠରୀକୁ ପୂରାପୂରି ଦଖଲ କରି ବସିଥିବା ବହୁ ବର୍ଷର ସଞ୍ଚିତ ଓ ଅବହେଳିତ ବହି କାଗଜକୁ ଝାଡ଼ିବାରେ, ଫାଡ଼ିବାରେ ଓ ସଜାଡ଼ିବାରେ ଲାଗି ପଡ଼ିଲେ ।

ହଠାତ୍ ଫାଡ଼ିବାର ଯୋଗ୍ୟ ଗୋଟିଏ ଏକ୍‌ସର୍‌ସାଇଜ ବହିର ପୃଷ୍ଠା ବିଶେଷ ଓ ପୃଷ୍ଠାରେ ଲେଖା ହୋଇଥିବା ଗୋଟିଏ ବୋଲି ଧାଡ଼ି ଦୀନବନ୍ଧୁ ବାବୁଙ୍କ ଆଖିରେ ପଡ଼ିଲା । ଛୋଟ ଛୋଟ ଅକ୍ଷର ଯେମିତିକି ଆଉ କେଉଁ ଅକ୍ଷରରେ ଧାଡ଼ି ପାଇଁ ଜାଗା ନଥିବ । "ମୁଁ ଖାଲି ବାପାଙ୍କୁ ଭଲ ପାଏ ।" କାହାର ହାତ ଲେଖା ଜାଣିବାକୁ ଡେରି ହେଲି ନାହିଁ । ମଲାଟରେ ଫୁଲପତ୍ର ସମେତ ନାଆଁ ଲେଖା ହୋଇଛି । କୁମାରୀ ଜ୍ୟୋତ୍ସ୍ନା ଦାସ । ଷଷ୍ଠ ଶ୍ରେଣୀ । ଦୀନବନ୍ଧୁ ବାବୁ ଅଟକି ଗଲେ । ସ୍ତ୍ରୀଙ୍କ ଦୃଷ୍ଟିପାତକୁ ଅଗ୍ରାହ୍ୟ କରି ସେଇ ଗୋଟିଏ ଧାଡ଼ିକୁ ପଢ଼ିବାକୁ ଲାଗିଲେ । ଦେଖିଲେ ଆଉ କେତେ ଶବ୍ଦ ସେଥିରେ ଯୋଡ଼ା ହୋଇଛି । ଲେଖା ହୋଇନାହିଁ ସିନା, ଜଳଜଳ ହୋଇ ଦିଶିଯାଉଛି । ଏ ଘରେ ମୁଁ ଖାଲି ବାପାଙ୍କୁ ଭଲପାଏ । ଏ ଘରେ କେହି ମୋର ନୁହନ୍ତି, କେବଳ ବାପା । ମୋର ବାପା ।

ଦୀନବନ୍ଧୁ ବାବୁ ଯନ୍ତ୍ରଣାକୁ ସମ୍ଭାଳି ନେଲେ । ଖାତାଟିକୁ ଲୁଚେଇ ଦେଲେ । ନହେଲେ ନିନ୍ଦାର ପସରା ବସିବ । ସେମାନେ କେହି କିଛି ବୁଝି ପାରିବେ ନାହିଁ, ବରଂ ହସିବେ । ପିଲାଟାଏ କ'ଣ ଲେଖିଛି, ପିଲାମାନେ ଏମିତି ଲେଖନ୍ତି ବୋଲି ହସି ଉଡ଼େଇ ଦେବେ ।

ମୋଟୀ କାଳୀ ଝିଅ ହଁ, ଷଷ୍ଠଶ୍ରେଣୀ ବେଳକୁ ସେ ଯଥେଷ୍ଟ ମୋଟୀ ଓ କାଳୀ ହୋଇ ସାରିଥିଲା) ତାକୁ କେହି ଭଲ ପାଆନ୍ତି ନାହିଁ, କେବଳ ବାପା ଏଇ ଗୂଢ଼ କଥାର ମର୍ମ କେହି ବୁଝିପାରିବେ 'ନାହିଁ । ସେଥିରେ କେତେ ଆକୁଳତା, ଖୋଜିବାର ପଣ, ପାଇବାର ଆଶା, ସେଇଦିନଠୁଁ ଆଜିଯାଏଁ ଅଛି । ଉଦ୍ଧୃତ ସନ୍ଦେହନେ........କିଛି ବୁଝିବେ ନାହିଁ ।

ହସିବେ । ଅର୍ଥର ଓଲଟା କରିବେ, ଅସମ୍ଭବ ନୁହେଁ । ବାପଝିଅଙ୍କ ଭିତରେ ଭଲ ପାଇବା, ଯେଉଁଥିରେ ଦେହର ସେକ୍‌ସର ଗଣ୍ଡଗୋଳ ନାହିଁ, ତାକୁ ସମ୍ପୂର୍ଣ୍ଣରେ, ମାନେ ଶିରରେ ଶିରରେ ଅନୁଭବ କରି ପାରିବେ, ଏଭଳି ଶକ୍ତି କେତେଜଣଙ୍କର ଅଛି ?

ଦୀନବନ୍ଧୁ ବାବୁ ଯନ୍ତ୍ରଣାକୁ ସମ୍ଭାଳି ନେଲେ, ଯେମିତିକି ଚଟ୍‌କିନା ସାରିଦେବା ଉଚିତ ନୁହେଁ; ପରେ ଧୀରେ ସୁସ୍ଥେ ଅଳ୍ପ ଅଳ୍ପ କରି ତା'ର ସୁଆଦ ଚାଖିବାକୁ ହେବ । କବେଳା ମୁହୂର୍ତ୍ତରେ ଝିଅ ପାଖରେ ଥାଉ ବା ନଥାଉ । ଭାବିଲେ, ମୁଁ ସେପରି ଦେବ । କହିବ ଯେ ତୁ କେବଳ ମୋର ଏକମାତ୍ର ସନ୍ତାନ, ପ୍ରିୟା ପତ୍ନୀ, ପ୍ରଣବ ପତ୍ନୀ, ତା ନୁହେଁ । ତୁ ଅଧିକ । ସ୍ନେହଶୀଳ । ସେଇଥିଲାଗି ମୁଁ ତୋତେ ପ୍ରକାଶ୍ୟରେ ଯଥେଷ୍ଟ ଭଲ ପାଇପାରି ନାହିଁ । ମନେ ହୋଉଛି ଯେମିତି ତୁ

ସେମାନଙ୍କଠାରୁ ଊଣା ବୋଲି ମୁଁ ତୋର ହତାଦର କରୁଛି । ଭୁଲ ପୁରାପୂରି ଭୁଲ । ପ୍ରଥମ କଥା ତୁ ଯେମିତି କଲୁ ମୁଁ ସେମିତି କଲି । ତୋର ଦେହ ରଙ୍ଗ ମୋ ଦେହରୁ ନେଇଛୁ । ସେଇଠୁଁ ଆମ ସମ୍ପର୍କର ଆରମ୍ଭ । ଆଉ ଗୋଟାଏ କଥା । ତୁ ଜାଣି ନାହୁଁ । ତୋ ବୋଉକୁ କହୁଥିଲି, କିନ୍ତୁ ସେ ଭୁଲିଯିବଣି, କୋଉ ମାଲଦହର ପାଗଳାମି ବୋଲି ହେଲେଇ ଦେଇଥିବ । ମୁଁ ଯେଉଁ ନାଆଁକୁ ପ୍ରଥମେ ଭଲ ପାଇଥିଲି. ଯେତେବେଳେ ମୋ ଯୌବନ ଫୁଟି ଫୁଟି ଆସୁଥିଲା, ସେ ଥିଲା କାଳୀ । ପୁଣି ଉଭଲଭାଉଲ, ମୋଟୀ ବୋଲି କହିଲେ ଚଳିବ । ବୁଝିଲୁ ନା ଝିଅ ?...ସେତେବେଳକୁ ଯନ୍ତ୍ରଣା ଆନନ୍ଦ ପରି ମନେ ହେଲାଣି । ଦୀନବନ୍ଧୁ ବାବୁଙ୍କ ମୁହଁରେ ହସ ଉକୁଟିଲା. ଯାହାକୁ ସେ ରୋକିବାକୁ ଚେଷ୍ଟା କଲେ ନାହିଁ, ନନ୍ଦିନୀ କାଳେ ଦେଖି ନେବ ବୋଲି ପରୁଆ କଲେ ନାହିଁ ।

"କଉ, ତୁମ କାମ ସରିଗଲା ଏତିକରେ ? ଗପର ପ୍ଲଟ ଖୋଜୁଛ ନା କଅଣ ? ଭଲ ମଣିଷଟିଏ !"

ଦୀନବନ୍ଧୁ ବାବୁ ସ୍ତ୍ରୀଙ୍କ ମୃଦୁ ଭର୍ତ୍ସନାରେ ବିଚଳିତ ନହୋଇ ଏକ୍ସର-ସାଇଜ୍ ଖାତାକୁ ତଥା ନିଜର ସିଂହାସନକୁ ମୁଠେଇ ଧରିଲେ । ଆପଣାର ଆବିଷ୍କାରକୁ ଆହୁରି କେତେ ଆଡୁ ଏବଂ ଉତ୍ତମ ରୂପେ ଉପଭୋଗ କରିବାକୁ ଇଚ୍ଛା କଲେ ।

ଭାବିଲେ-ଆଚ୍ଛା, ଚୋଳିଟା ଠିକ୍ କେବେ ଏତିକ ଲେଖିଲା ? ଷଷ୍ଠ ଶ୍ରେଣୀ । ତା ମାନେ ଦଶବର୍ଷ ? ଏଗାର ବର୍ଷ ? ଦୀନବନ୍ଧୁ ବାବୁ ମନେ ପକେଇଲେ, ହିସାବ ଯୋଡ଼ିଲେ; କିନ୍ତୁ ଘଟଣାଟିକୁ ଅଗତିର ଠିକଣା ଜାଗାରେ ରଖିହେଲା ନାହିଁ । ତେବେ ତାଙ୍କର ଧାରଣା ହେଲା ଯେ ସେତିକବେଳେ— ଯେତେବେଳେ ଯେ ଭାରି ଜିଦଖିଆ ହୋଇଥିଲା, ତୁଚ୍ଛାକୁ ବାହା ଧରି କାନ୍ଦୁଥିଲା, ନନ୍ଦିନୀ ତାକୁ ଦ'ହାତିଆ ପିଟୁଥିଲା, କାଳୀକାଳୀ ମରିଗଲେ ମୁଣ୍ଡ ଧୋଇ ଗାଧୋଇ ଆସନ୍ତ, ଏଭଳି କଟାଖମ୍ଭା କରୁଥିଲା....ସେଇ ସମୟରେ ମୁଁ ଝିଅକୁ ରକ୍ଷା କରିବାକୁ ଧାଇଁ ଯାଉଥିଲି । କହୁଥିଲି ଓଃ ! ପିଲାଟାକୁ ପିଟି ପିଟି ମାରି ପକେଇବ ନା କଅଣ ?

ମୁଁ ତା'କୁ ମୋ ପାଖକୁ ଟାଣି ଆଣୁଥିଲି । ତା ଦେହରୁ ଲୁଗାପଟା ଖସି ଯାଇଥାଏ, ଅରେ ଅଧେ ବାହାବଳୀ ଅଦ୍ଭୁତ ଲଙ୍ଗଳା ହୋଇ ଯାଇଥାଏ । ହଁ, ମନେ ପଡ଼ୁଛି···ତା'ର ଦେହ ଭଲ ରହୁ ନଥିଲା, ବାରମ୍ବାର ଜର ହେଉଥିଲା, ସେଥିପାଇଁ ସେ ଏମିତି ଜିଦ କରୁଥିଲା । ଖାଲି ଜର ନୁହେଁ, ଅନେକ ଦିନ କାଛୁକୁଣ୍ଡିଆରେ ଭୋଗିଲା । ମନେ ଅଛି, ମୁଁ ତା ଦେହରୁ ଝାଳନାଳ ପୋଛି ଦେଉଥିଲି । ତା'ର ଫୁଙ୍ଗୁଳା ଦେହକୁ ମୋ ଗୁଡ ଉପରେ

ରଖି ସାଷ୍ଟାମ କରଉ ଥିଲି, ଝିଅ ଧକେଇ ହୋଇ ଶୋଇ ପଡ଼ିବା ଯାଏ । ଆରେ. ଆମ ଭଲ ପାଇବାରେ ଦେହ ନାହିଁ ବୋଲି କିଏ କହିଲା ? ଅଛି । ହେଲା ଏବେ ସେ ଅସୁନ୍ଦର । ଲୁହ ସିଂଘାଣିରେ ଲିପା ହୋଇଛି, କାଙ୍କୁ ଲୁଣ୍ଡିଆରେ ଭରି ଯାଇଛି, ମୁଁ ସେ ଦେହକୁ ଜାଣେ । ଅନ୍ୟ ପିଲାଙ୍କଠାରୁ ବେଶି, ଆହୁରି ପାଖରେ ।

‘ଶୁଣ, ଶୀଘ୍ର ଝାମଟା ଯାଇ ଦେଲେ ଭଲ ହୁଅନ୍ତା ନାହିଁ ? ମୋର ତୁମକୁ ଗୋଟାଏ କଥା କହିବାର ଅଛି ।’’

ଏଥର ଦୀନବନ୍ଧୁ ବାବୁ ଖବରକାରୁ ମୁଣ୍ଡ ଟେକିଲେ, ସ୍ତ୍ରୀଙ୍କ ଆଡ଼କୁ ଅନେଇଲେ । ନନ୍ଦିନୀ ଦେବୀଙ୍କ ମୁହଁ ସୁନ୍ଦର ଦେଖାଗଲା । ଏତେ ବୟସ ହେଲାଣି, ତଥାପି.... । ଦୀନବନ୍ଧୁ ବାବୁ ଗର୍ବ ବୋଧ କଲେ; କିନ୍ତୁ ସେ ଲକ୍ଷ୍ୟ କଲେ ଯେ ମୁହଁର ଚେହେରା ଜସ୍ମା ପରି ନୁହେଁ, ମୋଟେ ନୁହେଁ, କେତେକ କହନ୍ତି ଜସ୍ମାର ଓଠ ମାଆ ଓଠ ପରି । କୁଅଁଡ଼େ ସିଏ ପାଟି ମେଲିକରି ହସିଲେ ମାଆ ପରି ଦିଶେ । ବାଜେ କଥା । ତାହା ହେଲେ ତା'କୁ ଅସୁନ୍ଦର ବୋଲି କହୁଛ କାହିଁକି ? ବାହା ନ ହୋଇ ପାରୁଛି ବୋଲି ତା ପ୍ରତି ଦୟା ଦେଖାଉଛ କାହିଁକି ।

ବନ୍ଧ କାଗଜର କାମ ସରିଗଲା ପରେ ଦୀନବନ୍ଧୁ ବାବୁ ଘର ଭିତରେ ବୁଲବୁଲି କଲେ, ବସିଲେ, ଉଠିଲେ···ବିଶ୍ରାମ ନେଲେ ନାହିଁ । ତୁମର କଅଣ କହିବାକୁ ଅଛି ବୋଲି ସ୍ତ୍ରୀଙ୍କୁ ପଚାରିଲେ ନାହିଁ କି ଜସ୍ମାକୁ ଖୋଜିଲେ ନାହିଁ । ସତେ କି ସେ ବୃନ୍ଦାନ୍ତ ନିଜକୁ ଗୋଟେଇ ନେବେ, ତା'ପରେ ଯେଉଁ କଥା । ଅନୁଭବକୁ ଠଉରାଇ ଠିକ କରିପାରିଲା ପରେ ଯାଇଁ ନିଅଁ ଧରିବ . କିଛି ଗୋଟାଏ ହେବ ଏବଂ ମୋତେ ଏକୁଟିଆ ରହିବାକୁ ଦିଅ, ଏଇ ଭାବରେ ସେ ପ୍ରାୟ ବାହାରକୁ ଆସନ୍ତା ଅଣ୍ଟିନକୁ ଅନେଇ ରହିଥିଲେ ।

ତେବେ ଦିନଯାକ ତାଙ୍କର ମନେ ହେଲା ଯେ ଜସ୍ମା ପାଖ ଘୁଞ୍ଚୁ ନାହିଁ । ଚକିତ କିଅ ଡ଼ମ୍ବୁମ ଟେବୁଲର ଅପର ପାଖରେ ବସିଛି, ଓଠ ଫୁଲା କରି ନୁହେଁ, ପାଟି ମେଲେଇ ହସୁଛି କହୁଛି—ବାପା, ମୁଁ ଅଛି ପରା ! ଏଗାରବର୍ଷିଆ ଜସ୍ମା ଏକତିରିଶ ବା ଏକାବନ ବର୍ଷିଆ ଜସ୍ମା ଅଗଣିତ ଭବିଷ୍ୟତକୁ ଚାହିଁ ବସି ରହିଛି । କହୁଛି, ବାପା ଚିନ୍ତା ନାହିଁ । ତୁମର ଇଚ୍ଛା ଅପୂରଣ ରହିବ ନାହିଁ । କିଏ କହିଲା ତୁମେ ଲେଖି ଲେଖି ବଡ଼ ଲୋକ ହୋଇଗଲ, ବଡ଼ ଲୋକ ହେଲାରୁ ଅନୁଭବ ମାଣ୍ଡେଇ ଗଲା ? ଯେ ବଡ ଘର ତୋଳିବା ଉଚିତ ନଥିଲା ? ଯେ ଘରଟା ଗୃହ କୋଣିଆ ହୋଇଗଲା ? ଏତେ ବଗିଚାରେ ମନ୍ଦାର ଜନ୍ମିଲା ନାହିଁ, ଚମ୍ପା ମହକିଲା ନାହିଁ ଫୁଲ୍ । ତୁମର କୋଠରୀରେ କିଛି ଊଣା ହୋଇ ଯାଇନାହିଁ । ଅତ୍ୟନ୍ତ ଦୂରେଇ ହୋଇ ନାହିଁ । ମୁଁ ଅଛି । ନିତାନ୍ତ

ନିଦାରୁଣ, ଗୁଡ଼ ବୋ'ଝଡ଼ ହେଲା ପରି । ଚାହିଁଲେ ମୁଁ ବାହା ହୋଇ ପାରିବ ନାହିଁ, ତୁମରି ପାଖେ ପାଖେ ଥିବ । ମୁଁ ତୁମର ଟ୍ରାଜେଡ଼ି, ତୁମର କାଳୀ ଅସୁନ୍ଦରୀ ଝିଅ, ଯାହାକୁ ତୁମେ ଏତେ ଭଲ ପାଅ, ଅଜାଣତରେ ଭଲ ପାଅ···

ବାପା, ଦେଖ ଅସାଧାରଣ ସଂସାର କେମିତି ଖୁସି ହେଉଛି । କେଉଁ ଦ' ମହଲା ଗୃହ ଉପରୁ ଛୁଣ୍ଡା ପଞ୍ଜାବୀଟାଏ ଫଡ଼ ଫଡ଼ ହେଉଛି, ତା'ର ହାତ ଦ'ଟା ଆ' ଆ' ବୋଲି ଡ଼ାକ ପକେଇଛି । ସିନେମା ଗାଡ଼ିର ଛବିଗୁଡ଼ିକ ମିଛ ରଙ୍ଗ, ମିଛ ପ୍ରେମାନନ୍ଦର ହାଇ ଦେଉଛି । ଇଏ ତାଙ୍କ ମାଲିକ ବିଜୟ ବାବୁଙ୍କର ସ୍ତ୍ରୀ, ଯେ ମୋଠାରୁ ମୋଟା ହେଲେ ମଧ୍ୟ ତୁମେ ଥରେ ତାର ଉଦ୍ଭିନ୍ନ ଯୌବନକୁ ଦେଖି ଆଖି ତଳକୁ କରି ଦେଇଥିଲ, ଦେଖ ସେ କେମିତି ଶରତ ସୁନାକୁ ଅନେଇଛି ଅଥଚ ଗପ୍ ଗପ୍ କରି କ'ଣ ଖାଇ ଚାଲିଛି । ପୃଥିବୀର ଭିତର ଆନନ୍ଦ ଝଲି ଦିଶୁଛି । ଖାଇ ଦୋକାନରେ ବସିଛି, ଟଙ୍କା କମଉଛି । ଅପା ଗାଲରେ ରଙ୍ଗ ବୋଳୁଛି, ଥେଇ ଥେଇ ହେଉଛି । ବୋଉ ଖାଲି ବୋଉ ହୋଇ ଘରକୁଣ୍ଡ କରୁଛି, ସୁଖରେ ଅଛି । ସେମାନଙ୍କ ସାଙ୍ଗରେ ଆମର ସମ୍ପର୍କ କ'ଣ ? ତୁମେ ଆହୁରି ବୁଢ଼ା ହୋଇଯିବ, ମୁଁ ଆହୁରି ଅସୁନ୍ଦର ଅସ୍ପୃଶ୍ୟ ହୋଇଯିବି, ତୁମର ସାହିତ୍ୟକୁ ଲୋକମାନେ ଭୁଲି ଯିବେଣି, ମୋ ଯୌବନର ସତ୍ତା ନ ଥିବ, ତୁମ ଆଖିରେ ମୁଁ ପୁଣି ଗୋଟାଏ କାନ୍ଦୁରା କାଳୁକୁଣ୍ଡିଆ ଦରସର ଫୁଙ୍ଗୁଳା ଲଙ୍ଗଳା ଝିଅ ହୋଇଯିବି · କିନ୍ତୁ ଆମ ଭଲ ପାଇବାର ଟ୍ରାଜେଡ଼ି, ଟ୍ରାଜେଡ଼ିର ବେଦନା, ଉଲ୍ଲାସ ବଢ଼ି ବଢ଼ି ଯିବ । ବାପା, ବାପା ମ, ମୋ ବାପାଟି ପରି କିଛି ଚିନ୍ତା ନାହିଁ । ମୁଁ ଆଣିଦେବି ତୁମକୁ....

ଶୋଇବା ଶେଯରେ ଏବଂ ଘୋର ଅନ୍ଧାରରେ ନନ୍ଦିନୀ କହିଲେ, ଯାହା କହିବାକୁ ନୋଟିସ୍ ଦେଇଥିଲେ । ଫୁସ୍ ଫୁସ୍ ହୋ'ଇ କହିଲେ; କିନ୍ତୁ ଏଭଳି ଉତ୍ତେଜିତ ଏବଂ ଆଗ୍ରହଭରା କଣ୍ଠରେ କହିଲେ ଯେ ମନେ ହେବ ତାଙ୍କ ପ୍ରଫୁଲ୍ଲ ବଦନ ଦିଶି ଯାଉଛି, ଆନନ୍ଦର ରୂପରେଖା ବାରି ହୋ'ଇ ଯାଉଛି । ଦୀନବନ୍ଧୁ ବାବୁ ଶୁଣିଲେ । ଉତ୍ତର ଯାହା ଦିଅନ୍ତୁ ପଛେ ତାଙ୍କ ଭାବ ବେଶ ଜାଣିବାର ଉପାୟ ନ ଥିଲା । ପ୍ରକୃତପକ୍ଷେ ତାଙ୍କୁ ଅନ୍ଧାର ଭଲ ଲାଗିଲା । ନନ୍ଦିନୀ ଆରମ୍ଭ କଲେ

''ଶୁଣ କ'ଣ କହୁଛି । ଜସ୍ମା ପାଇଁ ଖବର ଆସିଛି ।''

''କି ଖବର ?

''ମଲା, ବୁଝି ପାରୁନାହଁ କ'ଣ ମ ? ତାକୁ ବାହା ହେବାକୁ ଚାହେଁ । ମିଲର ପିଅସୀ ଝିଅ ଭଉଣୀ, କାଲି କାଳୀମନ୍ଦିରରେ ଦେଖା ହୋଇଥିଲା, ସେଇ ପଚାରୁଥିଲା ।''

"ଅଚ୍ଛା ।"

"ସେ କଏ ଜାଣିଛ ? ଜସ୍ଥାର ଯେଉଁ ଗୀତ ମାଷ୍ଟର ନ ଥିଲେ, ସଦାନନ୍ଦ ବାବୁ ?...ତାଙ୍କର ସାନ ଭାଇ ।"

"ଅଚ୍ଛା ।"

"ମନେ ଅଛୁ ନା ? ସେ କେତେଥର ସଦାନନ୍ଦବାବୁଙ୍କ ସାଙ୍ଗରେ ଆସିଛୁ, ଜସ୍ଥାର ଗୀତ ଶୁଣିଛୁ ।"

"ହୁଁ ।" (ତୁମେଇ ତାକୁ ପ୍ରଶସ୍ତ ଦେଇଛ, ଦେଇଥିବ ନିଶ୍ଚୟ । ନ ହେଲେ ତା'ର ଏଠି ବସି ଗୀତ ଶୁଣିବାର କୌଣସି କାରଣ ନ ଥିଲା ।)

"ସେଇ ମାଁ । ଗ୍ରେଟ ଜଣ । କୁଞ୍ଚୁ କୁଞ୍ଚିଆ ବାଳ । ବେଶ୍ ଲମ୍ବା ଚଉଡ଼ା, ରଙ୍ଗ ଜସ୍ଥାଠାରୁ ସଫା ହେବ । ଥରେ ଆମେ ତାକୁ ମାଷ୍ଟରଙ୍କ ସାଙ୍ଗରେ ଅଟକେଇ ଦେଇଥିଲୁ ଖାଇସାରି ଯିବ ବୋଲି । ଟେକା କେତେ କଣ ଗପିଗଲା । ବେଶ୍ ଖୁସିବାସିଆ—ମନେ ନାହିଁ ତୁମର ?"

"ମନେଅଛୁ ।" ( ମନେ ଅଛୁ ସେ' କେବଳ ଗୋଟାଏ ଟୋକା, ସବୁ ଟୋକାମାନେ ସମାନ । )

"କଏ ଭାବିଥିଲା ଯେ ସେ ସେଇଦିନଠୁଁ ବୁଝିଛୁ ? ବାହାରେ ପାଞ୍ଚବର୍ଷ ଇଞ୍ଜିନିଅରିଙ୍ଗ ପଢ଼ା ସାରି ଫେରିଛୁ, ବାପା ମାଆ ବଳେଇଲାରୁ କହିଲା ଯେ ବାହା ହେଲେ ଏଇଠି ବାହା ହେବ ।"

"ଭଲ ।" ( ବାହା ହେଉ, କଏ ମନା କରୁଛୁ ? )

"ବୋଧହୁଏ ଜସ୍ଥାର ଗୀତ କଣ୍ଠସ୍ୱର ତା ମନକୁ ପାଇଯାଇଛୁ ।

"ହୁଁ ।" ( ମିଛ କଥା । ଟୋକା'ମାନେ କଳା ଆଉ ସଙ୍ଗୀତର ଧାର ଧାରନ୍ତି ନାହିଁ । ବାଙ୍କ ଉଦ୍ଦେଶ୍ୟ ଭିନ୍ନ । )

"ଯାହା ହେଉ ଏତେଦିନକେ...ଈଶ୍ୱର ଦୟାମୟ ।"

"ହୁଁ ।" (ଈଶ୍ୱର ଦୟାମୟ, କିନ୍ତୁ ଟୋକାମାନେ ନିର୍ଦ୍ଦୟ । ମୋର ମନେ ଅଛୁ ସେଇ ଗପୁଥିଲା, ସିଏ କିମ୍ବା ତା'ର ଜାଢଭାଇ, ଯେ ରାତିରେ ଜଙ୍ଗଲ ରାସ୍ତାରେ କାର୍‌ର ହେଡ଼୍ ଲାଇଟ୍ ଧଳା ଠେକୁଆ ଉପରେ ପଡ଼ିଲା, ଠେକୁଆ ଆଲୁଅରେ ଅନ୍ଧ ହୋଇଗଲା ଏବଂ ସେଇ ସୁଯୋଗରେ ଟୋକା ତା' ଉପରେ ଗାଡ଼ି ମଡେଇ ଦେଲା, ତାକୁ ମାରି ତା' ମାଂସ ଖାଇବ ବୋଲି )

"କ'ଣ ଖାଲି ହୁଁ-ହାଁ କରୁଛ ମ ? ଅମେ ହିଁଅଧର ଯେତେବେଳେ, ଆମଆଡ଼ୁ ପ୍ରସ୍ତାବ ଯିବା ଦରକାର । ଭାଲ ହକାଲେ ସଦାନନ୍ଦ ବାବୁଙ୍କ ପାଖକୁ ଖଣ୍ଡେ ଚିଠି ଲେଖ,—ବୁଝିଲ ?"

"ହଁ, ହଁ ଲେଖିବ । ନିଶ୍ଚୟ ଲେଖିବ ।"

ଦୀନବନ୍ଧୁ ବାବୁ ସ୍ତ୍ରୀଙ୍କୁ ଓ ନିଜକୁ ପରିଷ୍କାର ଭାବରେ ଜଣାଇଦେଲେ ଯେ ସେ ତଥାକଥିତ କର୍ତ୍ତବ୍ୟରେ ହେଳା କରିବେ ନାହିଁ । ଯାଆନ୍ତୁ ସମସ୍ତେ, ଆଉ ଦି'ଜଣ ଯାଇଥିଲେ, ଇଏ ବି ଯାଉ । ମୁଁ ଶୂନକୁ ଲକ୍ଷ କରିଦେବି । ପୁଣି କଲମ ଧରିବି । ଲେଖିବି, ଏମିତି ଗୋଟାଏ ଟୋକା ହଠାତ୍ ବେମାର ହୋଇ ପଡ଼ିଲା, କ'ଣ ହେଲା କେଜାଣି ଦି'ଦିନରେ ପ୍ରାଣ ହରେଇଲା, ଆଉ ତା'ର ଯୁବତୀ ସ୍ତ୍ରୀ ଚିତ୍କରି କାନ୍ଦିଲା, ବୁକୁଫଟା କାନ୍ଦ, ଯେଉଁଥିରେ ତା'ର ବୁଢ଼ା ବାପ ପଥର ହୋଇଗଲା, ମରି ପାରିଲା ନାହିଁ । ଅଶ୍ରୁଗିଳାକୁ କୋଳକୁ ନେଲା. ଭଲ ପାଇବାର ଶେଷ କଥାରେ ଲୀନ ହୋଇଗଲା···

ନନ୍ଦିନୀ ଅଯଥାରେ ଆତୁର ପଦେ କହୁଲେ, ଚନ୍ଦ୍ର ଉପରେ ପତାକା ଉଡ଼େଇଲା ପରେ···ମୁଁ ଜହ୍ନାକୁ ପଶୁର ସାରିଲିଣି, ତାର ମଧ୍ୟ ଆପତ୍ତି ନାହିଁ ।



# ଭିନ୍ନ ପାଉଁଶ

ମୁଁ କହିଲି, "ଗୁଲ ଟିକିଏ ବୁଲି ଆସିବା ।"

ସେ କହିଲେ, "ହଃ ! ମଶାଣିରେ ନ ବୁଲିଲେ ଆଉ ହଉଛି ।"

ମୁଁ ହସିଲି । ଗ୍ରେଟ ଗ୍ରେଟ କଥାରେ ସ୍ୱାମୀ-ସ୍ତ୍ରୀଙ୍କର ମତାନ୍ତର ହେବା ସ୍ୱାଭାବିକ । ତା' ବୋଲି ତାଙ୍କର ଏମିତି ଜାଣିଶୁଣି ଧଳାକୁ କଳା କରି ଥୋଇବା ହାସ୍ୟାସ୍ପଦ । ଦିଲ୍ଲୀରେ ଯମୁନା କୂଳରେ ବିରଳମାନ ଏଇ ଇଲେକ୍ଟ୍ରିକ୍ କ୍ରିମାଟୋରିଅମ୍, ବନ-ବଗିଚା ମଝିରେ ଥିବା ଗୋଟିଏ ଘର, ଘର ଭିତରେ ମେସିନ, ମେସିନରେ ମଲାଦେହ ଚଟ୍‌କିନି ପାଉଁଶ ହୋଇଯାଏ,— ସ୍ଥା'କୁ ମଶାଣି ବୋଲି କହିବ ? କାହିଁ ଏଠି ଦରଜଳା କାଠ, ହାଣ୍ଡି, ଖପର, ବାଲୁଆ, ଶାଗୁଣାଙ୍କ ପଲ, ଅପରିଚ୍ଛନ୍ନତା ଅବଶେଷ ? ନା କୋଉ ଭସ୍ମ ମାଡ଼ି ପଡ଼ିଛି ? ବରଂ ଏଇ ଜନ୍ତରଙ୍ଗଜନକ ନେତା, ଲମ୍ବା ଲମ୍ବା ଗଛମାନଙ୍କର ପତର ସିରସିର ହେଉଛି ଓ କେତେ ଦୂରରେ କ୍ରିମାଟୋରିଅମର ମାଳୀ କି ଜଗୁଆଳୀ ଘାସ ଉପାଡ଼ୁଛି, ଭ୍ରମଣ ଉପଯୋଗୀ ଏଭଳି ପରିବେଶ ଦିଲ୍ଲୀରେ କେଉଁଠି ମିଳିବ ? ସେ ମୋ ହସର ଉପହାସକୁ ହୁଏତ ଧରି ପା'ରିଲେ ନାହିଁ, ତେବେ ମୋ ସାଙ୍ଗରେ ଗୁଲିବାକୁ ଲାଗିଲେ । ସେଉଁଆଡ଼େ ଗଛଗହଳ, ଆମେ ସେଇ ବାଗରେ ଗତି କଲୁ । ଧୀରେ, ଅତି ଧୀରେ....ଯେମିତିକି ମ୍ୟାରିଲିନ୍ ଶବ ଆମ ଅଦେଖାରେ ପୋଡ଼ି ନଷ୍ଟ ହୋଇଯିବ ନାହିଁ । ତା' ଦେହର ପାଉଁଶରୁ କିଛି ବାଛିଲ ସାଇତିବାକୁ ହେବ, ଯେଉଁଠୁ ତା' ମାଆ ପାଖକୁ ପଠେଇବାକୁ ହେବ । ମା'ଆ ଅନେଇ ବସିଛି ।

ଧୀରେ ଗୁଲୁଥିଲୁ ଓ ବାରମ୍ବାର ପଛକୁ ଫେରି ଗୁହୁଁଥିଲୁ—ମ୍ୟାରିଲିନ୍ ଅ'ମି ପଳେଇ ଗଲା କି ?

ଏଇଥିରୁ ବୁଝିବାକୁ ହେବ ଯେ ଆମେ ଦୁଇଜଣ ସମଭାବରେ ଉତ୍କଣ୍ଠିତ ହେଉଥିଲୁ । ଏତେ ସମୟ ଅପେକ୍ଷା କରିବା ହେତୁ ବିରକ୍ତ ହେଉଥିଲୁ, ଅଥଚ ମ୍ୟାରିଲିନ୍ ପ୍ରତି ମାନବିକ କର୍ତ୍ତବ୍ୟରେ ହେଳା ନ ଦେଇ, ପାଉଁଶ ଟିକିଏ

ଯଥାଶୀଘ୍ର ତା' ମାଆ ପାଖରେ ପହଞ୍ଚିଯାଉ ବୋଲି ଭଗବାନଙ୍କୁ ଡାକୁଥିଲୁ । ମେ ଜେମାଟୋଗ୍ରାଥମ୍‌କୁ ମଣାଣି ବେଳ କହୁଲେ, ଭ୍ରମଣ କରିବାରେ ବିଶେଷ ଆଗ୍ରହ ଦେଖେଇଲେ ନାହିଁ, ସେକଥା ଅଲଗା । ପ୍ରକୃତରେ ମୋ ସ୍ତ୍ରୀ ଲୁଖୁର ଭ୍ରମଣର ପକ୍ଷପାତୀ ନୁହନ୍ତି ବୋଲି ମୋତେ ଜଣାଅଛି; କିନ୍ତୁ ଏଇ ମ୍ୟାଗଲିନ୍ ବ୍ୟାପାର ନେଇ ମୁଖ୍ୟତଃ ଆମ ଭିତରେ କୌଣସି ମତଭେଦ ନ ଥିଲା । ମୂଳରୁ ନ ଥିଲା ଏବଂ ଦେଖିବ ଯେ ଶେଷକୁ ମଧ୍ୟ ରହିଲାନାହିଁ । ଦ୍ୱିତୀୟାର ଯିବା ପୂର୍ବରୁ ମ୍ୟାଗଲିନ୍ ପ୍ରାୟ ମାସେ ଦିନେ ଆମ ଘରେ ଥିଲା ଓ ଆମେ ଦୁଇଜଣ ତାକୁ ଶ୍ରଦ୍ଧା କରୁଥିଲୁ । ସନ୍ଦେହ ନାହିଁ ଯେ ତା ମରିବା ଖବର ଶୁଣିଲା ପରେ ଆମେ ଦୁହିଁଙ୍କ ମନରେ ଗଭୀର ଦୁଃଖ ହୋଇଥିଲା । ଏକା ସାଙ୍ଗରେ ଆମ ପାଟିରୁ "ଆହା !" ପଦ ନିଃସୃତ ହୋଇଥିଲା । ଏହାର ପ୍ରଧାନ କାରଣ ହେଉଛି (ସେ ମାନିବେ ନାହିଁ, ଗ୍ରିଗିଯିବୋ) ଯେ ଆମ ଆଖିରେ ମ୍ୟାଗଲିନ୍ ନାରୀ କି ପୁରୁଷ ହୋଇ ନଥିଲା, କେବଳ ଗୋଟିଏ ଜୀବ । ଦସ୍ୟୁମାସ୍ତୁ । ଗୀତା ମେହେତାଙ୍କ "କର୍ମ-କୋଲ"ର ଅନ୍ୟତମ କ୍ୟାରକ୍ଟର୍ ।

ନା, ଭୁଲ୍ କହୁଛି । କର୍ମକୋଲରେ କୌଣସି ନାରୀର ନାରୀ ଲକ୍ଷଣ ନାହିଁ, ଉଚ୍ଚ ନୀଚ ସମତୁଲ ହୋଇ ଯାଇଛି ବୋଲି ମନେ ପଡ଼ୁନାହିଁ ତ ? ଅବଶ୍ୟ ମୋ ସ୍ତ୍ରୀ କହିପାରନ୍ତି ଯେ, ତା'ର କଥାଗୁଡ଼ିକ କେଡ଼େ ସୁନ୍ଦର, ବସେଇ ବସେଇ ଖଞ୍ଜି ଦେଲା ପରି, ଗଳାଟି ମିଠା, ସ୍ୱହାଣୀ ନରମ ଇତ୍ୟାଦି । ମୁଁ ମଧ୍ୟ ପଦେ ଯୋଡ଼ି ଦେଇ ପାରେ ଯେ, ସେ ମୁରୁକିହସା ଦେଲେ ଖାବତରଙ୍ଗ ନାଚ ଉଠିଲା କି ମିଳେଇଗଲା ବୁଝି ହୁଏନାହିଁ । ଭ୍ରମ ହୁଏ ଯେ, ଆନନ୍ଦ ଯାହା, ଶାନ୍ତ ଯେଇଥ; କିନ୍ତୁ ମୋଟ ଉପରେ ନନ୍‌ସେନସ । ଧର୍ମପତ୍ନୀଆର ଅନ୍ୟତମ ଢଙ୍ଗ, ପୋଜ୍ ଦେଇ ଦେଇ ଅଭ୍ୟାସ ହୋଇଯାଇଛି । ତା' ଛଡ଼ା ଚମ ରଙ୍ଗ ଧଳା, ଆଖି ରଙ୍ଗ ପାଣିଚିଆ, କେଶ ରଙ୍ଗ କହରା ଏବଂ ରକ୍ତହୀନତା । ହେମୋ-ଗ୍ଲୋବିନ ଆଠରୁ ବେଶି ହେବନାହିଁ, ମୁଁ ଲେଖି ଦେଉଛି । ଏଭଳି ଗୋଟିଏ ସାଦା ପ୍ରାଣୀ ହସିଲେ, କାନ୍ଦିଲେ କି ଯାହା କଲେ କଣ ମିଳିବ ସେଥିରୁ ? ଭାବିଲେ ଭାବିପାର ଯେ ତା'ର ଅନ୍ୟ ନାଆଁ ଶାନ୍ତି । ଯେତେ ହେଲେ ନାରୀ ବୋଲିକହୁଛି, ତୁମର ଜାତିଭାଇ, ତେଣୁ ତୁମେ ତା'କୁ ଟେକି ଧରିବା ସ୍ୱାଭାବିକ; କିନ୍ତୁ ମୁଁ ସେମିତି ଭାବି ପାରିବ ନାହିଁ । ମୋ ଶାନ୍ତିର ପରିଚୟ କୁମ.ସ୍ତ ଅଥବା ଶ୍ରୀମତୀ ଶାନ୍ତି । ସତସତିକା ନାରୀ, କାମିନୀ, ମୋହିନୀ, ଯେ ମୋତେ କେବଳ ଶୁଆଇ ପକେଇବ ନାହିଁ, ତା' ପୂର୍ବରୁ ଟିକିଏ ଆଉଁସି ଦେବ, ସୁଲୁସୁଲୁ କରିବ, ଝୁମିବ । ଆଚ୍ଛା, ସତ କହିଲ, ତମେ କଣ ସତରେ ଭାବିଥିଲ ଯେ ଭଗବାନଙ୍କ ପାଖାପାଖି ହୋଇ ଯାଇଥିଲ ? ତାହାହେଲେ ତା'କୁ ହିମାଳୟର କୋଉ

ଗୁରୁଙ୍କ ପାଖକୁ ଯିବାକୁ ଦେଲ କାହିଁକି ? କହୁନ ନାହିଁ ଶରଧନ ଆମରି ଘରେ ରହୁଥାଆନ୍ତା ? ତମରି ସାଙ୍ଗରେ ତମ କୃଷ୍ଣଙ୍କ ପୂଜା କରୁଥାଆନ୍ତା ? ତମେ ହାତ ଯୋଡ଼ିଲ କ୍ଷଣି ତମକୁ ଦେଖେଇଲା ପରି ଚକ୍ଷୁଟାରେ ଲମ୍ବି ଯାଇଥାଆନ୍ତା ?

(ସେ ମୋର ସାଙ୍ଗେ ସାଙ୍ଗେ ଚାଲୁଛନ୍ତି; କିନ୍ତୁ ଏମିତି ଚୁପ୍ ହୋଇ ରହୁଛନ୍ତି କାହିଁକି ? ମଶାଣି ପାରେଇ ଗଲ ? ନା ତମେ ବି ମ୍ୟାଗଲନ୍ କଥା ଭାବୁଛ ? ଭାବୁ ଥା'—)

ମୋର ଗୋଟାଏ ବଦଭ୍ୟାସ ଯେ ହାତ ପାହାନ୍ତାରେ ଫୁଲ କି ପତ୍ର ଆସିଗଲେ ମୁଁ ତାକୁ ଛିଣ୍ଡେଇ ଆଣେ । ତା' ପରେ ତା'କୁ ଟିକି ଟିକି କରେ, ଦଳି ଦିଏ, ଶୁଙ୍ଘେ ଓ ଶେଷକୁ ଫିଙ୍ଗି ଦିଏ । ବୋଉ କୁହେ ପିଲାଦିନେ ପାଟିକୁ ମଧ୍ୟ ନେଇ ଯାଉଥିଲି; କିନ୍ତୁ ଥରେ ପାଟିରେ ଘାଆ ହେଲା, ତେଣୁ ଗାଳିମାଡ଼ ଖାଇବାକୁ ପଡ଼ିଲା । ତ୍ୱଚ, ଜିଭ ଛଡ଼ା ଅନ୍ୟ ଇନ୍ଦ୍ରିୟ ଅଛି । ସେମାନଙ୍କ ଖେଳକୁ ମନା କରି ହୁଏ ନାହିଁ । ଉଦ୍ଭିଦ ମଣିଷ ନୁହେଁ ଯେ ରକ୍ତ ବାହାରିବ । ହୁଏତ ଟିକିଏ ଦୁର୍ଗନ୍ଧ କିମ୍ବା ସାମାନ୍ୟ ବାସ୍ନା· ଆରେ ! ଇଏ କି ବାସ୍ନା ! ଇଉକାଲିପଟସ୍ ! ବର୍ତ୍ତମାନର ପତ୍ରଦଳା ମୋ ଭାବନାକୁ ଚହଲେଇ ଦେଲା । ତଥାକଥିତ ମଶାଣିରେ ଯେଉଁ ଲମ୍ବା ଲମ୍ବ ଗଛର ଧାଡ଼ି ଲାଗିଛି, ସେ ହେଉଛି ବଳବନ୍ତ ଇଉକାଲିପଟସ୍, ତୀକ୍ଷ୍ଣ ବାସ୍ନା ସର୍ଦ୍ଦି ତଥା ଶ୍ଳଥ କାଟି ଦେବ, ଫୁସୁଲେଇ ଜାଣେନାହିଁ, ଚିଆଁଇ ଦେବ, ଭଲ, ଭଲ । ମୋର ମନେ ପଡ଼ିଲା ଥରେ ମ୍ୟାଗଲନ୍‌ର ମାତୃଭୂମି ଅଷ୍ଟ୍ରେଲିଆ କଥା ପଢ଼ିଲାରୁ ମୁଁ ତା'କୁ ବାହାଦୁରି ଦେଖେଇ କହିଲି—ଜାଣିଛ ? ମୁଁ ଥରେ ମାତ୍ର ସେଠିକି ଯାଇଛି ହପ୍ତାକ ପାଇଁ, କିନ୍ତୁ ତା'ରି ଭିତରେ ତମ କଙ୍ଗାରୁକୁ ଛୁଇଁଛି, ତମ ଏମୁକୁ ଚଢ଼େଇଛି । ତମେ ତାଙ୍କୁ କେତେଦିନ ଲୁଚେଇ କରି ରଖିବ ? ସେଇଠୁ ସେ ହସି ଦେଇଥିଲା, ତା'ର ସେଇ ଶକ୍ତ ତୃପ୍ତ ହସ, ସତେକି ସେ ବାସ୍ତବରେ କିଛି ଲୁଚେଇ ପାରିନାହିଁ; ସବୁ ମୋତେ, ଭାରତକୁ, ପୃଥିବୀକୁ ଦେଇ ସାରିଛି, ଆହୁରି ଦେବ । ହସିଲା ଉତ୍ତରରୁ ରହସ୍ୟ କଲା । କହିଲା—କିନ୍ତୁ ଗୋଟାଏ ଦୁଃଖକୁ ପାରି ହେଲିନାହିଁ । ଇଉକାଲିପଟସ୍ । ଆମ ବାଡ଼ରୁ ଖସିଯାଇ ପୃଥିବୀ-ଯାକ ମାଡ଼ିଗଲା, ନୁହେଁ ? ସେ ଯେମିତି ତା' ରଙ୍ଗରହସ୍ୟ ସେମିତି ! ଯାହା ହେଉ ଭାବି ଆପ୍ୟାୟିତ ହେଲି ଯେ ଇଉକାଲିପଟସ୍ ତା' ଗାଆଁ କଳଥିକୁ ଭୁଲିନାହିଁ । ଯୋଗ ଥିଲା ମ୍ୟାଗଲନ୍ ତା'ରି ଛାଇରେ ପୋଡ଼ି ପାଉଁଶ ହୋଇଯିବ । ମୁଁ ଦୀର୍ଘ ନିଃଶ୍ୱାସ ନେଲି । ବିଦେଶିନୀ ପାଇଁ ପୁଣି ଥରେ ମୋର ଗଭୀର ସମବେଦନା ଜଣେଇଲି ।

(ଆଶ୍ଚର୍ଯ୍ୟ । ତମ ପାଟିରୁ କଥା ପଦେ ବାହାରିବାକୁ ନାହିଁ ? ଧରିନେଉଛୁ ତମେ ବି ମ୍ୟାରିଲିନ୍ କଥା ଭାବୁଛ; କିନ୍ତୁ କିଣ ମୋଠୁ ବେଶି ଭାବୁଛ କି? ମୋ ଆଡ଼କୁ ଟିକିଏ ଅନେଇବାକୁ ନାହିଁ ? ତା' ହୋଇ ପାରେ ନାହିଁ, କାହିଁକି ନା ମ୍ୟାରିଲିନ୍ ତମ ପାଇଁ ଯାହା, ମୋ ପାଇଁ ସେଇଆ । କାହିଁକି ନା ମ୍ୟାରିଲିନ୍ ପୁରୁଷ ନୁହେଁ କି ସ୍ତ୍ରୀ ନୁହେଁ···,

ପ୍ରୁଫରୁ କହୁଛ ତା' ଚେହେରାରେ ରଙ୍ଗ ନାହିଁ, ଗୁଣ ନାହିଁ, ଡାଉ ନାହିଁ ଇତ୍ୟାଦି । ଯଦି ତା' ଭାବଭଙ୍ଗୀରେ କିଛି ଥାଆନ୍ତା, ବିଶିଷ୍ଟ ଅଣ୍ଟା ହଲେଇବା, ଆଖିପତା ନଚେଇବା, ଲୁଚେଇ ହେବା, କୁଥେଇ ହେବା, ଯେଉଁଥିରେ ମୋର କେଉଁ ଆତ୍ମୀୟାର (ସ୍ତ୍ରୀଙ୍କ କଥା ଗୁଡ଼ିଦିଅ, ଅନ୍ୟତଃ ଆଉ କାହାର) ଆତ୍ମୀୟତା ମନେ ପଡ଼ନ୍ତା, ତାହି ହେଲେ ହୁଏତ ମୁଁ ମ୍ୟାରିଲିନ୍‌କୁ ଭିନ୍ନ ଦୃଷ୍ଟିରେ ଦେଖିପାରି ଥାଆନ୍ତି, ନାରୀର ସମ୍ମାନ ଦେଇପାରି ଥାଆନ୍ତି; କିନ୍ତୁ ଦୁର୍ଭାଗ୍ୟ, ତା' ମଧ୍ୟ ହେଲା ନାହିଁ । ହୃଦୟରେ ବୁଦ୍‌ବୁଦ୍‌ଟିଏ ମଧ୍ୟ ଉଠି ପାରିଲା ନାହିଁ; ମାତ୍ର ଜଣେ ପତଳୀ ଢେଙ୍ଗୀ ବିଦେଶିନୀ, ଆଶା ବାନ୍ଧି ଆସିଛୁ ରାମକୃଷ୍ଣଙ୍କ ପାଣି ପବନରେ ଭଗବାନଙ୍କୁ ପାଇବ । ବେଶ, ତୁ ପ୍ରଥମ ନୁହେ, କି ଶେଷ ନୁହେଁ; କିନ୍ତୁ ଦୟା କରି ଦେଖେଇ ଦ ହେଲେ ଭଲ ହୁଅନ୍ତା । ମନେ କରନାହିଁ ଯେ ନାଗ୍ନପଣରେ ଶନ୍ ବୋଲି ଆଉ କେଉଁଥିରେ ବଳି ଯାଉଛୁ ।

ତୋର ଶାନ୍ତି ମିଛ, ପ୍ରୀତି ମିଛ, ଏତେ ମିଛ ଯେ ମୁଁ ଥରେ ବରଦାସ୍ତ କରି ପାରିଲି ନାହିଁ, ଭାବିଲି ତୋତେ ରେପ୍ କରିବି···

(ତମେ ସେମିତି ମୋ ଆଡ଼କୁ ଗ୍ୟହିଁଛ କିଣ ମ ? ମୋ ସ୍ୱୀକାରୋକ୍ତି, କନ୍-ଫେସନକୁ ପଢ଼ି ନେଲ ପରି, ସତେକି ତମେ କି ଶିନାହିଁ ଜୀବନରେ କେତେ ଥର କେତେ ଭଳି ଇଚ୍ଛା ହୁଏ ଗୁପ୍ତ, ବିକୃତ ତମର ମୋଟେ ହୋଇନ ଯେମିତି....)

ସ୍ତ୍ରୀଙ୍କ ଗ୍ରହାଣୀକୁ ପରୁଆ ନାହିଁ, କିନ୍ତୁ ମୋତେ ନିଜକୁ ଲଗିଲି ଯେ ମୋର ଭାବନା ଏଇ ଅପରୂପ ଶାନ୍ତିବନରେ ବଢି ଯାଉଛୁ ଜଳ ଜଳ ହୋଇ । ଜବାହରଲାଲ ନେହେରୁଙ୍କ ଶାନ୍ତିବନ ଏଠୁ ବେଶିଦୂର ନୁହେଁ, ଏଇ ଯମୁନା କୂଳରେ, ସେଥିପାଇଁ ନୁହେଁ । ଆମେ ଗଛ ଗହଳରେ ବେଶି ଭିତରକୁ ଗ୍ୟଲି ଆସିଥିଲୁ ବୋଧହୁଏ ସେଇଥିପାଇଁ । କାହିଁକିନା ଏଠି କିମାଟୋରିଅମ୍ ଦେଖା ଯାଉନାହିଁ, ଗଛଗୁଡ଼ାକ ଯମଦୂତ ପରି ଛିଡ଼ା ହୋଇଛନ୍ତି, କହୁଛନ୍ତି ଆମେହିଁ ଶାନ୍ତିଦୂତ, ଏଇ ଶେଷ ଆଉ ସୁନ୍ଦର; ଅଶ୍ଳୀଳ ହେବାକୁ ମନା ।

ସେଇଠୁ ଗନ୍ଧ ଉଠିଲା ।

ଆକାଶ ପବନରେ ଦୁର୍ଗନ୍ଧ । ଇଉକାଲିପଟସ୍ ତା'ର କିଛି ବୋଲି କରି ପାରୁନାହିଁ । ସ୍ୱଭାବତଃ ମୋର ଭାବକାତର ମନ ଡରିଗଲା । ମନେ ହେଲା ସତରେ ମୋର ଭାବନା ପଦାରେ ପଡ଼ିଗଲା, ଗନ୍ଧେଇଲା । ନା !! ମୁଁ ସେମିତି ନୁହେଁ ! ମୋତେ ଫେରି ଅଭିନନ୍ଦ କଲା ଓ ମୁଁ ମୋର ଅଦୃଶ୍ୟ ଅବଧାନକୁ ବୁଝାଇବାକୁ ଚାହିଁଲି ଯେ ପ୍ରକୃତରେ ଏଇ ମ୍ୟାଗଲିନ୍ ବ୍ୟାପାରଟା କଅଣ । ଆମୂଳଚୂଳ ପଢ଼ିଲେ ମ୍ୟାଗଲିନ୍‌ର ନାଁ ଗାଁ ଇତିହାସ । ତା'ର ସ୍ତ୍ରୀ ଲିଙ୍ଗ ପରି ତା'ର ଯୌବନ ମଧ୍ୟ ଅନିର୍ଦ୍ଦିଷ୍ଟ ମନେ ହୁଏ, ତେବେ ଧରି ନେବାକୁ ପଡ଼ିବ ଯେ ବୟସ ପଇଁତିରିଶରୁ ଊର୍ଦ୍ଧ୍ୱ ନୁହେଁ । ଅଷ୍ଟ୍ରେଲିଆରୁ ଆସିଥିଲା । ମୁଁ ଯେବେ ସେଠିକି ଯାଇଥିଲି, ନାନାସି ହ୍ୱାଇଟ୍ ବୋଲି ଜଣେ ଭାରତ ହିତୈଷିଣୀ ମୋ ସାଙ୍ଗରେ ବହୁତ ବକର ବକର ହେଲେ । ସେଇ ମୋତେ କହିଲେ ଯେ ମ୍ୟାଗଲିନ୍ ବୋଲି ଗୋଟିଏ ଶିକ୍ଷିତା ଯୁବତୀ, ତାଙ୍କ ପରମ ବନ୍ଧୁଙ୍କ ଝିଅ, ସେ ଭାରତରେ ଅଛି, କହୁଛି ସେଠି ସବୁଦିନେ ରହିବ, କାହିଁକି ନା ସେଇଠି କୁଆଡ଼େ ସେ ଶାନ୍ତି ପାଇଛି, ମୁକ୍ତି ପାଇବ, ଦିଲ୍ଲୀରେ ଅଛି ଏଇକ୍ଷଣି, ସେଇଠୁଁ ହିମାଳୟକୁ ଯିବ ଇତ୍ୟାଦି । କହିଲେ, ଦିଲ୍ଲୀକୁ ଫେରିଗଲେ ତା' ଖବର ଟିକିଏ ବୁଝିବେ, ତା' ମା କାନ୍ଦୁଛି ସଦାବେଳେ, କ'ଣ ନା ମୁଁ ଜାଣିଥିଲି ଏମିତି ହେବ, ଝିଅଟା ପିଲାଦିନୁ ଭଗବାନଙ୍କୁ ଖୋଜୁଛି, ମୁଁ ଜାଣିଥିଲି ସେ ଭୁଲିଯିବ····· ମୋତେ ଚିଡ଼ି ମାଡ଼ିଲା । ଜାଣିଥିଲି ଯଦି ଅଟକେଇ ରଖିଲନାହିଁ ? ତମ ଦେଶରେ କଣ ଭଗବାନ ନାହାନ୍ତି ? ମୁଁ ହଁ ହୁଁ । ମାରିଦେଇ ତା' କଥା ଭୁଲିଯିବାକୁ ଚାହିଁଥିଲି; କିନ୍ତୁ ଭାରତକୁ ଫେରିବାର କିଛିଦିନ ପରେ ମ୍ୟାଗଲିନ୍ ନିଜେ ମୋ ଘରେ ହାଜର ହୋଇଗଲା । କହିଲା, ତା' ମାଆ ମିସେସ୍ ହ୍ୱାଇଟ୍‌ଙ୍କଠାରୁ ମୋ ବିଷୟରେ ଶୁଣିଛି, ମୁଁ ଏକ ଧାରରେ ଜଣେ କବି ଦାର୍ଶନିକ ଓ ଭକ୍ତ, ତେଣୁ ତା'ର ଟିକିଏ ମିଳାମିଶା କରିବାକୁ ଇଚ୍ଛା, ଅବଶ୍ୟ ମୋର ଯଦି ଆପତ୍ତି ନଥାଏ । ସେଇ ପ୍ରଥମ ଦେଖା ରେ ମୋର ଧାରଣା ଯେ ଏ ଝିଅକୁ ଘରେ ପୂରାଇବାର ନୁହେଁ; ତା'ର ମୁରକି ହସ ମୋତେ ମୋଟେ ଭଲ ଲାଗୁନାହିଁ । ଯେମିତିକି ସେ ମୋତେ ସ୍ନିଗ୍ଧତାର ଛଳ ଦେଖାଉଛି, ଡାକୁଛି, କହୁଛି, ସକାଳର ଲଙ୍ଗ ନାହିଁ, ହସ ଯାହା, ପ୍ରଭାତ ସେଇଆ । ନିରବଚ୍ଛିନ୍ନ ଉଦାସ୍ୟ, ଅକ୍ଷତ ଅପେକ୍ଷା, ଆକୁଳତା ଟିକିଏ ବୋଲି ନାହିଁ । ନା, ଏମିତିକା ଜୀବ ମୋର ଦରକାର ନାହିଁ । ସେ ମୋତେ ଶୀତଳେଇ ଦେବ·······ମୁଁ ଭଲି ଗଲିନାହିଁ । କପେ ଚା' ଓ ଯୋଡ଼ିଏ ତିନୋଟି ଶ୍ଲୋକ ପରେ ମୁଁ ତାକୁ ଫେରାଇ ଦେଇଥାନ୍ତି; କିନ୍ତୁ ମୋ ସ୍ତ୍ରୀ ତା' କଥାରେ କି ହସରେ କି କେଉଁଥିରେ ମୋହିଗଲେ । ହିମାଳୟ ଯିବା ଆଗରୁ ଆମର ଘରେ କିଛିଦିନ ରହୁ ବୋଲି ବନେଇଲେ ଏବଂ ରହୁ ରହୁ ମାସେ ରହିଗଲା ।

ସେଇ ପ୍ରଥମ ଦିନ ବୁଝିପାରିଲି ତା' ମାଆ କାହିଁକି କାନ୍ଦି ଚୁ ପଦାବେଳେ । ସେ ଜାଣିଛି ଏ ହିଁଅ ମରିବ । ତମାଲସ୍ତର ନିଷ୍କରୁଣ ହିମରେ, ଧବଳତାରେ ମିଶିଯିବ ।

ତେଣୁ ଯେଉଁଦିନ ମୁଁ ତା'ର କେଉଁ ଗୁରୁଭଉଣୀ ପାଖରୁ ଖବର ପାଇଲି ଯେ ସେ ମରିଗଲା, ମୁଁ ତା'ର ମୃତ୍ୟୁର କାରଣ ପଚାରିଲି ନାହିଁ । ବିଶଦ ବିବରଣୀ ମାଗିଲି ନାହିଁ । କହିବାକୁ ଗଲେ ମୋତେ ଅଶ୍ୱସ୍ତି ଲାଗିଲା ଯେ ମୁଁ ଯାହା ଭାବିଥିଲି ସେଇଆ ହେଲା, ତା'ର ବିଫଳତା ପ୍ରମାଣିତ ହୋଇଗଲା, ଏଣିକି ମୋର ବିବ୍ରତ ହେବାର କିଛି ନାହିଁ । ସେ ଯେତେବେଳେ କହିଲା ଯେ ମଣ୍ଡଳୀର ଇଚ୍ଛା ଅନୁଯାୟୀ ମ୍ୟାରିଲିନ୍‌ର ଶବ ଦିଲ୍ଲୀକୁ ଆସିବ, ଏଇଠି ପୋଡ଼ା ହେବ, ମୁଁ ତାର ଉଦ୍ଦେଶ୍ୟ ବୁଝିବାକୁ ଚେଷ୍ଟା କଲି ନାହିଁ । ଉପରେ ପଡ଼ି କହିଲି ଯେ ମୁଁ ମଧ୍ୟ ଶବଦାହ ଦେଖିବି । ସ୍ଥାନ, ତାରିଖ ଟିପି ନେଲି । ପରେ ମିସେସ୍ ହ୍ୱାଇଟ୍ ଯେତେବେଳେ ଅଷ୍ଟ୍ରେଲିଆରୁ ଟେଲିଗ୍ରାମ କଲେ, ପାଉଁଶ ଟିକିଏ ଆଣି ତା' ମା ପାଖକୁ ପଠାଇବାର ଅନୁରୋଧ କଲେ, ମୁଁ ଉତ୍ତରରେ ଅବଶ୍ୟ ବୋଲି ଲେଖିଲି । ସେଇଥିଲାଗି ଆଜି ଦିନ ଏଗାରଟା ବେଳୁ ନିଜ କାମ ଛାଡ଼ି, ସ୍ତ୍ରୀଙ୍କ କଥାରେ ପଡ଼ି ତାଙ୍କୁ ମଧ୍ୟ ସାଙ୍ଗରେ ଆଣି, ଏଇଠି ଅପେକ୍ଷା କରିଛି । କଥା ଥିଲା ବାରଟା ବେଳକୁ ଶବଦାହ ହେବ, କିନ୍ତୁ ଆସି ଗୋଟାଏ ବାଜିଲଣି, କାହାରି ଦେଖା ଦର୍ଶନ ନାହିଁ । ହେଉ ଆମେ ଆହୁରି କିଛି ସମୟ ଅପେକ୍ଷା କରିବା । ଯେତେହେଲେ ମ୍ୟାରିଲିନ୍ ଆମର ଜଣେ ବାଂଶିଷ ବନ୍ଧୁ......

ଦୁର୍ଗନ୍ଧ ଉତ୍କଟ ହେଲାଣି । ଆମେ ମୁହଁ ଚାହାଁଚାହିଁ ହେଲୁ, ଏ ନିଶ୍ଚୟ ମଡ଼ାପୋଡ଼ାର ଗନ୍ଧ । ମେସିନରେ ପୋଡ଼ାହେଲେ କଣ ହେବ, ଧୂଆଁ ଖସିଆସୁଛି, ପବନରେ ଖେଳେଇ ହୋଇଯାଉଛି । ତାହାହେଲେ କଣ ମ୍ୟାରିଲିନର ଶବ ଆସି ପୋଡ଼ି ହୋଇଗଲାଣି ? ନା, ତା ହୋଇ ନଥିବ । ଶବ ଗାଡ଼ି ସାଙ୍ଗରେ କେତେ ଯାନବାହନ ଲୋକବାକ ଆସିବା କଥା, ଆମେ ଦେଖି ପାରିଲୁ ନାହିଁ କେମିତି ? ତା ଛଡ଼ା—ମ୍ୟାରିଲିନର ଶବ, ଦାହ ହେଉ କି ଧୂଆଁ ହେଉ କଣ ଏତେ ଗନ୍ଧେଇବ ?

ଯାହାହେଉ ସିଏ ହେଲେ ବୁଝିବ ଯେ ମୁଁ ମିଛଟାରେ ନିଜକୁ ମୋ ଭାବନାକୁ ଦୋଷ ଦେଉଥିଲି । ମୋତେ ହସ ଲାଗିଲା । ଧାତ୍, ମ୍ୟାରିଲିନ୍ ପରି ଗୋଟିଏ ଜୀବ, ଯାହାର ତେଇଶି ଚବିଶ ବୟସରେ ଏତେ କଥା କହିଲି, ତାଙ୍କୁ ପୁଣି ରେପ୍ କରିବାକୁ ଭାବିଲି, ଏଇ ହାସ୍ୟାସ୍ପଦ ଫେଚ୍‌କାମି ବୁଝି ହେବନାହିଁ ? ଫେଚ୍‌କାମି ନୁହେଁ, ରାଗ ହେଲା କିନ୍ତୁ ଭାବ ନାହିଁ ଯେ ମୁଁ ତାର ଦୁର୍ଗମ ଦୁରନ୍ତ

ଶାନ୍ତିକୁ ଭୁଲିପାରିଲି ନାହିଁ, ସେଇଥିପାଇଁ ଅନ୍ତତଃ ତାର ଦେହକୁ ହାସଲ କରିବାକୁ ଚାହିଁଲି. ହେଲେପରି ଅବାଏ ପୃଥିବୀ ପାଟିକୁ ନେଇ, ଚଢ଼େଇ ପରି ଚେନାଏ ଆକାଶ କୁଣ୍ଢେଇ ଧରି ଅନନ୍ତକୁ ଯାଇବାକୁ ବସିଲି; କିମ୍ବା ତପେ ବର କି କୋପେ ବର ବୋଲି ହୁଙ୍କାରିଲି। ଗ୍ଲୁଡ଼, ବିଶ୍ୱାସ ମରିଗଲାଣି। ହାରିଗଲିଣି; କିନ୍ତୁ ଭଗବାନ କରନ୍ତୁ ତାର ମଡ଼ା ଏମିତି ଗନ୍ଧାଉ ନଥିବ।

ସନ୍ଦେହମୋଚନ କରି ବୁଝି ଆସିଲେ ଭଲ। ମୁଁ ମୋ ସ୍ତ୍ରୀଙ୍କୁ ଅପେକ୍ଷା କରିବାକୁ କହି ଦୌଡ଼ିଲି।

ଶାନ୍ତିବନର ଗମ୍ଭୀରରୁ ଉଠି ଆସି କିମାଟୋରିଅମ୍‌ର ଘରକୁ ଯିବା କଷ୍ଟସାଧ୍ୟ ନୁହେଁ, କେଇ ଖୋଜ ବାଟ; କିନ୍ତୁ ବନର ସିରସିର ଓ ସବୁଜାଭର ସନ୍ଧରେ ଗେଟହେଲି ହେଉଥିବା ଉତ୍ତମକୁ ଗ୍ରାହ୍ୟ ହାଇ ମାରୁଥିବା କରୁଣୀ, ମେଳ ହୋଇଥିବା ମଉଳା ଖାଉ ଓ ବୁଢ଼ୀଙ୍କ ଭିତରୁ ଉଠୁଥିବା ବାମଁକୁ ଲେଉଡ଼ିବାର କଷ୍ଟ କେମିତିକା, ତା' ମୁଁ ଜାଣେ। ଭାଗ୍ୟକୁ ଧୂଆଁର ଗନ୍ଧ ଟିକିଏ କମି ଆସିଲା ପରି ମନେ ହେଉଥିଲା। ତା'ଛଡ଼ା ମ୍ୟାଣିଜାନ୍ ପାଇଁ, ଅନ୍ତତଃ ତା ମାଆ ପାଇଁ ଏତକ କରିବାକୁ ହେବ। ତେଣୁ କରୁଣୀକୁ ସିଧାସଳଖ ପଚାରିଲି ସେ ଯେଉଁ ବିଦେଶିନୀ ମହିଳାର ଶବ ଆସିବାକୁ ଥିଲା, ତାର କଣ ହେଲା। ସେ ସମ୍ପୂର୍ଣ୍ଣ ହାଇ ପରେ ଓଠକୁ ମୋଡ଼ିମାଡ଼ି ଗୁଟିଦେଇ କହିଲା—

"ଅଂରେଜ୍ ? ନହିଁ ଆୟା।
ତବ୍ କୌନ୍ ଆୟା ଥା ?"

ସେଇଠୁ ସେ କ'ଣ କହିଲା ଧରି ହେଲାନାହିଁ। ରବସ୍ ପରି ଶୁଭିଲା। ଚିଡ଼ିଲେ ଚଡ଼ୁ ପଛେ ଆଉଥରେ ପଚାରିଲି ବଡ଼ ପାଟିଆ ଉତ୍ତର ମିଳିଲା—

"ବୋଲ୍ ଦିଆ ନା ? ଲଓ୍ୱାରିସ୍।"

ଲଓ୍ୱାରିସ୍। ଲଓ୍ୱାରିସ୍। ବାରମ୍ବାର ସେଇ ଶବ୍ଦଟିକୁ ଉଚ୍ଚାରଣ କଲି। କାହାରି ନାଆଁ ନୁହେଁ, କେଉଁ ଜାତି ଗୋଷ୍ଠୀ ସମ୍ପ୍ରଦାୟର ସଙ୍ଗା ନୁହେଁ, ହେଲେ କିଛି ନ ହୋଇଥିବାର ଟାଣୁଆ ଆଓ୍ୱାଜ—ଲଓ୍ୱାରିସ୍। ସେ ମଧ୍ୟ ତା'ର ଅଧିକାର ସାବ୍ୟସ୍ତ କରି ଦେଇଗଲା। ହୋଇପାରେ ତା'ରି ଧୂଆଁ ବୋଲି ଏମିତି ବଟକଟିଆ ଗନ୍ଧେଇଲା; କିନ୍ତୁ ସେ ପରୁଆ କରେ ନାହିଁ। ଜୀବନରେ ଯାହା ମରଣରେ ସେଇଆ, ସେଇ ପରିମଳ, ସେଇ ବାସ୍ନା, ସେଇ ତା'ର ଦେହ।

କିଏ ତାକୁ କେଉଁବାଟେ ଆଣି ଗୁଡ଼ି ଦେଇଗଲା, ଆଉ ସେ ଚଟ୍‌କିନା ପୋଡ଼ି ହୋଇ ଧୂଆଁ ଉଡ଼େଇଲା, ସେ ବିଷୟରେ ମୁଣ୍ଡ ଘୂରେଇ ଲାଭ ନାହିଁ।

ମୋଟ କଥା ସେ ମ୍ୟାଗଲିନ୍ ବୁଝେଁ । କାହାର କିଛି ବୁଝେଁ । ମୁଁ ଶୀଘ୍ର ବଜମହିକୁ ଫେରିଗଲି, ମୋ ସ୍ତ୍ରୀଙ୍କ ପାଖକୁ । ସନ୍ଦିଗ୍ଧ ଭଙ୍ଗୀରେ ସ୍ପଷ୍ଟବର ଦେଲି,—"ଲଓ୍ୱାରିସ୍ ।"

"ଏଁ ?"

ଶବ୍ଦାର୍ଥ ବୁଝେଇ ଦେଲି । ଲଓ୍ୱାରିସ୍ ମାନେ ହେଉଛି ଯାହାର କେହି ନାହାନ୍ତି, ରାସ୍ତା ଘାଟରେ ପଡ଼ି ମରିଗଲା, ଖବର ପାଇ ମ୍ୟୁନିସିପାଲିଟିବାଲା ତା'କୁ ଏଠି ଆଣି ଥୁଡ଼ିଦେଲେ ଓ ମେସିନ୍ ତାକୁ ଭସ୍ମ କରିଦେଲା, କିନ୍ତୁ ଲଓ୍ୱାରିସର ରକ୍ତମାଂସ ଇମେଜ୍ ତାଙ୍କ ମନପରଦାରେ ଫୁଟି ଉଠି ପାରି ନଥିବ । ସେ କେମିତି ଦେଖିଥିବେ ମୁଁ ଯାହା ଦେଖିଛି ? ଯେମିତି ମହାନଗରୀର ଯେତେକ ନର୍ଦ୍ଦମାର ମଇଳା ଏକାଠି ହୁଏ, ତାକୁ ନ ନାଦ ଘୂର୍ଣ୍ଣନ ଓ ବିଶୋଧନ ପରେ ଦହନ କରିଯାଏ ଓ କଳାକାଦୁଅକୁ ଟ୍ରକମାନଙ୍କରେ ବୋହି ନେବାକୁ ହୁଏ, ରାଜଧାନୀର ଲନ୍ ମାନଙ୍କରେ ସାର ଦେବା ପାଇଁ, ଫୁଲମାନଙ୍କ ପାଇଁ, ଫୁଲେଇମାନଙ୍କ ପାଇଁ··· ମୁଁ ସେଇଠି ଦେଖିଛି । ପନ୍ଦରବର୍ଷିଆ ଲଓ୍ୱାରିସ୍ । ପୁଅର୍ ହାଉସ୍ ଅର୍ଥାତ୍ ପରକାଷ୍ଠା ଗରିବଖାନାରୁ ଧରାହୋଇ ଆସିଛି । ନ ହେଲେ ଦିନ ପରେ ଦିନ ଏଭଳି ପୂତିଗନ୍ଧମୟ ପରିବେଶରେ କିଏ କାମ କରିବାକୁ ଆସିବ । ସିଏ ବା ଆସିବ, କେତେ ମଜୁରି ହାଙ୍କିବ ଜାଣିଛନ୍ତି ?—ବିଜ୍ଞାଗୀସ୍ଥ କର୍ତ୍ତୃପକ୍ଷ ମୋତେ ଲଭକ୍ଷରର ତର୍ଜମା କରିବାକୁ ଯାଇ ବୁଝାଉଥିଲେ—ଯେ କାହିଁକି ମଇଳା ଉଠାଇବାରେ ଡେରି ହେଉଛି, ଶୁକୁଟା ପିଲା ପାରୁ ନାହିଁ, ମଡ଼ଆ ପିଲା ପାରୁ ନାହିଁ, ତଥାପି ରାସ୍ତା ପଡ଼ୁଛି । ଭଲ, ଭଲ । ବେଶି ସମସ୍ତ ସେଇ ଟୋକା ଲୋକଟାଙ୍କୁ ଦେଖି ହେଲା ନାହିଁ । କେତେ-ବେଳଯାଏଁ ନାକରେ ରୁମାଲ ବାନ୍ଧି କରି ରଖିବ ? ତେବେ ତାଙ୍କ ମୁହଁରେ ଲକ୍ଷିଥିବା ହସ (ହସ କି ଯନ୍ତ୍ରଣା କନ୍ଦପର ତା'କୁ) ମନେ ପଡ଼ୁଛି । କେଉଁ ହସ ବଡ଼େ ମ୍ୟାଗଲିନ୍‌ର ମନ୍ଦହାସ ତାଠୁଁ ଅଧିକ ସାଦା, ଶେଷା ଟେଣୁ ଶାନ୍ତିରେ ବିଷାଦରେ ଅନବଦ୍ୟ ବୋଲି କହିବ ? ସେଇ ପିଲାଙ୍କ ଭିତରୁ ଗୋଟାଏ ରାସ୍ତାରେ ପଡ଼ି ମରି ଯାଇଥିବ ? ମଲା ମୁହଁରୁ କ'ଣ ବା' ବୋକା ହସ ଲିଭି ଯାଇଥିବ ? ଆଉ ଗୋଟାଏ ଲଓ୍ୱାରିସ୍‌ର ମୁହଁ ମନେ ପଡ଼ୁଛି । କୁଷ୍ଠ ରୋଗରେ ତା ହାତଗୋଡ ସତରେ ଛିଣ୍ଡି ଯାଇଛି ଏବଂ ଛିଣ୍ଡିଥିଲେ କେଉଁ ଯାଏ ଯାଇଛି କହି ହେବନାହିଁ, କାହିଁକନା ସେଥିରେ ସବୁବେଳେ କନା ବନ୍ଧା ହୋଇଥାଏ; କିନ୍ତୁ ସନ୍ଦେହ ନାହିଁ ଯେ ସେ ବୁଢ଼ୀ ଓ ଭିକାରୁଣୀ । ସେ ଯେଉଁଠି ଭିକ ମାଗେ, ରାତିରେ ସେଇଠି ଶୁଏ, ମୁଁ ଦେଖିଛି । ଆଉ ତା ମୁହଁରେ ବଦା ବାନ୍ଧିଥିବା ଅକାରଣ ଅଭିଳ ହସକୁ ଦେଖିଛି । ସେ ତାକୁଇ ନେଇଥାଏ, ବସ୍‌ଷ୍ଟାଣ୍ଡକୁ ଧାଉଁଥିବା ଲୋକମାନଙ୍କୁ ଅନାଏ,

ଉପରେ ପଢ଼ି ଅମୁକ ବସ୍ ଯିବନି, ଅମୁକ ଟପ ଚଳେ ବୋଲି କହେ, କୃଷ୍ଣଙ୍କ ମା'ଙ୍କରେ ଖେଳେ । ତା'ର ପରିବା ସୁଖରେ ଖାଲି ପେଟନା ଓ ପରନାମି, ଆଉ କିଛି ନାହିଁ ବୋଲି କିଏ କହିବ ? କେଉଁ ହିସାବରେ ମ୍ୟାରଲିନ୍ ?

ମ୍ୟାରଲିନ୍‌ର କଅଣ ହେଲା ? ମନେ ହେଉଛି ମୋ ସ୍ତ୍ରୀ ମୋ ଠାରୁ ଅଧିକ ବ୍ୟସ୍ତ ହୋଇ ଉଠିଲେଣି । ବାରମ୍ବାର ଘଡ଼ି ଦେଖୁଛନ୍ତି, ଭ୍ରୂକୁଂଚନ୍ତି ବସିବାକୁ ନାହିଁ ଏବଂ ବନର ଗହନକୁ ଯିବାପାଇଁ ମଙ୍ଗୁ ନାହାନ୍ତି । ସେମିତିକ ଇଡ଼ଭାଲ୍‌ପଟେପ୍- ମାନଙ୍କର ଡାଯ୍, ବଣାଲତା ଇତ୍ୟାଦିର କିଛି ମୂଲ୍ୟ ନାହିଁ, କେମିତି ଭାମଟା ସାରି ଘରକୁ ଫେରଗଲେ ରକ୍ଷା । ଜଙ୍ଗଲରୁ, ଉଦ୍‌ବେଗରୁ ତ୍ରାହି ମିଳିବ ।

ଖରଚ ହେବାର କଥା । ଛାଡ଼ି ବାରଟା ବେଳେ ଦାହ ହୋଇଆସୁଥା, ଅଧଘଣ୍ଟା ଭିତରେ ଆମେ ପାଉଁଶ ଟିକିଏ ନେଇ ଫେରି ଆସିଥାଆନ୍ତି, ଏଇକ୍ଷଣି ଥାସି ଅଢ଼େଇଟ, ବାଜିଲଣି, ଅପେକ୍ଷାର ଗୋଟାଏ ସୀମା ଅଛି, କିନ୍ତୁ ତାଙ୍କର ବିରକ୍ତି ଏତେ ଅଧିକ ହେବ, ମୋଠୁଁ ବଳିଯିବ ବୋଲି ମୁଁ ଆଶା କରି ନ ଥିଲି । କିଓ, ସେ ପରି ତମର ଅନ୍ତରଙ୍ଗ ମିତ ହୋଇଥିଲା ? ତମେଇ ପରି ତାଙ୍କୁ ମାସକ ପାଏଁ ଅଟକେଇ ରଖିଲ, ଗୁଡ଼ିଲ ନାହିଁ ? ମଝିଘର କୋଣରେ ଥିବା ବ'ଡ଼ନୋଟି କୃଷ୍ଣବଣ୍ଟୁଙ୍କୁ ନେଇ କେତେ କ'ଣ ଚନ୍ଦ୍ରାଚନ୍ଦ୍ରି ଫୁସୁରୁଫାସର ହେଉଥିଲ, ଭୁଲି ଗଲଣି ? ଆଚ୍ଛା, ତମର ଗୋପନ ଭଆଜନ ବେଳେ ମୁଁ ଆସି ପହଞ୍ଚି ଗଲାରୁ ତମେ ବ'ଜଣ ଏମିତି ସ୍ତ୍ରୈରଙ୍କ ପରି ହେଉଥିଲ କାହିଁକି ? ସତେକି ମୁଁ ତମ ଭେଦ ଜାଣି ନେବି, ଜାଣିବା କଥା ନୁହେଁ । ମୁଁ ଯେତେହେଲେ ପୁରୁଷ, ସ୍ଥୂଳ, ପ୍ରାର୍ଥନାର ଶ୍ଳୋକ ବୋଲି ପାରିବ ଯିନା ତା'ର ସୂକ୍ଷ୍ମସୁନ୍ଦର ତନ୍ତ୍ରୀ ଛୁଇଁ ପାରେନ ନାହିଁ, ଛୁଇଁଦେଇ ଦେବ ନ ହେଲେ ଛିନ୍ନ ହୋଇଯିବ···

(ଯେତେହେଲେ ପୁରୁଷ, ତେଣୁ ପ୍ରଶାନ୍ତକୁ ରେପ୍ କରିବାର ବିକୃତ ଆବେଗ କେବଳ ତା'ର ପକ୍ଷରେ ସମ୍ଭବ···)

ରଖ ତମ ନାଁଆପଣିଆ ! ମୋର ଇଚ୍ଛା ହେଲା ଯେ ଅଧିକ ବ୍ୟସ୍ତବ୍ୟସ୍ତ ହୋଇ ଉଠନ୍ତୁ । ଖସ୍‌ତେଜ ବଢ଼ି ବଢ଼ି ଯାଉ, ବନ ଭିତରକୁ ଗଲେ ମୁହଁ ପାଖରେ ପୋକଜ, ଗୋଡ଼ ପାଖରେ କାଦୁଅ, ବାହାରକୁ ଆସିଲେ ମୁହଁ ସାମନା ଝଗ, ଧୂଳି, ପୋକଜ ବଦଳରେ ମାଛି । ସେମିତିକ ସେ କହିବେ ହେଲା, ଯଥେଷ୍ଟ ହେଲାଣି, ମ୍ୟାରଲିନ୍ ମଲାଣି, ଚାଲ ଯିବା ଘରକୁ । ଅବଶ୍ୟ ପାଉଁଶ ନ ନେଇ ଘରକୁ ଫେରି ହେବନାହିଁ, କିନ୍ତୁ ସେ ହୁଏତ ମ୍ୟାରଲିନ୍ ପ୍ରୀତିରୁ ମୁକ୍ତ ହୋଇଯିବେ ।

ମ୍ୟାଗଲନ୍‌ର କଅଣ ହେଲା ଭଗବାନ ଜାଣନ୍ତି । ବୋଧହୁଏ ଶବଗାଡ଼ି ମିଳିଲା ନାହିଁ, କମ୍ପାନୀ ମଣ୍ଡଳୀର ସାଥୀମାନେ ଏକାଠି ହୋଇ ପାରିଲେ ନାହିଁ....।

ଚିନ୍ତା କରି ଲାଭ ନାହିଁ । ଡେରି ହେଲେ ହେଉ । ତା' ହେଲେ ହୁଏତ ଆହୁରି ଗୋଟାଏ ଦୁଇଟା ଲର୍ଡ଼୍ସ୍‌ରସ, ଆହୁରି ଗନ୍ଧ, ଶୁଖୁଆ ପୋଡ଼ାର ବ୍ୟଞ୍ଜନର —ପତ୍ନୀ ବିଗ୍ରସ୍ତ ଛଟପଟ ହୋଇ ଉଠିବେ । ମ୍ୟାଗଲନ୍ ଭୂତ ହୋଇ ଘୂରିବ ସବୁଦିନ ପାଇଁ !

ନ , ମୋତେ ଦୋଷ ଦେଇ ପାରିବ ନାହିଁ । ତମର ନାରାୟଣ, ମୋର ଦାଶର୍ଥ, ତମର ମ୍ୟାଗଲନ୍, ମୋର....ତୁମେ କ'ଣ ଭାବୁଛ ମୁଁ କୋଉଥିକି ଯୋଗ୍ୟ ନୁହେଁ ? ଯା' ପାଇଁ ଅଧମ, ତା' ପାଇଁ ଅକ୍ଷମ ?

ମୋ ମନକଥା ଶୁଣିଲା ପରି ଗୁହୁଁ ଗୁହୁଁ ଗୋଟାଏ ମ୍ୟୁନିସିପାଲିଟି ଗାଡ଼ି ହତା ଭିତରକୁ ପଶିଆସିଲା ଓ କିମାଟେ ରଥମ୍‌ର ପଛ ପାଖକୁ ଗୁଲିଗଲା । ଆସୁଛି ବୋଲି କହି ମୁଁ ପୁଣି ଥରେ ଦୌଡ଼ିଲି । ଶବକୁ ଅବଶ୍ୟ ଦେଖି ପାରିଲି ନାହିଁ; କିନ୍ତୁ ଶୁଖିଟାଏ ହେଲି, ଯାହା ଭାବିଥିଲି ସେଇଆ । ପ୍ରଶ୍ନ ପଗ୍ଚରିବା ଆଗରୁ ଖାକିପିନ୍ଧା ଲୋକ ଜଣାଇଦେଲା — ଲର୍ଡ଼୍ସ୍‌ରସ୍ !

ଗାଡ଼ି ଭୁଁକିକି ପଳେଇଗଲା, ଯଥାକ୍ରମେ ଗନ୍ଧ ଉଠିଲା ଓ ମୁଁ ଫେରିଆସି ସ୍ତ୍ରୀଙ୍କୁ ଲକ୍ଷ୍ୟ କଲି । ତାଙ୍କ ଦୁରବସ୍ଥା ଦେଖି ମୋର ପ୍ରକୃତରେ ଦୟା ହେଲା । ତଥାପି ମୁଁ ଖୁଞ୍ଚାଏ ଦେବାକୁ ଗୁହିଁଲି । କହିଲି, ମନେ ହେଉଛି ବେଶି ଡେରି ହେବ ପୁଣି କେଇଟା ଲର୍ଡ଼୍ସ୍‌ରସ, ତା'ପରେ ଯାଇଁ ..।

ସେ ମୋ ଅଡ଼କୁ ଏମିତି ବିକଳ ହୋଇ ଅନେଇଲେ ଯେ ମୁଁ ଦେଖିଲି ଆଉ ଖୁଞ୍ଚା ଦେଇ ହେବ ନାହିଁ ଗୃହାଣୀରେ ହାରି ଯିବାର ଭାବ ବୋଲି କହିବ ନାହିଁ, ବିମୂଢ଼ତା ।

ତାଙ୍କୁ ଉଦ୍ଧାର କରିବା ପାଇଁ ମୋର ପ୍ରାଣ କାନ୍ଦିଉଠିଲା ଏବଂ ହଠାତ୍ ମୋତେ ଗୋଟାଏ ବୁଦ୍ଧି ଜୁଟିଲା । କହିଲି "ଶୁଣ, ଏଇ ଲର୍ଡ଼୍ସ୍‌ରସ ସଦ୍ୟ ପୋଡ଼ି ହୋଇଯାଇଛି ; ପାଉଁଶ ପୂତ ହୋଇ ରହିଥିବ ।"

ଗୃହାଣୀ ମାଗିଲା ପରି ଚାହୁଁଛି । ତେଣୁ ମୁଁ ମାଡ଼ିଗଲି "ଯଜ୍ଞ ପାଉଁଶ ସମାନ । ଦେହ ପୋଡ଼ିଗଲେ ପାଉଁଶ । ସେଇ ଲାଗି ମୁଁ ଭାବୁଥିଲି କଅଣ – କି ।"

ଆଗକୁ ଯାଇ ଲାଭ ନାହିଁ । ମୋ ସ୍ତ୍ରୀ ବୁଦ୍ଧିମତୀ । ମୁଁ କଅଣ କହିବାକୁ ଯାଉଛି ସେ ବୁଝିପାରିଲେ; କିନ୍ତୁ ତାଙ୍କ ଗୃହାଣୀରେ ପାଇବାର ଭାବ ନଥିଲା,

ବିମୂଢ଼ତା ମଧ୍ୟ କଟିଯାଇଛି, ସତେକି କହୁଛନ୍ତି ହୁଁ ହୁଁ ପାଉଁଶ ପତ, ପାଉଁଶ ସମାନ···

ପ୍ରତିବାଦ କରିଥିଲେ କହିଥାଆନ୍ତି ବୁଝିବାକୁ ଚେଷ୍ଟା କର । ଆମେ ପାପ କରୁଛୁ, ତା' ବୁଢ଼ୀ ମାଆକୁ ଉଣ୍ଡେଇ ଦେଉଛୁ ବୋଲି ଭାବ ନାହିଁ । ପ୍ରକୃତରେ ମ୍ୟାରିଲିନ୍ ଯାହା, ଲର୍ଓ୍ୱାରିସ ସେଇଆ, ନାରାୟଣ ଯାହା....ପାଉଁଶରେ ଗନ୍ଧ ନାହିଁ ମ, ବୁଝିବାକୁ ଚେଷ୍ଟା କର; କିନ୍ତୁ ସେ ମୋତେ ବୁଝେଇବାରେ ସୁଯୋଗ ଦେଲେ ନାହିଁ । ମୋ ହାତକୁ ଧରି କ୍ରିମାଟୋରିଅମ୍ ଆଡ଼କୁ ଗଲେ, ସାମାନ୍ୟ ମୁଣ୍ଡ ଟୁଙ୍ଗାରିବାର ଆବଶ୍ୟକତା ଅଛି ବୋଲି ମଧ୍ୟ ମନେକଲେ ନାହିଁ ।

ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲି ପୂର୍ବରୁ କେବଳ ଥରେ ତାଙ୍କ ପାଟି ଖୋଲିଥିଲ । କହିଲେ ମ୍ୟାରିଲିନ୍ ହାତରେ ମୁଁ ଗୋଟିଏ ମୁଦି ପିନ୍ଧେଇଥିଲି । ତମରି ମୁଦି । ସେ କହିଥିଲା ତାକୁ ମନ୍ତୁରେଇବ, ପ୍ରାର୍ଥନାରେ ବନ୍ଦ କରି ଫେରାଇଦେବ, ତା ହେଲେ ତମର ଦଶା କଟିଯିବ....ଗୁଡ଼ ।

ଏତିକି ଶୁଣିଲା ପରେ ମୁଁ କଅଣ କହିଥାଆନ୍ତି ଯେ ତାହା ହେଲେ ଥାଉ, ଆପଣା ମ୍ୟାରିଲିନ୍—ଧନ ପାଇଁ ଅପେକ୍ଷା କରିବା ? କିଛି ମାଆ ପାଇଁ ? ମୁଁ କଅଣ ଏଡ଼େ ସ୍ୱାର୍ଥପର ହୋଇଛି ? କିନ୍ତୁ ମୋ ସ୍ତ୍ରୀଙ୍କର ଜଣାଇବା ଉଚିତ ଥିଲା ଯେ ସେ ମୋତେ ଏତେ ଭଲ ପାଆନ୍ତି ଏବଂ ସେ ବ'ନଯୋକ କେଉଁଥିପାଇଁ ଫୁସୁରୁଫାସର ହେଉଥିଲେ ତା'ର କିଞ୍ଚିତ ଆଭାସ ଦେଲେ ଚଳିଥାଆନ୍ତା ।

ସତେ, ତାଙ୍କର ଏଭଳି ହତାଶ ହେବା ଉଚିତ ନୁହେଁ । ମୁଁ ଅଦୌ କହୁ ନାହିଁ ଯେ ଭଲପାଇବା ମଧ୍ୟ ଶେଷକୁ ସାଦା ଅଥବା ପାଉଁଶ ହୋଇଯାଏ ।



# ତାଙ୍କ ମୁହଁ

ପିମ୍ପୁଡ଼ିଟା ଏତେବେଳଯାଏଁ କୋଉ ଗାତରେ ପଶିଛି ? କୋଉ ଗାତରେ ନୁହେଁ. ଏଇ ଗାତରେ । ରାମପ୍ରସାଦ ଗାତର ସୀମା ସରହଦକୁ ଛୁଇଁନେଲେ ଏବଂ ଆପ୍ୟାୟିତ ହେଲେ । ଗର୍ତ୍ତବିଶେଷ ଏଇଠି, ମୋ ବସିବା ଠାନରେ ଅଛି । ଆଜି ନୁହେଁ. ଯେତେଦିନ ହେଲା ମୁଁ ବାବା ଜଗ୍ଗାନନ୍ଦଙ୍କ ପାଖରେ ଆସି ବସୁଛି । ପଛ ଦୁଇଦିନଟା ଧାଡ଼ିକୁ ଛାଡ଼ି ଦେଇ ଡାହାଣହାତ ପ୍ରଥମ ଖୋଲା ଦରଜାକୁ ଲାଗିକରି ଏଇ ନଜର ଜାଗା ଝଣ୍ଡିଏ । ଇଚ୍ଛା କଲେ ଚଟ୍‌ପଟ୍‌କିନ ଖସି ଚାଲି ଯାଇ ହେବ । ଅବଶ୍ୟ ଖାଲି ସେଇଥିପାଇଁ ନୁହେଁ । ମୋତେ ଏଇ ଅରକ ଭଲ ଲାଗିଛି । ବଙ୍କା ସବୁ ଧଳା ପାଲିସ୍ ଚଟାଣ, ଧଳା ମାର୍ବଲ୍ । ଏଇଠି ମାର୍ବଲ ଝଣ୍ଡିଆ ହୋଇ ଯାଇଛି, ଶୁଭ୍ରତାରେ ଆଖି ଦୁରୁଣିଆ କଳା ଗାତଟିଏ, ଯାହାକୁ ଚିହ୍ନଟ କରି ହେବ, ଏଇ ଖଣ୍ଡିକ ମୋରି ଜାଗା ବୋଲି କହି ହେବ, ତା ଉପରେ ହାତ ବୁଲାଇ ନଜରକୁ ଚିହ୍ନି ହେବ । ନଜର ଅହମିକା ନୁହେଁ, ବାବା ଯାହା କହନ୍ତୁ ପଛକେ ଏବଂ ପିମ୍ପୁଡ଼ିମାନଙ୍କ ଲୀଳାଖେଳା ଦେଖିହେବ ।

ମଜା ହେଉଛି ଯେ ଅମୁକ ପିମ୍ପୁଡ଼ିକୁ ଭଲ ପାଇ କିମ୍ବା ଘୃଣା କରି ହେବ ନାହିଁ । କାହିଁକନା ଇଏ ଯାହା ଆରକ ସେଇଆ । ସ୍ୱା'ର ଲୁରୁମୁନିଆ ଖେଳକୁ ଦେଖ, ତାକୁ ଦଳିଦିଅ, ଏକା କଥା । ସ୍ୱପଣ ଭଜନ ଶୁଣିବାର ଫାଙ୍କରେ ଏବଂ ଲୋକମାନଙ୍କୁ ଦେଖି ନ ଦେଖିବାକୁ ଚାହିଁବାର ବ୍ୟାକୁଳତାରେ ଏମାନେ କାମରେ ଆସନ୍ତି । ଆରେ ହେଇଟିରେ, ଗାତରୁ ଫେରି ଆସି ଧାଇଁଛି ତରତର ହୋଇ । ଗଲା, କୋଉ ଶାଢ଼ୀର କାନି ଭିତରେ ପଶିଗଲା । ମରବ ହ୍ୟାପ ।

ଶାଢ଼ୀର କାନିରୁ ଶାଢ଼ୀପେରା ପିଠିକୁ ଅନେଇ, ପିଠିରୁ ପିଠିକୁ ଅନେଇ ବାବାଙ୍କ ଯାଏଁ, ବାବା ଅର୍ଥାତ୍ ସେଇ ସର୍ବସାଧାରଣ ଜଣ, ଦାଢ଼ି, କପାଳରେ ନାଲି ସିନ୍ଦୂର ଟୋପା, ହୁଏତ ଗୃହାଣୀ ଦପ୍ ଦପ୍ ଜଳୁଛି, ଜଳୁ, କିଏ ମନା କରୁଛି···ରାମପ୍ରସାଦ ମୁହଁ ତଳକୁ କଲେ । ଶୁଣିବାକୁ ପଦେ ପଦେ ଭଲ ଲାଗୁଛି ସେଇ ଯଥେଷ୍ଟ ।

—ଆପଣମାନେ ଘଣା ପେଲିବା ଦେଖି ନାହାନ୍ତି ? ବଳଦ ଗୋଲ ଗୋଲ ବୁଲୁଛି, ଘଣା ପେଲୁଛି, ପେଲି ଚାଲିଛି, ତେଲ ନିଗାଡ଼ୁଛି; କିନ୍ତୁ ଆଖି ଆଗରେ ଯେଉଁ ନଡ଼ାବଡ଼ା ଥୁଆ ହୋଇଛି, ସେଥିକୁ ଯୋମଣି ପହଞ୍ଚି ପାରୁ ନାହିଁ । ସେଇ ହୋଉଛି ସଂସାରୀ ମଣିଷର ଦଶା···।

ଉପମା ମନ୍ଦ ନୁହେଁ । ତା' ଛଡ଼ା ବାବା କଥାଟିକୁ କହି ଜାଣନ୍ତି । ନେତା ହୋଇଥିଲେ ଆହୁରି ନାଆଁ କରିଥାଆନ୍ତେ । ତେବେ·· ତେବେ....ଏଇ ଘଣାଗପ ପୂର୍ବରୁ ପଢ଼ିଲି ପରି ମନେ ହେଉଛି । କିଏ କହିଥିଲେ ? କବୀର ? କୃଷ୍ଣମୂର୍ତ୍ତି ? ନା, ନା, ଭକ୍ତ ନୁହେଁ କି ଯୁକ୍ତ ନୁହେଁ । ଭକ୍ତ । ଉପମା । ମନେ ପଡ଼ିଲା । ସେଇ ଯେଉଁ ଚଟି ବହି କେଇଟା ଗସ୍ତରେ ବୁଲିଲାବେଳେ କିଣିଥିଲି, ଭାବିଲି କୋଟେସନକୁ କାମ ଦେବ, ସେଇଥିରେ ଲେଖାଅଛି । ବିବେକାନନ୍ଦ ଅଥବା ରାମକୃଷ୍ଣ । ଛି ! ବାବା ଆଉ ଜଣକର ଉକ୍ତି ଚୋରି କରି କହୁଛନ୍ତି । ହୋଇପାରେ ଯେ ଧର୍ମୋପଦେଶରେ ନୂଆ ବୋଲି କିଛି ନାହିଁ, ତେବେ ଉପମା ବଦଳେଇ ଦେଇ ପାରୁ ନାହାନ୍ତି ? ମନ ହେଉଛି ସଭା ଶେଷରେ ବାବାଙ୍କୁ ଯାଇ କହିବି । ତାଙ୍କ ଚେହେରା କେମିତି ପାଲଟି ଯିବ ଦେଖିବି ।

କିନ୍ତୁ ମୁଁ ସଭା ଶେଷଯାଏଁ ରହି ପାରିବି ନାହିଁ । କେବେହେଲେ ରହି ନାହିଁ । ଯେ ସୁଆଡ଼େ ଚାଲିଯିବେ, ଖାଲି ମୁଁ ଆଉ ବାବା ଏକୁଟିଆ ପଡ଼ିବୁ, ସେକଥା ହେବ ନାହିଁ । ଦରକାର ନାହିଁ । ଧନ୍ୟବାଦ ।

ମୁଁ ବାବାଙ୍କୁ ଡରେ ବୋଲି ଭାବନାହିଁ । ଧର୍ମ, ଭଗବାନ ଇତ୍ୟାଦି ପ୍ରତି ମୋର ପ୍ରଗାଢ଼ ଶ୍ରଦ୍ଧା. କାହିଁକନା ସେଥିରେ ନିରାଶ ହେବାକୁ ପଡ଼ିବ ନାହିଁ । ଆଶା ଅସୀମ । ଏ ଜନ୍ମ ନ ହେଲେ ପୁନର୍ଜନ୍ମ · ପାଇବି । ବାବା ଯାହା ସବୁ କହୁଛନ୍ତି, ନିଜକଥା ହେଉ ବା ଚୋରିମାଲ ହେଉ, ମୁଁ ମନକର୍ଣ୍ଣ ଦେଇ ଶୁଣୁଛି । ଶୁଣିବା ପାଇଁ ତ ଆସୁଛି । ସମସ୍ତ ପାଇଲେ କାହାକୁ କିଛି ନ କହି (ସୁଧୀର ଶର୍ମା ଛଡ଼ା) ଏଇଠିକି ପଳେଇ ଆସୁଛି । ଶୁଣୁଛି ଓ ଆଖିବୁଜି ଧ୍ୟାନ କରୁଛି । ପିମ୍ପୁଡ଼ିମାନଙ୍କ ସାଙ୍ଗରେ ଖେଳୁଛି । ବାବା କେବଳ ଧର୍ମ ଅଥବା ଭଗବାନଙ୍କ ଛବି ହୋଇଥିଲେ ତାଙ୍କୁ ମୁହଁ ମୁହିଁ ଦେଖିବାରେ ଆପତ୍ତି ନ ଥା'ନ୍ତା; କିନ୍ତୁ କଥା ହେଉଛି ଯେ ସେ ମଧ୍ୟ ଜଣେ ମଣିଷ, ଦେହ, ଦେହର ନିଶଦାଢ଼ୀ, ଦେହର ଗନ୍ଧ, କୁତ୍ସିତ ଏବଂ ନାଙ୍ଗ ଦେହରୁ ଜନ୍ମିତ···ମୁଁ ଅକାରଣରେ ଗୋଟାଏ ଅଧିକା ମଣିଷର ମୁହାଁମୁହିଁ ହେବି କାହିଁକି ? କାହିଁକି !? ନା, ନା, ଯଥେଷ୍ଟ ହୋଇଛି । ରାମପ୍ରସାଦ ଗୀତରୁ ହୁଗୁଳି ଯାଇଥିବା ଗୋଟାଏ ଗୋଡ଼ ସାଙ୍ଗରେ ଖେଳିଲେ ।

ଭାବିଲେ କାନ୍ଦିବେ । ଏ ଗୀତ ହେଉଛି ସେଇଥିପାଇଁ, ଲୁହକୁ ଧରିବା ପାଇଁ; କିନ୍ତୁ ମୁଁ ଜାଣେ ଲୁହ ଆସିବ ନାହିଁ ।

ଅଭିଯୋଗ କଲା ପରି ରାମପ୍ରସାଦ ପିଠିମାନଙ୍କୁ ପ୍ରଶ୍ନ କଲେ । କହିଲେ, ତମେ ସବୁ ଗୋଟିଏ ଗୋଟିଏ ମଣିଷ । ଗଣ୍ଠିଆ, ଝଣ୍ଡି ଆଖାବରା, ଅସନା-ମସନା, ମୋରପରି । ସେଇଲାଗି ତ ଏଠିକି ଆସୁଛ; କିନ୍ତୁ ମୁଁ ତୁମ କାହାରି ମୁହଁକୁ ଅନେଇଲେ କ'ଣଟା ହେବ ? କେହି ହେଲେ ମୋ ଦୁଃଖକୁ ଚିହ୍ନିବ ନା ବୁଝିବ ? ରାମପ୍ରସାଦ ତ୍ରିପାଠୀର କଣ ହୋଇଛି, ଯଥାଯୋଗ୍ୟ ସ୍ତ୍ରୀ ସନ୍ତାନ ଘରସଂସାର ଇତ୍ୟାଦିର ଆୟୋଜନ ଥାଉଁ ଥାଉଁ ସେ କାହିଁକି କାନ୍ଦିବ ବୋଲି ହେଉଛି ଓ କାନ୍ଦି ପାରିବ ନାହିଁ ତା'ର ଖିଅ ଧରି ପାରିବ ? ଅସମ୍ଭବ । ବରଂ ତୁମେ ଭାବିବ ମୁଁ ଦେଖେଇ ହେଉଛି । ବୁଢ଼ୁଆ ସୁଲଭ ଢଙ୍ଗ । ଯେଉଁ ଦେଶରେ ଲକ୍ଷ ଲକ୍ଷ ନରନାରୀ ଦି'ଓଳି ଖାଇବାକୁ ପାଆନ୍ତି ନାହିଁ, ଇତ୍ୟାଦି ଇତ୍ୟାଦି କହି ମୋ ଅଭାବକୁ ହସି ଉଡ଼େଇ ଦେବ । ଜାଣିଛି ତମେ ସବୁ ସ୍ଥୂଳ, ଇତର ।

ତମେ ସବୁ ନେତାଙ୍କ ବେ'କର୍ବୃନ୍ଦା ।

ତମେ ସବୁ ବାବାଙ୍କ

ଆରେ ତୁ'ଟା କିଏ ? ରାମପ୍ରସାଦ ହଠାତ୍ ଲକ୍ଷ୍ୟ କଲେ ସେ ସମ୍ମୁଖରେ ରାଶି ରାଶି ଅମୁହାଁ ପିଠି ରହିଥିଲେ ମଧ୍ୟ ସେଥିରୁ ଗୋଟିକରୁ ଗ୍ରେଟିଆ ମୁହଁଟିଏ ଝୁଲି ପଡ଼ିଛି । ମୋର ଅଡ଼କୁ । ମୋ'ତେ ଅନେଇଛି । ହସୁଛି ।

ଧାତ୍—ମୁଁ କଣ ମନକୁ ମନ ହସୁଥିଲି ଯେ ତା' ଆଖିରେ ପଡ଼ିଲି ? ହସିବାର ପ୍ରଶ୍ନ ଉଠୁ ନାହିଁ । ତାହାହେଲେ କଣ ମୋର କାନ୍ଦ ଧରା ପଡ଼ିଗଲା ? ରାମପ୍ରସାଦ ବିବ୍ରତ ହୋଇ ପଡ଼ିଲେ; କିନ୍ତୁ ପରକ୍ଷଣରେ ଭାବିଲେ ଯେ ବିବ୍ରତ ହେବାର କାରଣ ନାହିଁ । ସେଇଟା ପିଲା । ନିହାତି ସାନ । ଦୁଷ୍ଟ !

ଆଖି ଦି'ଟା କଣ ହୋଇଛି ମ ? ବିଜୁଳି ଅଠା କାଠିରେ ପଡ଼ିଛି ? ଝରଣା ଝରିଲି ଝରିଲି ଝପିଗଲା ବୋଲି ଡରୁଛି ? ମିଂକିମିଂକି ତାରାଟିଏ ଚୁପ୍‌କିନା ଓହ୍ଲେଇ ଆସିଛି ତଳକୁ ? କିଏ ବେଶି ଉଜ୍ଜ୍ୱଳ ? କିଏ ବେଶି ଉଜ୍ଜ୍ୱଳ ? କଳା ଡେଲା ? ଡେଲାକୁ ଘେରିଥିବା ଧଳା ? ନା ଆଖିପତା ? ଭ୍ରୂଲତା ? ଦୁଷ୍ଟ ! ରାମପ୍ରସାଦ ଆବେଗକୁ ଆୟତ୍ତରେ ଆଣିବା ପାଇଁ ସମୟ ପାଇଲେ ନାହିଁ । ଝିଅଟିକୁ ଆଖିମିଟିକା ମାରିଲେ । ଝିଅ ତାର ନକଲ କରିବାକୁ ଯାଇ ଦି'ଆଖିପତା ବୁଜି ପକେଇ ଖୋଲିଦେଲା । ସେଇଠୁ ଖିଲି ଖିଲି ହୋଇ ହସିଲା ।

ସମ୍ଭବତଃ ଭକ୍ତମଣ୍ଡଳୀ ଚହଲି ଉଠିଲା । କିଏ ପାଟି କରୁଛି, ସଭା ଭଣ୍ଡୁର କରୁଛି, ବାବାଙ୍କ ବଚନ ଶୁଣେଇ ଦେଉ ନାହିଁ, ଏହି ମର୍ମରେ ସେମାନେ ଏଣିକି ତେଣିକି ଅନାଅନି ହେଲେ; କିନ୍ତୁ ତା' ଆଗରୁ ପିଲାର ମାଆ ତା'କୁ କାନ୍ଧରୁ କୋଳକୁ ନେଇଯାଇଥିଲା । ତା'କୁ କେମିତି ଭାବରେ ଥୋଇଲା କେଜାଣି, ତେଣିକି ପିଲାର ହସ କାନ୍ଦ କିଛି ଶୁଭିଲା ନାହିଁ ।

ରାମପ୍ରସାଦ ରାଗିଲେ, ପିଲାର ମାଆ ଉପରେ, ତଥା ଉପସ୍ଥିତ ସମସ୍ତ ବଡ଼ ମଣିଷମାନଙ୍କ ଉପରେ । ପିଲାଟିକୁ ଦବେଇ ଦେଲେ କାହିଁକି ? କଣ ଏମିତି ଗୁଞ୍ଜୁଡ଼ି ବସି ସେ ତା' ଲୀଳା ଖେଳାକୁ ଲୁଚାଇଦେଲା ? କିନ୍ତୁ ସେ ରାଗିଲେ ନାହିଁ ସିନା, ଅନେକ ସମୟ ଯାଏଁ ତାଙ୍କ ତଳମୁହାଁ ଚାହାଣୀ ଉପରକୁ ଉଠେଇବା ପାଇଁ ସାହସ କଲେନାହିଁ । କାଳେ ବାବା ଦେଖିନେବେ । ଧରିପକେଇ ଦେବେ । ସତେ କି ମୁଁ ଅନେକ ସମୟ ଯାଏଁ ତାଙ୍କ ତଳମୁହାଁ ଚାହାଣୀ ଉପରକୁ ଉଠାଇବା ପାଇଁ ସାହସ ଆଉ ବାଳକା ସୁଲଭତର ହେଉଛି । ଏତେ ନହସ ସେ ଧର୍ମ କଥାର ସତକୁ ମାନିବାକୁ ନାହିଁ, କହନ୍ତୁ ଏଥିରେ କିଛି ମଜା ନାହିଁ, ତାଠୁ ଭଲ ଏଇ ବାଳୁତ ମିଛ, ମାଷ୍ଟ୍ରମିଛ ଭାବନାସ୍ୱାନ ଭାବ । ଖାଲି କୁରୁକୁରୁ କୁତୁକୁତୁ ସିରସିର ଅନୁଭବ । ଗୁରୁଚଞ୍ଚଳ ଅନୁଭବ···

ରାମପ୍ରସାଦ କଡ଼େଇକରି ବାହାରକୁ ଅନେଇଲେ । ଯେଉଁଠି ଆକାଶ ଅଛି । ଆକାଶରୁ ଶୀତଦିନିଆ ଖରା ଉତୁରି ଆସି ଖେଳୁଛି ସେମାନଙ୍କ ସାଙ୍ଗରେ ଯାହାଙ୍କର ବୁଦ୍ଧି ନାହିଁ । ଗେଦେଲା ବୋକା ଗଛର ପତରମାନଙ୍କ ସାଙ୍ଗରେ ଖେଳୁଛି । ଏପଟର ଯାହା ଆର ପଟର ସେଇଆ, ଗୋଟାଏ ଚକଚକ ପତର ଖୁସି ହୋଇ ନାଚିଲା, ଆଉକି ଗଡ଼ପଡ଼ିଲା । ପିମ୍ପୁଡ଼ିର ଜୀବନମରଣଠାରୁ ଆହୁରି ସୁନ୍ଦର ! ପିଲାର ଛବି ସାଙ୍ଗରେ ମିଶିଯାଇଛି ତା' ଆଡ଼କୁ ଅନେଇବ ଆଉ କିଏ ? ସେ କଣ ତା' ମାଆ କୋଳରେ ନାଥିକିନି ବସିରହିଥିବ ? ପଳେଇ ଆସିବାକୁ ଛଟପଟ ହେଉ ନଥିବ ? ନା, ଆଉ, ତା' ମା ଭାବିବ ମୁଁ ତା'କୁ ପ୍ରଶ୍ରୟ ଦେଉଛି । ଅଧିକାଂଶ ବାପାମାଆମାନେ ସ୍ଥୂଳ, ଇତର ।

ମୁଁ ଅବଶ୍ୟ ଜଣେ ବାପା; କିନ୍ତୁ ସେ କଥା ଭିନ୍ନ । ମୁଁ ସେ ଝିଅର ବାପା ନୁହେଁ, ହେବାକୁ ଚାହେଁ ନାହିଁ । ସେ ଖାଲି ଗୋଟାଏ ସାନଝିଅ, ପ୍ରକୃତିର ଆନନ୍ଦ, ଯାହାର ହସ ଯାହା କାନ୍ଦ ସେଇଆ, ବଞ୍ଚିବା ମରିବା ଏକାକାର (ଏଇଠି ରାମପ୍ରସାଦଙ୍କୁ ଝଟ୍‌କା ଲାଗିଲା, ତୁଳନାରେ ତ୍ରୁଟି ଥିଲାପରି ମନେ ହେଲା, କିନ୍ତୁ ସେ ତାକୁ ଉଡ଼େଇ ଦେଲେ । ସାନ ଝିଅମାନେ ମରନ୍ତି ନାହିଁ) ଯାହାର ନାଆଁ ଗାଆଁ ନାହିଁ···ଅଛି, ମୁଁ ତା' ପାଇଁ ଗୋଟିଏ ବଢ଼ିଆ ନାଆଁ ଦେବି । ଲୁପ୍ତ ଅଧିକାର ଫେରିପାଇଲା ପରି ରାମପ୍ରସାଦ ମନେମନେ କୁରୁଳି ଖାଇଲେ । ମୁଁ ତା' ନାଆଁ

ଦେବ ମୁଣ୍ଡଳ, କାହିଁକି ନା ତା' ନାକ ଅଗ ଠିଅପର ଦିଶୁଛି । ନହେଲେ ଦେବ ଚଞ୍ଚଳୀ । ନାଇଁ, ମୁଁ ତ' ନାଥ ଦେବ ସୁନ୍ଦରୀ, କାହିଁକିନା ସେ ସତରେ ଅସୁନ୍ଦରୀ । ରୁହ, ଏଇ ହେଉଛି ଶେଷ ! ସ୍ତ୍ରୀ ପରେ ନାଆଁ ସରିଯାଇଛି ମୁଁ ତା ନାଆଁ ଦେବ କନ୍ୟା, ଚିରନ୍ତନୀ କନ୍ୟା, କନିଆଁ ଯାହା କହିପାରି·····

ତା' ସାଙ୍ଗରେ ମୋର ମୋଟେ ସମ୍ପର୍କ ନାହିଁ । ସେଇ ହେଉଛି ଆମ ପ୍ରେମର ମୂଳକଥା ।

ସେ କ'ଣ ଗୋଟାଏ ମଣିଷ ଯେ ତା'ସାଙ୍ଗରେ ସମ୍ପର୍କ ରହିବ ? ସେ ସବୁ ଗୋଟାଏ....ଗୋଟାଏ···। କେଉଁ ବସ୍ତୁ ପ୍ରକୃତିର ଉଗ ଉଗ ପିମ୍ପୁଡ଼ି ଅଥବା ଟିକଟିକ ପତରଠାରୁ ଆହୁରି ହାଲୁକା, ଲୁନୁମୁନିଆ ଓ ପ୍ରାଣବନ୍ତ ହୋଇଥିବ ବୋଲି ସେ ଭାବିପାରିଲେ ନାହିଁ । ଯାହା ବା ଭାବିଥାନ୍ତେ ହଠାତ୍ ବଜ୍ର ପଡ଼ିଲାପରି ମନେହେଲା । ରାମପ୍ରସାଦଙ୍କ କାନରେ ପଡ଼ିଲା, ବାବା ବାରମ୍ବାର ବଡ଼ ପାଟିରେ "ନମୋ ଶିବାୟ" ବୋଲି କହିଲେଣି, ସେଇଠୁ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ବୋଲି କହିବେ ଏବଂ ସଭା ଭାଙ୍ଗିଯିବ । ଆଜି ଏତେ ସହଳ କାହିଁକି ଭାଙ୍ଗିଲା ବୋଲି ବିଚାର କରିବାକୁ ତର ସହିଲା ନାହିଁ । ବୃନ୍ଦ ବୃନ୍ଦ ଲୋକମାନେ ଠିଆ ହୋଇ ପଡ଼ିବେ, ହାଉଯାଉ ହେବେ । ଏଣିକି ତେଣିକି ଅନେଇବେ, କିଏ ହୁଏତ ମୋତେ ଚିହ୍ନି ପକାଇବ । ଚିହ୍ନିଲେ ଯାଏଆସେ ନାହିଁ, କିନ୍ତୁ ସେମାନେ ସାଧାରଣ ଭକ୍ତ ଟାଇପ୍, ଭାବିବେ ମୁଁ ତାଙ୍କରି ଭିତରୁ ଜଣେ । ସବୁଠାରୁ ବିପଦ ହେଉଛି ଯେ ହୁଏତ ବାବା ନିଜେ ମୋ ଆଡ଼କୁ ମାଡ଼ିଆସିବେ । ତେଣୁ ରାମପ୍ରସାଦ ଭାବନାରେ ଗଣ୍ଠି ପକାଇ ତତ୍‌କ୍ଷଣାତ୍ ସ୍ଥାନ ତ୍ୟାଗ କଲେ । କୌଣସିମତେ ଘରୁ ବାହାରିଯାଇ ସେମାନଙ୍କ ଦୃଷ୍ଟି ଆଢ଼ୁଆଳରେ ରିକ୍ସା, ଟ୍ୟାକ୍ସି, ସ୍କୁଟର, ଯାହା ଗୋଟିଏ ଧରି ପଳେଇଯିବା କଥା । ସବୁଦିନେ ବେଳ ଜଗି ଠିକଣା ସମୟରେ ଖସି ଚାଲିଯିବାରେ ଅସୁବିଧା ହୁଏନାହିଁ । ଆଜି କଣହେଲା କେଜାଣି —ସବୁ ସେଇ ଝିଅର ଦୋଷ ! କିନ୍ତୁ ଝିଅକୁ ଦୋଷ ଦେବା ସତ୍ତ୍ୱେ ରାମପ୍ରସାଦ ଜାଣିପାରିଲେ ଯେ ଗହଳି ଭାଙ୍ଗିଲାବେଳେ ସେ ତା' ମାଆ କୋଳ ଅର୍ଗଳରୁ ମୁକୁଳି ଆସି ମୋତେ ଆଖିମିଟିକା ମାରିଥିଲା, ମାନେ ଆଖିକୁ କରିକରି ବୁଜି ଦେଇ ଖୋଲି ପକାଇଲା । ମହାପାଜି !!

ଘରକୁ ଫେରିବା ବାଟରେ ମଣିଷ ସମ୍ପର୍କରେ ଭାଷାପଣ ତାଙ୍କୁ ଆକ୍ରମଣ କରିଥିଲା, ଯେମିତି ମଝିରେ ମଝିରେ ହୁଏ । କେବେଠୁଁ ଏମିତି ହେଉଛି ଭାବିଲେ କିଛି ଠିକ୍ କରି ହୁଏ ନାହିଁ । ଯେଉଁଦିନଠୁଁ ଚାଳିଶ ପୂରିଗଲା ? ଯେଉଁଦିନ ମୋର ଗୋପନରେ ଲେଖା ହୋଇଥିବା କବିତା ଲତା ହାତରେ ପଡ଼ିଲା ଓ ଯେ ତାକୁ ମୁଁ ଲେଖିଛିବୋଲି ଠଉରେଇ ଖୁସିହେବା ଦୂରର କଥା, ପଢ଼ିକରି ନାକ ଫୁଲେଇଲା !

ସେଦିନ ଅଧରାତିରେ ଅ-ତୃପ୍ତିର ପରେ ସେ ଅସଭ୍ୟଙ୍କ ପରି ହସିଲା ? ସେବେ ମୋ ଭିତ୍ରୁ କୁକୁର ମରିଗଲା ? ··ନା ମୁଁ ଜନ୍ମରୁ ଏମିତି ? ମିଛ । ପିଲାଦିନେ ମୋ ବାପ ମା'ଆ ଥିଲେ, ସେମାନଙ୍କ ସାଙ୍ଗରେ ସମ୍ପର୍କ ବାନ୍ଧିବାକୁ ପଡ଼ି ନ ଥିଲା । ସେବେଠୁ ଗଣ୍ଡଗୋଳ ହେଲା ବଡ଼ ହେଲା ପରେ । ସୁବୀର ଶର୍ମା କହେ ସୁଖୀ ପରିବାର । ମୁଁ ମଧ୍ୟ କହୁଛି । କହିବ ନାହିଁ କାହିଁକି ? ସୁବୀର ଶର୍ମା ଜଣ ଏକା ଆମ ସୁଖକୁ ଚାହିଁଛି, ଆମେ କେବେ ଜାଣି ନାହୁଁ ? ମନେପଡ଼େ ଲତା କେତେ ଥର କହୁଛି—ଆଇ ଲଭ୍ ୟୁ ! ପୁଣି କେତେଥର କହୁଛି—ଆଇ ହେଟ୍ ୟୁ ! ମନେ ପଡ଼ିଲାରୁ ରାମପ୍ରସାଦ ଗୁଡ଼ିପିନ୍ଦି ହୋଇ ଉଠନ୍ତି; କିନ୍ତୁ କହନ୍ତି ମୁଁ ଡରେ ନାହିଁ । ହୋଇପାରେ ସେ ମୁଁ ଉତ୍କଟର ଅତ୍ୟନ୍ତର ପକ୍ଷପାତୀ ନୁହେଁ । ତା'ହେଲେ ବାହାଘର କୋଡ଼ିଏ ବର୍ଷ ହୋଇଗଲାଣି, ମୁଁ ସମ୍ପର୍କ ଯୋଡ଼ି ପାରିନାହିଁ ବୋଲି କୁହ ନାହିଁ । କେବଳ ସ୍ତ୍ରୀ ପରିବାର ନୁହନ୍ତି, ମୋର କେତେ ବନ୍ଧୁ ଅଛନ୍ତି, ସେମାନଙ୍କ ସାଙ୍ଗରେ ମଧ୍ୟ ମୋର ସମ୍ପର୍କ ଅଛି । ସୁବୀରଶର୍ମା ସେମାନଙ୍କ ଭିତରୁ ଜଣେ । ମାନୁଛି ପ୍ରଧାନତମ । ତା' ଛଡ଼ା ଲତା ଲଭ-ହେଟ୍‌ରେ ମୋ ଆଡ଼କୁ ଅନେଇଲେ ମୁଁ କଣ ତା' ମୁହଁକୁ ଚାହେଁ ନାହିଁ ? ଚାହିଁବାକୁ ପରୁଆ କରେ ନାହିଁ, କାହିଁକିନା ମଝିରେ ବିରାଟ ଦିନଦିନ ମାସମାସର ପଡ଼ିଆ । ସେତେବେଳେ ମୁଁ ତା ମୁହଁକୁ ଅନେଇ-ବାକୁ ବାଧ୍ୟ ନୁହେଁ । ପିଲାମାନଙ୍କ କଥା ଛାଡ଼ । ସେମାନେ ବଡ଼ ହୋଇ ଗଲେଣି ଦୂରେଇ ଯିବେ । ତଥାପି ଘରପାଖ ହୋଇ ଆସିଲାରୁ ରାମପ୍ରସାଦଙ୍କର ମନେହୁଏ ଯେ ସମ୍ପର୍କ ମାତ୍ର ବଢୁଛି । ସମ୍ପର୍କର ଟନେଲ ଭିତରେ ସେମାନଙ୍କ ଚାରି ପରିଚିତ ମୁହଁ, ମଝିରେ ଲତାର, ଜଳଜଳ ଦିଶୁଛି । ଗାଢ଼ ଆହୁରି ଘଡ଼ଘଡ଼ ହୋଇ ଗର୍ଜିବ, ଆଲୁଅ ଆହୁରି ହାଲୋଳ ହୋଇ ମୋ ମୁହଁରେ ତା ମୁହଁରେ ସ୍ତ୍ରୀ' ମୁହଁରେ ପଡ଼ିବ । ଘର ପାଖ ହୋଇ ଗଲାଣି, ମୋ ଘର, ସମ୍ପର୍କରେ ସ୍ୱର୍ଣ୍ଣ ବନ୍ଧ ଉଠିଲାଣି, ବନ୍ଧ ଉଠୁ··· । ରାମପ୍ରସାଦ ଘର ଫାଟକ ପାଖରେ ସ୍କୁଟର୍‌ରୁ ଓହ୍ଲେଇ ପଡ଼ନ୍ତି, ଅନୁମାନ କରନ୍ତି ଯେ ସୁବୀର ଶର୍ମା ସୁଖୀ ପରିବାରକୁ ନମସ୍କାର କରି ଫେରିଯିବଣି । ତାହାହେଲେ ଆଜି ମଧ୍ୟ ଲଭ୍ ହେଟ୍‌ର ଅବକାଶ ନାହିଁ, ଭଲ ଭଲ, ସୂତ୍ର ହୁଗୁଳି ଗଲାଣି, ଚିନ୍ତା ନାହିଁ । ରାମପ୍ରସାଦ ଘର ଫେରନ୍ତାରେ ହସ ହସିବାକୁ ଚେଷ୍ଟା କରନ୍ତି । ପରିବାର ମଧ୍ୟରୁ କେହି ହେଲେ ପଚାରନ୍ତି—

“ଏତେ ଡେରି କାହିଁକି ? କୁଆଡ଼େ ଯାଇଥିଲ କି ?”

“ଏଇ—କାମ ଥିଲା ।” କି କାମ ବୋଲି କେହି ପଚାରନ୍ତି ନାହିଁ । କର୍ପୋରେସନରେ କାମ କରୁଥିବା ଅଧିକାରୀର, ଗୃହସ୍ଥର ଅନେକ କାମ ।

ଆଜି କିନ୍ତୁ ଖରାପଣ ଆପୁ ଆପୁ ଉଭେଇ ଗଲା । କାହିଁକିନା ରାମପ୍ରସାଦ ଘରକଥା ଭାବୁ ନଥିଲେ, ଭାବୁଥିଲେ ଆସନ୍ତା ଦିନର କଥା, ଯେବେ ସେ ପୁଣି

ସୁଖର ଶମୀ କୃପାରୁ ଅଫିସ୍‌ରୁ ପଳେଇ ଆସି ପାରିବେ । ଅସି ପୁଣି ସେଇ ପ୍ରାର୍ଥନା ସଞ୍ଜ ନୁହେଁ, ତା'ଠାରୁ ଅଧିକ ବିଶେଷ । ଚଗଲା ଝିଅ ଖଣ୍ଡିକ । ଏଣିକି ଖାଲି ମୂର୍ଖ ପୋଢ଼ ପିମ୍ପୁଡ଼ିମାନଙ୍କ ସାଙ୍ଗରେ ଖେଳିବାକୁ ପଡ଼ିବ ନାହିଁ । କଣ ହେଲା—ସେ ଆସିବ ନାହିଁ ? କେମିତି ନ ଆସିଲାବାଲା ? ମୁଁ କ'ଣ ତା'ର ବାପ ଭାଇ, ନା କିଏ ?

ପର ଦିନ । ସତକୁ ସତ ସେ ଆସିଥିଲା । ଦେଖା ଯାଉଛି ସେ ସବୁଦିନେ ଆସିବ । ରାମପ୍ରସାଦ ଖୁସି ହେଲେ ଓ ତା' ମା'ଆଙ୍କୁ ତଥା ବାବାଙ୍କୁ ବିଶେଷ ଧନ୍ୟବାଦ ଦେଲେ । ଆଜି ସେ ଅନେକ ଦୂରରେ ଅଛି; କିନ୍ତୁ ଅଛି ତ ! ଅଧିକାଂଶ ସମସ୍ତ ସାମ୍ନାକୁ ଅନେଇ ରହୁଥିଲେ ମଧ୍ୟ ମଝିରେ ମଝିରେ ପଛକୁ ଚାହୁଁଛି, ସେ କଣ ସିଧା ହୋଇ ବସିବା ଜନ୍ମ, ଅଛି ମୋତେ ଦେଖି ପାରି ହସୁଛି । ନ ହେଲେ ଆଉ କାହାକୁ ଦେଖୁଛି ? ତା'ର କୋଉ ମଉସା ପିଉସା ଆସି ବସିଛନ୍ତି ଏଠି ? ରାମପ୍ରସାଦ ଲକ୍ଷ୍ୟ କଲେ ଯେ ଆଜି ସେ ତା' ଆଖିରେ ମେଞ୍ଚାଏ କଜଳ ଲଗେଇଛି । ତଆଁ ଦାଗଟା ଲୁଚି ଯାଇଛି । ସତେ ଯେମିତି ଏଇଥିରେ ତା'କୁ ସୁନ୍ଦରୀ ବୋଲି କହିବେ ! ରହିଲେ ଝିଅ, ଏଥର ପାଖକୁ ଆସିଲେ ମୁଁ ତୋତେ ଚଢ଼େଇବ, କହିବ ଢ଼'ପଦ, ଗୁଣ୍ଡିବ ନାହିଁ ।

ସେ ଥରେ ପାଖକୁ ଆସିଥିଲା । ପ୍ରଥମ ଥରଠାରୁ ଆହୁରି ଲାଗି କରି, ଆଗ ଧାଡ଼ିରେ । ରାମପ୍ରସାଦ ଅବଶ୍ୟ ତା'କୁ ଚଢ଼େଇ ପାରିଲେ ନାହିଁ; ସାହସ କରି ଖଟେଇ ହୋଇଥିଲେ । ଡର ଥିଲା ସେ କାଳେ ପାଟି କରି ଉଠିବ, ଲୋକମାନେ ତା'କୁ ଚିହ୍ନା ପକେଇ ଦେବେ, ହୁଏତ ବାବା ନଜେ···; କିନ୍ତୁ ଭାଗ୍ୟ ଭଲ କନିଆଁ କେବଳ ଟିକିଏ ଶବ୍ଦ କରି ହସିଲା, ଖୁଁ ଖୁଁ ହୋଇ । ବାବାଙ୍କ କଥାମୃତରେ ଆଖି ଲାଗିଲା ପରି ମନେ ହେଲା ନାହିଁ ।

ସେ ବହୁବାର ଦୂରରେ ରହିଥିଲା । ବେଳେ ବେଳେ କେବଳ ଅନୁମାନ କରି ହେଉଥିଲା ଯେ ସେ ଅଛି । ଗ୍ରେଷ୍ଟିଆ ମୁଣ୍ଡିଟିରେ ଫାଲେ ଦେଖା ଯାଉଛି । ଆଉ କେହି ନୁହେଁ ତ ? କନିଆଁର ମୁଣ୍ଡବାଳ କିଏ ଏତେ କହିବ ? ହୋଇଥିବ । ଝିଅ ତାନେ ଧୂଳିରେ ଗଡ଼ି କରି ଆସିଛି, ସେଇଥି ଲାଗି । ରାମପ୍ରସାଦ ନିଜକୁ ଆଶ୍ୱାସନା ଦିଅନ୍ତି । ସେ ଅଳବତ୍ତ ଅଛି ବୋଲି ଭାବି ନିଅନ୍ତି । ସଚେତନ ହୋଇ ଆପଣା ଭାବକୁ ପରଖି ନିଅନ୍ତି । ହଁ, ସେ ଅଛି । ନ ହେଲେ ଏତେ ହାଲୁକା ଲାଗୁ ନ ଥାଆନ୍ତା, ଯେମିତିକି ମୁଁ ଖାଲି ଘରୁ ପଳେଇ ଆସି ନାହିଁ, ବାହାରକୁ ପଳେଇ ଆସିଛି । ଘରୁ ଘରକୁ ନୁହେଁ, ଟନେଲ୍‌ରୁ ଗୁମ୍ଫାକୁ ନୁହେଁ, ସମ୍ପର୍କୀୟମାନଙ୍କଠାରୁ ଇତର ଅପରମାନଙ୍କ ପାଖକୁ ନୁହେଁ । ମଣିଷରୁ ଖାଲି ପିମ୍ପୁଡ଼ିକୁ, ଖାଲି ଶବ୍ଦକୁ ନୁହେଁ ।

ସେ ଅଛି ବୋଲି ମନେ ହେଉଛି ସଭାଘର ବିପଣୀ ବଜାର ସବୁ ସମାନ । ବାବାଙ୍କ ସ୍ମୃତି, ଝରପବନରୁ ଭାସି ଆସୁଥିବା କା-କା ଚୁଁ-ଚୁଁ, ଗାଡ଼ି ମଟର ଘଡ଼ଘଡ଼, ଟିଉବ୍‌ୱେଲ୍‌ର କେକଟର, ରାସ୍ତାର ମାଇକ୍ରୋଫୋନ, ମୋତେ ସବୁ ଶୁଭି ଯାଉଛି । ସବୁ ରଙ୍ଗ ଦିଶି ଯାଉଛି । କାହିଁକନା କଳଆଁ, ଯାହା ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ, ଯେ ମଣିଷ ମୋଟେ ନୁହେଁ, ସେ ବିଦ୍ୟମାନ । ସେ ମୋତେ ଉପ୍‌କଉଛି । ମୁଁ ତା' ପ୍ରେମରେ ପଡ଼ିଛି ।

ଥରେ ତା'ର ଦେହ ମୁହଁକୁ ଚେନାଏ ହେଲେ ଦେଖାଗଲା ନାହିଁ; କିନ୍ତୁ ରାମପ୍ରସାଦ ଅନୁମାନ କଲେ ସେ ଅଛି । ଧରି ନେଲେ ସେ ସଭାସୀନା ନାଗ-ଦେହର ପିଠିମାନଙ୍କ ଭିତରୁ ଗୋଟାଏ ପିଠି ତା' ମାଆର । ମାଆ ଅଛି, ତା' ଝିଅ ମଧ୍ୟ ଅଛି । ନ ରହି ଯିବ କୁଆଡ଼େ ମ ?

କିନ୍ତୁ ତନେ ଗ୍ରୀଡରେ ଛନକା ପଶିଲା । ସେ ହୁଏତ ନାହିଁ । ସେ ନାହିଁ ।

ପିଠି ଗୁଡ଼ାକ ସବୁ ବେକାର । କୌଣସିଟା ତା' ମାଆର ନୁହେଁ । ଯଦି ବା ହୋଇଥାଏ, ଜାଣିବାକୁ ବାଟ ନାହିଁ, ସବୁ ପିଠି ସମାନ । ନ ହେଲେ ତା' କଥା ପଚ୍ଛିର ପାରି ଥାଆନ୍ତା । ଯେ ତା' ନର୍ସେସ୍ କି ଷ୍ଟେଶାଳୀକୁ ପଠେଇଛ ନା କଅଣ, ପଠେଇବା ନହାଣ୍ଡ ଅନ୍ୟାୟ କିମ୍ବା ସେ ଜରରେ ପଡ଼ିଛି···

ଭୂପ୍ସ ଏବ ଭି ବର୍ଚ୍ଛେତେ ବୁଝିଲେ ନା ? ବଢ଼ି ବଢ଼ି ଯାଏ, କଅଁରେ ଘିଅ ପଡ଼ିଲା ପରି ।—କଅଁ ପାଉଁଶ ! ରାମପ୍ରସାଦ ତାଢ ଉଠିଲେ । ମନ ହେଲା ଏଇ-ଥର ସିଧା ସଳଖ ତାଙ୍କ ମୁହଁକୁ ଦେଖିବେ । ଦେଖିବ ଆଉ ମୁଥ ମାଣବ । ଯାହା ହେଲେ ହେବ । ସତେ ଯେମିତି ଆଉ କେହି ଗୀତା ପଢ଼ି ନାହାନ୍ତି କଅଁ ଘିଅର ଚମତ୍କାର ଜାଣି ନାହାନ୍ତି ।

କାହାକୁ ପଚାରିବ ? କିଏ ବତେଇବ କଳଆଁର କଣ ହେଲା ? ରାମପ୍ରସାଦ ବାହାରକୁ ଅନେଇଲେ, କାନ ଡେରିଲେ । ଆଗ ଭଳି ମେଲି ଯାଇଥିବା ଖଗ ଆକାଶକୁ ଦେଖିଲେ, କଳରବ ଶୁଣିଲେ, କିନ୍ତୁ ମନେ ହେଲା ସେମାନେ ଆପଣା କାରବାରରେ ବ୍ୟାପୃତ, ମସ୍ତ । ସବୁଠାରୁ ପାଖରେ ଯେଉଁ ଗଛ ଦିଶୁଛି, ତା'ର କଢ଼ି ଆଗରେ ପୋତକଟ ଏ ଗୋଲ୍ ଗୋଲ୍ ବୁଲୁଛି, କାହିଁ କେତେ ଉଚ୍ଚରେ ଚଢ଼େଇଟାଏ ଗୋଲ୍ ଗୋଲ୍ ବୁଲୁଛି । ସତେ କି ପୃଥିବୀକୁ ଆକ୍ରୁଛନ୍ତି ଦ'ଜଣ ଯାକ, ଏଇ ଆର୍ଙ୍କିବ ହିଁ ସାର, କଳଆଁ ମଲା କି ଗଲା ସେଥିରେ କିଛି ଯାଏ ଆସେ ନାହିଁ ।

ହଲ୍‌ର ଏକଡମ ଖୋଲା ଦରଜା ପାଖରେ ଗୋଟାଏ ଲୋକ ଛିଡ଼ା ହୋଇଛି, ପାଖରେ ଗୋଟିଏ ସାନ ଝିଅ । ସେଇ—ସେଇ ତ କଳଆଁ ! ରାମପ୍ରସାଦ

ଉଦ୍ୟତ ହେଲେ ଆଣ୍ଠୁମାଡ଼ି ଭଳି କଣ ଅନେଇବେ ବୋଲି, ହେଲେ । ହଁ ସେଇ, ଠଲେ ହେଲେ ସନ୍ଦେହ ନାହିଁ; କିନ୍ତୁ ସେ ମୋଟେ ହସିଲା ପରି ଦିଶୁ ନାହିଁ, ବରଂ ଖାବୁକ ପରି ଭୂରୁ କୁଞ୍ଚେଇଛି, ଭେସେଡ଼ା ଫସାର ପ୍ରତି ମହାବିରକ୍ତ ଦେଖାଯାଉଛି ମୋଣ ପରି । ରାମପ୍ରସାଦଙ୍କୁ ମଜା ଲାଗିଲା । ସେ ଆବେଗକୁ ସମ୍ଭାଳି ନପାରି ଛିଡ଼ା ହୋଇ ପଡ଼ିଲେ । ସେଇଠୁ ଦେଖିଲେ ଯେ ସେ ଲୋକ ସବୁ ମଝିରେ ଥିବା କାହାକୁ ଇଶାରା କଲା, ତତ୍‌କ୍ଷଣାତ୍ ଜଣେ ସ୍ତ୍ରୀ ଲୋକ ଉଠି ଆସିଲା । ସାଧାରଣ ଅଧାବୟସୀ ସ୍ତ୍ରୀ ଲୋକ, ମୁହଁରେ କରୁଣ କାଙ୍ଗାଳପଣ ଭାବ, ସଟେଡକ ଚୁଲାରେ ଦୁଧ ବସେଇ ଦେଇ ଆସିଥିଲା, ହତୁରି ପଡ଼ିଲା କି ବୋଲି ପଚାରୁଛି । ରାମପ୍ରସାଦ କନିଆଁର ମାଆକୁ, ତା'ର ବ୍ୟସ୍ତତାକୁ ମନେ ମନେ ଛୁଗୁଲେଇଲେ । ତଥାକଥିତ ବଡ଼ ମଣିଷଙ୍କର ତନାଧନାକୁ ଧନ୍ୟ କହିବ !

ସେ ଦିନହେଁ ସହରର ଗ୍ରୁଡ଼ି ସ୍କୁଲଗଲି ମାଝେ ରାମପ୍ରସାଦ ଉଠି ପଡ଼ିଲେ । ନିଜକୁ କହିଲେ ଯେ ତା' ଛଡ଼ା ଉପାୟ ନାହିଁ । ଏତେଦିନ ପରେ ସେ ଦେଖା-ଦେଇଛି, ତାକୁ ହାତଛଡ଼ା କରିବା ଉଚିତ ନୁହେଁ ।

ରାମପ୍ରସାଦ ଟାଙ୍କ ପିଛା ଧରିବେ । ବଡ଼ ରାସ୍ତାରୁ ସାନ ରାସ୍ତା, ସାନ ରାସ୍ତାରୁ ଗୋଟାଏ ମୋଟର ଗ୍ୟାରେଜ୍‌ର ପଛପାଖ, ସେଇଠି କଳା ବହଳ ତେଲର ଧାର କାଦୁଅକୁ ମାତ୍ କରି ଦେଉଛି (କନିଆଁ ଏତେ ଯୁରୁଷ ଯେ ତା'କୁ ଘଣ୍ଟାଏ ବସି ଦେଖିଲା, କେମିତି ଡେଇଁବ ବୋଲି ଭାବିହେଲା, ଏଣେ ପଛକେ ଅନ୍ୟମାନେ କାହିଁ କେତେ ଦୂରରେ ହେଲେଣି), ଗ୍ୟାରେଜ ପଛକୁ ଏକବଖୁରିଆ ସବାତଳିଆ କର୍ମଚାରୀମାନଙ୍କ କ୍ୱାର୍ଟର୍ସ୍‌ର ପଛପାଖ (ଯା' ଭିତରକୁ ସେମାନେ ପଶିବେ ନାହିଁ ନିଶ୍ଚୟ, ସେମାନେ ଏତେ ତଳିଆ ନୁହଁନ୍ତି, କନିଆଁର ଫ୍ରକ୍ ଛିଣ୍ଡାମଇଳା ନୁହେଁ), ସେଇଠୁଁ ଡାହାଣକୁ ବୁଲିଗଲେ ସାମାନ୍ୟ ଉପରିସ୍ଥ ଟାଇପ୍ କ୍ୱାର୍ଟର୍ସ୍‌ର ଆଗପଟ, ଘାସ ଉପରେ ତଥା ଦ'ମହଲା ବାଲ୍‌କନିର କାନ୍ଥ ଉପରୁ ରଙ୍ଗବେରଙ୍ଗ ଧୂଆ କପଡ଼ା ଶୁଖୁଛି ରେଡ଼ିଓ ଘାଉ ଘାଉ ହେଉଛି, ସେଇଥିରୁ ଗୋଟାକ ଭିତରେ ସେମାନେ ପଶିଗଲେ । ପଛେ ପଛେ କନିଆଁ । ରାମପ୍ରସାଦ ଅନତିଦୂରରେ ଥିବା ଗୋଟିଏ ଲାଇଟପୋଷ୍ଟ ପାଖରେ ଛିଡ଼ା ହୋଇ ରହିଲେ । କ୍ୱାର୍ଟର ନମ୍ବରକୁ ମନେ ମନେ ଟିପିଲେ ଟାଇପ୍ ଥ୍ରୀ, ସି, ଦୁଇଶହ ବାର, ଫ୍ଲାଟ୍ ଫୋର୍; କିନ୍ତୁ ସି, ଦୁଇଶହ ଚଉଦ ହେବ ନାହିଁ କାହିଁକି ? ସିଡ଼ି ଦେଇ ଉପରକୁ ଉଠିଲା ପରେ ସେମାନେ ଡାହାଣକୁ ଗଲେ କି ବାଆଁକୁ ଚାଲିଲେ କହି ହେବ ନାହିଁ । ଲେଖା ହୋଇ ନାହିଁ ଯେ ଯାହାର କାନ୍ଥରୁ ଛିଟ ନାଇଲନ୍ ଶାଢ଼ୀ ଝୁଲୁଛି । ସେଇ ସ୍ୱାଙ୍କର

ଘର ହୋଇଥିବ, ଆଉ ଘର ନୁହେଁ ଯେଉଁଠି ବାଲକନିରେ ଦଉଡ଼ି ବନ୍ଧା ହୋଇଛି ଓ ଦଉଡ଼ିରେ ଏକାଧିକ ବ୍ରା ଓ ଜଙ୍ଘିଆ ସୁଦୃଶ୍ୟ ହେଉଛି ।

ରାମପ୍ରସାଦ ଛୁଡ଼ା ହୋଇ ରହିଲେ ଓ ନିଜର କଲା କାମକୁ ହେଜିଲେ । ସାବାସ୍ ବୋଲି କହିଲେ । ଏଇ ସହରରେ, ସହର କାହିଁକି, ଏଇ ପୃଥିବୀରେ ଏମିତି କେତେ ଜଣ ଅଛନ୍ତି, ଯେଉଁମାନେ ଏଭଳି ଗୋଟାଏ ଖିଆଲର ଅନୁସରଣ କରି ଧାଇଁ ଆସନ୍ତି ? କେବଳ ଘରୁ ପ୍ରାର୍ଥନା ସଭାକୁ ନୁହେଁ, ପ୍ରାର୍ଥନା ସଭାରୁ ଅଜ କାହା ଘରର ଦୁଆର ମୁହଁକୁ ପଳେଇ ଆସନ୍ତି ? ଏବଂ ଖିଆଲ୍ ପଛରେ ଗୋଟିଏ ବାଳିକା ଅଛି, ଯାହାକୁ ମୁଁ ଜାଣେ ନାହିଁ, ଯାହା ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ, ଇଚ୍ଛା କଲେ ଯାହାକୁ ନିମେଷରେ ବାତିଲ୍ କରିଦେଇ ପାରିବ, ହେଲେ ମୁଁ ଯାହା ପ୍ରେମରେ ପଡ଼ିଛି, ଏକଥା କାହାକୁ ବୁଝେଇ ହେବ ?

ବୁଝେଇବା ଦରକାର ନାହିଁ । ମୋ ମନର ରହସ୍ୟକୁ ମୁଁ ଘଣ୍ଟ ଘୋଡ଼େଇ ରଖିବ । କାହାରି ଛୁଇ ପଡ଼ିବ ନାହିଁ ସେଥିରେ । ମୋ ହାକିମ, ସ୍ତ୍ରୀ ପିଲା, ଜ୍ଞାତି, ବନ୍ଧୁ କୁଟୁମ୍ବ କାହାରି ଜାଣିବା ଦରକାର ନାହିଁ । ମୁଁ ବି ଗୋଟାଏ ପାଗଳାମି ତିଆରି କରି ପାରିଛି, ଅନବଦ୍ୟ । ସୁବୀର ଶର୍ମାକୁ ମଧ୍ୟ କହିବ ନାହିଁ । ସେ ତ ମହା ସୁସ୍ଥ, ପୃଥିବୀର ସମସ୍ତଙ୍କୁ ଭଲ ପାଏ; ପୃଥିବୀର ସମସ୍ତଙ୍କ ମୁହଁକୁ ଅନେଇ ସ୍ମିତ ହସମାନ ବାଣ୍ଟିଦିଏ, ସେ ମୋ ପାଗଳାମିରୁ କଣ ପାଇବ ? ଲିଢ ଥରେ କହୁଥିଲା ଯେ ସୁବୀରବାବୁ ଭିତରେ ଭିତରେ ଦଗ୍ଧ ହେଲେ ମଧ୍ୟ ବାହାରକୁ ଜଣାପଡ଼ିବ ନାହିଁ । ବାଜେ କଥା । ଦଗ୍ଧ ହେବାର ପ୍ରଶ୍ନ ଉଠୁ ନାହିଁ । ଲିଢ କଣ ସୁବୀର ଶର୍ମାକୁ ବେଶି ଜାଣିଛି ? ଧର ଲିଢ ସତ କୁହେ ସୁବୀରବାବୁ ତା'ଙ୍କୁ ଭିତରେ ଭିତରେ କୁହୁଳିଲା ପରି ଭଲପାଆନ୍ତି, ମୁଁ କଣ ସେକଥା ବିଶ୍ୱାସ କରିବ ? ନା ! ସୁବୀର ଶର୍ମା ପାଗଳ ହୋଇ ପାରିବ ନାହିଁ । ତା' ପାଇଁ ବାବା କ ଜନଆଁ ଅଥବା ଆଉ କାହା ଘର ସାମ୍ନାରେ ଚକକଦାରି କରିବା ନିଷ୍ପ୍ରୟୋଜନ ।

ନ ହେଲେ ସେ ମୋର ଏତେ ବଡ଼ ବନ୍ଧୁ, ମୁଁ ତା'ଆଗରେ ଥରେ ହେଲେ ଢାଢ ପାରି ନ ଥାଆନ୍ତି ?

ଏଇ ସମୟରେ ଗୋଟାଏ ତୀକ୍ଷ୍ଣ କାନ୍ଦଣାର ଶବ୍ଦ ଶୁଣାଗଲା । ସାମନା ଫାଷ୍ଟ୍ ଫ୍ଲୋର୍‌ରୁ ଆସୁଛି । ଯେଉଁପଟେ ବ୍ରା ଜଙ୍ଘିଆ ଇତ୍ୟାଦି ଶୁଖୁଛି, ସେଇଠୁଁ । ତହୁଁ ଜଣେ ସ୍ତ୍ରୀ ଲୋକ—ଆରେ ଏତ ଜନଆଁର ମାଆ ! —କାନ୍ଦ କାନ୍ଦ ଗଲା, ବାଲ୍‌କନିର ଏ ମୁଣ୍ଡରୁ ସେ ମୁଣ୍ଡକୁ ଏବଂ ଆଉ ଲୋକଟା ସିଡ଼ିରୁ ତରତର ହୋଇ ଓହ୍ଲେଇ ଆସି କୁଆଡ଼େ ଧାଇଁଗଲା ଭଗବାନ୍ ଜାଣନ୍ତି ।

ରାମପ୍ରସାଦ ଅଗତ୍ୟା ଅଗ୍ରସର ହେଲେ । ଲଇଟ୍ ପୋଷ୍ଟ ଛାଡ଼ି ଉଙ୍କିବାପର ଆବଶ୍ୟକତା ଭୁଲିଯାଇ ଆଗେଇ ଗଲେ । କାହାରିକୁ ପ୍ରଶ୍ନ ପଚାରିବା କଥା, ତେଣିକି ଯାହା ହେଉ ପଛକେ ।

ଅବିଳମ୍ବେ ରାମପ୍ରସାଦ ଦୁଇଶହ ବାର ନମ୍ବରରୁ ଧାଇଁ ଆସିଥିବା ଏବଂ ଜରୁରି କାମରେ ଲିପ୍ତ ନଥିବା ପଡ଼ାର ଆଉ କେତେକ ଲୋକଙ୍କ ସହିତ ମିଶିଯାଇ ଦୁଇଶହ ଚଉଦର ଖୋଲା ଦୁଆର ମୁହଁରେ ଠିଆ ହେଲେ ଏବଂ ଅପଲକ ଜିଜ୍ଞାସାକୁ ଠିଆ କରେଇଲେ,—କୁହ, କଣ ହୋଇଛି ତମର ?

"ସେ ଟୋକା କୁଆଡ଼େ ଦଉଡ଼ି ପଳେଇଲା, ମୋତେ ପଚାରିଲା ନାହିଁ··· କେହି କିଛି କରି ପାରିବେ ନାହିଁ, ମୁଁ ଜାଣିଛି·· ଡାକ୍ତର ଗୁପ୍ତ, ଡାକ୍ତର ଗୁପ୍ତ, ତାଙ୍କୁଇ ଡାକିଦିଅ...ହେ ଭଗବାନ : (ପୁଣି ହାଉଳି ଖିଆ କାନ୍ଦ)"

ରାମପ୍ରସାଦଙ୍କର ମନେ ହେଲା ଯେ ଏତେ ଲୋକ ଥାଉଁ ଥାଉଁ ଶୋକାତୁରା ସ୍ତ୍ରୀ ତାଙ୍କରି ଆଡ଼କୁ ଚାହିଁ ସାହାଯ୍ୟ ମାଗିଲା । ରୋଗଶଯ୍ୟାରେ ପଡ଼ିଥିବା କେଉଁ ସମ୍ପର୍କୀୟର ଅବସ୍ଥା ତଳେଇ ଗଲାଣି, ଡାକ୍ତର ଗୁପ୍ତଙ୍କୁ ଆଣିଦିଅ, ତୁମ ଛଡ଼ା ଆଉ କେହି ଆଣି ପାରିବେ ନାହିଁ, ତୁମ ବେଶଭୂଷାରୁ ଜଣା ପଡ଼ୁଛି ତୁମେ ବାହାରର ଲୋକ, କାହୁଁ ଆସି ପହଞ୍ଚି ଯାଇଛ, ଭାଗ୍ୟବଳେ ପହଞ୍ଚି ଯାଇଛ, ଈଶ୍ୱରଙ୍କ ଦୂତ ହଁ ସେ ମୋର ଆଡ଼କୁ ଚାହିଁଥିଲା; ମୋତେଇ ମାଗିଲା; କିନ୍ତୁ ହାୟ ! ଡାକ୍ତର ଗୁପ୍ତ କିଏ ମୁଁ ଜାଣେ ନାହିଁ । ତାଙ୍କ ଠିକଣା ପଚାରିବା ପୂର୍ବରୁ ଅନ୍ୟମାନେ ବୁଝିନେଲେ । ଜଣକ ପରେ ଜଣେ ମୁଣ୍ଡ ଟୁଙ୍ଗାରି ପଳେଇଗଲେ, ସତେକି ଦଶ ଦଶଟା ଡାକ୍ତର ଗୁପ୍ତଙ୍କୁ ବାନ୍ଧି କରିନେଇ ଆସିବେ । ରାମପ୍ରସାଦ ସ୍ତବ୍ଧ ହେଲେ । ତେବେ ସେ ମଧ୍ୟ ସ୍ଥାନ ତ୍ୟାଗ କରିପାରିଥାଆନ୍ତେ । ଯାଇପାରିଲେ ନାହିଁ କାରଣ; ସେ ଆବିଷ୍କାର କଲେ ଯେ ସ୍ତ୍ରୀ ଲୋକର ପଛରେ ଆଉ ଜଣେ ଛୁଡ଼ା ହୋଇଛି । କନିଆଁ ।

ରାମପ୍ରସାଦ ନିର୍ବୋଧ ନୁହନ୍ତି । ଦେଶକାଳପାତ୍ର ଭୁଲିଯାଇ ଝିଅଟିକୁ ଅନେଇ ହସିଲେ କମ୍ବା ଈଶାରା କଲେ, ତା ନୁହେଁ, କିନ୍ତୁ ତାଙ୍କୁ ଦେଖିଲାରୁ ତାଙ୍କ ଚେହେରାରେ ଯେଉଁ ପ୍ରସନ୍ନଭାବ ଫୁଟି ଉଠିଲା, ତାକୁ ସେ କେମିତି ନାହିଁକରି ପାରି ଥାଆନ୍ତେ ?

ସେଇଠୁଁ ସେ ଦୃଷ୍ଟି ଉପରକୁ କଲେ ଏବଂ ସେଇ ସ୍ତ୍ରୀ ଲୋକର ମୁହଁରେ ଯାହା ଦେଖିଲା, ଯେଉଁ ଗାର, ଗାତ ଓ ଚେକା ଉଠିଥିବା କାଳିମା, ସେଥିରେ ତାଙ୍କ ଆଖି ଲାଖି ହୋଇଗଲା । କଷ୍ଟ ଶୋକରେ ଦେହର ଯେତେକ ଅବଗୁଣ ଧରାପଡ଼ିଯାଏ, ହୁଏତ ଦଶଗୁଣା ବଢ଼ିଯାଏ । ହଁ ହଁ ବୁଝିଲି ବୋଲି ରାମପ୍ରସାଦ ନିଜକୁ କହି

ଦେଲେ; କିନ୍ତୁ ଏ କ'ଣ ଖାଲି ଦେହର କୁତ୍ସିତ ? ସେ ମୋତେ କୁତ୍ସିତରୁ ବଳି ଆହୁରି କିଛି ଦେବାକୁ ଚାହୁଁଛି; କିନ୍ତୁ ହୁଏତ କୁତ୍ସିତକୁ ମୂଳ କରି କେଉଁ ଏକ ମନୋଭାବକୁ ଚାଢ଼ି ଦେଇଛି, ଯେଉଁଠୁ ଅଖି ଫେରାଇ ହେଉ ନାହିଁ । ଘୃଣା ନୁହେଁ, ନିରୋଳା ବିରକ୍ତି । ଦିଗନ୍ତରେ କଳାକନା ବୁଲାଇ ଆଣିଥିବା ପାହାଡ଼ । କହୁଛି ତୁ'ଟା କେଉଁଠିକା'ର ଅପରିଛନିଆ ବିଦେଶୀ, ଏ ଦେଶରେ ତୋ'ର କିଛି କାମ ନାହିଁ, ତୁ ଡାକ୍ତର ଗୁପ୍ତଙ୍କୁ ଡାକି ଆଣି ପାରିଲୁ ନାହିଁ, ଧିକ୍ ତୋତେ, ତୋର ଜୀବନକୁ ସୁଖଭାବକୁ, ଧିକ୍ ଧିକ୍ ଧିକ୍....

ରାମପ୍ରସାଦ ଫେରି ଆସିଲେ; କିନ୍ତୁ ନିଜକୁ ଚେତେଇ ଦେଲେ ଯେ ସ୍ତ୍ରୀଲୋକଟି ଯେତେହେଲେ ଟ୍ରାଜେଡ଼ିଆଣୀ, ତେଣୁ ତା'ର ହାବଭାବକୁ ବାସ୍ତବ ର ନୁହେଁ । ସ୍ଥିର କଲେ ସେ ପୁଣି ଆସିବେ ।

କନିଆଁକୁ ଦେଖିବା ପାଇଁ ନୁହେଁ, ଆସିବ ଏଇଥି ପାଇଁ ଯେ ଆଜିକାଲି ଆସିବାଟା ବ୍ୟର୍ଥ ହେଲା ବୋଲି ମାନି ନେଇ ହେଉ ନାହିଁ । ଆଉ କେତେଦିନ ଯେ ! ସୁଖୀର ଶର୍ମା କୃପାରୁ ତା'ର ହାତରେ କାମ ଧରେଇ ଦେଇ ପଳେଇ ଆସି ହେଉଛି । ବେଶିଦିନ ଶର୍ମା କୃପାରୁ ତା' ହାତରେ କାମ ଧରେଇ ଦେଇ ପଳେଇ ଆସି ହେଉଛି । ବେଶିଦିନ ନୁହେଁ । ସୁଖୀର ଶର୍ମା ନିଜେ ଥକି ଯାଇ ପାରେ । ଥାଉ, ଯଥେଷ୍ଟ ହେଲାଣି କିମ୍ବା ମୋ ଫାଇଲ କାଗଜ ମୋତେ ଫେରାଇ ଦେଇ ପାରେ । ଅସମ୍ଭବ ! ତଟା ଲାଗିଲାଣି, ଏଠିକାର ପରବର୍ତ୍ତୀ ଦୃଶ୍ୟ ଦେଖିବାକୁ ମନ ହେଉଛି—ଛଢ କାଅଣ ? ବାବା ଜସ୍ୱାନନ୍ଦ ଏଇ ମାସ ଶେଷକୁ ଚାଲିଯିବେ, ତା' ଆଗରୁ ଥରେ ଝଣ୍ଡେ ବୁଲି ଆସିଲେ ଗଲା । ଯିବା ପୂର୍ବରୁ ତାଙ୍କ ମୁହଁକୁ ଦେଖିନେବି ମ, ଚିନ୍ତା ନାହିଁ । ତା ଛଡ଼ା ସେ ସ୍ତ୍ରୀଲୋକଟା ଯେମିତି ଅନାଇଲା ମୋ ଆଡ଼କୁ....ଆର ଥର ବେଳକୁ କ'ଣ କିଛି ବଦଳିବ ନାହିଁ ?

ଆଉଥରେ ଆସିବାକୁ ସମୟ ଲାଗିଲା । ତା' ପୂର୍ବରୁ ଅନେକ ଘଟଣା ଘଟି ଗଲା । ଡାକ୍ତର ଗୁପ୍ତ ପହଞ୍ଚିବା ପୂର୍ବରୁ ରୋଗୀ ବିଶେଷ ମରିଗଲା । ସେ ହେଉଛି ସ୍ତ୍ରୀଲୋକର ସ୍ୱାମୀ, ତା' ନାଆଁ ଭଗବାନ ଦାସ । ଯଥାକ୍ରମେ ଶବଦାହ ଏବଂ ନିର୍ଦ୍ଧାରିତ ଦିନ ଅନୁଯାୟୀ ଭଜନକୀର୍ତ୍ତନ କର୍ମ କର୍ମାଣି କରାଗଲା । ରାମପ୍ରସାଦ ଶବଦାହ ଛଡ଼ା ପ୍ରାୟ ସମସ୍ତ ଅନୁଷ୍ଠାନରେ ଉପସ୍ଥିତ ଥିଲେ । ଜଣେ ଅଧେ ଅବଶ୍ୟ ତାଙ୍କ ପରିଚୟ ମାଗିଥିଲେ; କିନ୍ତୁ ସେ ଉତ୍ତର ଦେବା ଆବଶ୍ୟକ ମନେ କରି ନ ଥିଲେ । ମୋଟ ଉପରେ ସମସ୍ତେ ଭାବି ନେଲେ, ଭଗବାନ ଦାସର ବିଧବା ସ୍ତ୍ରୀ ମଧ୍ୟ ଭାବି ଥିବ ଯେ ସେ ନିଜ ଲୋକମାନଙ୍କ ମଧ୍ୟରୁ ଜଣେ । ରାମପ୍ରସାଦ ଆମୋଦିତ ହେଲେ । ଏପରିକି କିଛିଦିନ ଉତ୍ତାରୁ ଶୋକସାଗର ହାଲୁକା ହୋଇଗଲା ପରେ ଝିଅକୁଟୁମ୍ବ ତାଙ୍କ ଆଗରେ ବିନା ସଙ୍କୋଚରେ ଫୁସୁରୁ ଫାସର ହେଲେ । ତେଣୁ

ରାମପ୍ରସାଦ କ୍ରମଶଃ ବୁଝି ନେଲେ ଯେ ଅର ଲୋକଟା କହୁଅଁ ର ଲୋକ ଖୋଇ ନୁହେଁ । ଭଗବାନ ଦାସ ସାମାନ୍ୟ କିରାଣୀ, ସାଧାରଣ ରୋଗରେ ମରିଗଲା ବୋଲି ବୁଝିହେବ ନାହିଁ । ତା ପଛକୁ ଅନେକ ରହସ୍ୟ ଅଛି । ରାମପ୍ରସାଦ ଲକ୍ଷି ରହିଲେ ।

ଏବଂ ଆଜି ଅରକୁ ମଧ୍ୟ ଦେଖା ହେଲା । ପ୍ରଥମେ ଶବ୍ଦର ଅହ୍ୱାନ । ପ୍ରସନ୍ନ ଭାବଣା; କିନ୍ତୁ ଏବକୁ ଚତୁରାଳ ନୁହେଁ, ସୁଁ ସୁଁ । ଶୂନ୍ ଶାନ୍ଆ ଖରାବେଳେ ଗୋଟିପଣେ ବାଣ ହୋଇ ଯାଇଛି । ରାମପ୍ରସାଦ ଏକୁଟିଆ ଆସିଥିଲେ । ମୃତ୍ୟୁର ଦୁ ସପ୍ତାହରୁ ବେଶି ହୋଇଗଲାଣି; ଲୋକମାନଙ୍କର ଯା ଆସ ଯଥେଷ୍ଟ କମିଗଲାଣି, ତଥାପି ଜଣେ ଦୁ'ଜଣ ଥିବେ ବୋଲି ଆଶା କରାଯାଉଥିଲା, କିନ୍ତୁ ଦୈବାତ୍ କେହି ନଥିଲେ । ତଥାପି ରାମପ୍ରସାଦ ଯିବେ କି ନାହିଁ ବୋଲି କୁଣ୍ଠୁ କୁଣ୍ଠୁ ହେଲେ । ଅସ୍ୱାଗିକାର ପ୍ରାଇଭେସି, ଏକାନ୍ତ ଶୋକ ଉପଭୋଗକୁ ନଷ୍ଟ କରିଦେବା ଉଚିତ ନୁହେଁ; କିନ୍ତୁ ଧର ଯଦି ସେ କେଉଁଥିପାଇଁ ଅସହାୟ ହୋଇ କାନ୍ଦୁଛନ୍ତି ?

ସେଇଠୁ ରାମପ୍ରସାଦ ଉପରକୁ ଉଠିଲେ, ଧୀରେ ଧୀରେ । ଶୁଣିବାକୁ ମିଳିଲା—ମୁଁ ଦେଖିନେବି, ଦେଖିନେବି, ଛାଡ଼ିବି ନାହିଁ... ( ସଁ ସଁ ଶବ୍ଦ ମାନିବ ନାହିଁ···

ଖୋଲା ଦରଜା ବାଟେ ସେ ଧାଇଁ ଆସିଲା । ହାତରେ ଖଣ୍ଡେ ଲେଖା କାଗଜ, ସରକାରୀ ଚିଠି ପରି ମନେ ହେଉଛି । ରାମପ୍ରସାଦ ଦେଖିଲାକ୍ଷଣି ପଚାରିଲା—

"ଆପଣ ଏ: ଜି: ଅଫିସରେ କାମ କରନ୍ତି ?"

"ଆଜ୍ଞା ନା—'

"ସେଠିକାର କାହାରିକୁ ଜାଣନ୍ତି ନାହିଁ ?"

"ଆଜ୍ଞା ନା—"

ରାମପ୍ରସାଦ ଆହୁରି କିଛି କହିପାରିଥାନ୍ତେ, କ୍ଷମା ମାଗିଲାପରି । ଯେ ମୋର ଜାଣିବାର ଉପାୟ ନାହିଁ, ମୁଁ ମୁନିସିପାଲ କରପୋରେସନରେ କାମ କରେ । ତେବେ ଧରନ୍ତୁଅଯେ ବୁଇଟିଯାକ ଏକା ଧରଣର, ସରକାରୀ। ନ ହେଲେ ମୁଁ ଅଫିସ୍ କାମ ଛାଡ଼ି ତମ ଘର ସାମନାରେ ପହଁଚିରା ମାରୁ ନଥାନ୍ତି, କିନ୍ତୁ ଦୁଃଖର ବିଷୟ ରାମପ୍ରସାଦ ଦେଖିବାକୁ ପାଇଲେ—ଯାହାକୁ ଡରୁଥିଲେ—ଗାର ଗାଲ ଓ ଅପ୍ରତି-ହତ କାଳିମା । ପୂର୍ବଅରପରି, ହୁଏତ ତାଠୁଁ ଅଧିକ ।

ମୋର ପ୍ରତିକ୍ରିୟା ଘରେ ଶୂନ୍ ବୋଲି ଭାବନାହିଁ, ଏଇ ମର୍ମରେ ରାମପ୍ରସାଦ ଠୋ ଠୋ ହୋଇ ହସିବାକୁ ଚାହିଁଲେ । କଉଁ, ତମେ କିଏ ମୁଁ. କିଏ ?

ମୁଁ ଗୋଟିଏ ଖେଳ ଖେଳୁଥିଲି ପରା, ଏତକ ବୁଝିପାରିଲ ନାହିଁ ? ମୁଁ କରପୋ-
ରେସନର ଜଣେ ଗ୍ରେଡିଆ ମୋଟିଆ ଅଧିକାରୀ, ତମ ମୃତ ସ୍ୱାମୀ କେଉଁ ଏକ
ଡିପାର୍ଟମେଣ୍ଟର ଚକିଆ କରାଣୀ । ତମ ବିରାଗକୁ ମୁଁ ପରୁଆ କରେ ନାହିଁ ।
ପ୍ରକୃତପକ୍ଷେ ବିରାଗ ଫିରାଗ ମିଛ, ତମେ ଅସୁନ୍ଦର । ସୁଧୀର ଶର୍ମାକୁ ପଚାରୁନ ?
ଗଢ଼ିଥିଲେ ଯେମିତି ଥରେ କହୁଥିଲା ଖ୍ରୀଜନଙ୍କ ଚେହେରାରେ ଦେବୀଙ୍କ ଅଛି,
ଗ୍ରୀକ୍‌ମାନେ ଦୁର୍ଗାମୂର୍ତ୍ତି ଦେଖା ଯାଆନ୍ତା...

କିନ୍ତୁ ସେ ହସିପାରିଲେ ନାହିଁ । କାହିଁକନା ସିଏ ପଛରେ ଆସି ଛିଡ଼ା
ହେଲା । କିନଥାଁ । ସତେକି ପ୍ରତ୍ୟେକ ଦୃଶ୍ୟରେ ତା'ର ମଧ୍ୟ ରହିବା ଉଚିତ । ଏଇ
କି'ଣ ସେଇ ଝିଅ ଯେ ପ୍ରାର୍ଥନା ସଭାରେ ମୋତେ ମୋହି ନେଇଥିଲା ? ଆନନ୍ଦର
ଭେଳକି ଦେଖାଉଥିଲା, ସୁନେଲି ଝରାକୁ ଫେରେଇ ଆଣିଥିଲା ? ଏଇକ୍ଷଣି ତା'ର କଣ
ହୋଇଛି ? ଏଡ଼େ ଟିକେ ପିଲା, ସେ ବି କ'ଣ ବିରାଗ ଦେଖେଇ ଜାଣେ ?

ଏ: ଜି: ଅଫିସରୁ ଚଠି ଆସିଥିବ ଯେ ଭଗବାନ୍ ଦାସର ସଞ୍ଚସ୍ତ ସବୁ
ତୋତେ ମିଳିବ ନାହିଁ ଆଉ ଟୋକାକୁ ମଧ୍ୟ ମିଳିବ । କମ୍ପା ହୁଏତ ରୁ ମୂଳରୁ
ପାଞ୍ଚିରୁ କଟିଯାଇଛୁ । ମଲେ ମର ମୋର କ'ଣ ଯାଉଛି ? ମୋ ନିଜ ଘର ଅଛି,
ନିଜ ସ୍ତ୍ରୀ ପରିବାର.... । ରାମପ୍ରସାଦ ପଦୁଟିଏ ନ କହି ନମସ୍କାର ପର୍ଯ୍ୟନ୍ତ ଭୁଲିଯାଇ
ପଳେଇ ଆସିଲେ ସେଠୁ । ଯେମିତିକି ବଲ୍ ଏପାଖ କୋର୍ଟରେ ପିଟି ହୋଇଗଲା,
ସେପାଖ କୋର୍ଟକୁ ନଗଲେ ରକ୍ଷା ନାହିଁ ।

ଠିକ୍ ଅଛି । ମୁଁ ସର୍ମର୍କର ଚହ୍ନଟରଙ୍ଗକୁ ଡରେ ନାହିଁ । ମୁଁ 'ଆଉ ଲଭ୍ ୟୁ,
ଆଇ ହେଟ୍ ୟୁ'ର ଉତ୍ତେଜନାକୁ ବୋଧକୁ ଆଦର ନେବି । ମୁଁ ପାରିବି । ମୁଁ ପିଲା
ନୁହେଁ । ଆରେ ଏତେ ଚିନ୍ତା କାହିଁକି ? ସୁଧୀର ଶର୍ମାର ଆବିର୍ଭାବ ହେଲା ଦିନଠୁ
ସେମିତିକା ଯେନ ଯେନ ହଣାହଣି ହୋଇଛି ? ଥରେ ଖଣ୍ଡେ ହୋଇଥିବ ପରା,
ଯେବେ ତୃଷ୍ଣା ପରୀକ୍ଷା ଦେବନାହିଁ ବୋଲି କହିଲା, ସେ କହିଲା ଛାଡ଼ନାହିଁ, ମୁଁ
କହିଲି ଛାଡ଼ଅଛି...

ହଠାତ ରାମପ୍ରସାଦଙ୍କର ମନେ ହେଲା—ସେତେବେଳେ ସେ ମେନ୍
ଗେଡ଼ରେ ଚାଲୁଥିଲେ. ପ୍ରାର୍ଥନା ସଭାର ରାସ୍ତା ଧରି ନଥିଲେ—ଯେ ଆଉ ହେବ
ନାହିଁ । ସୁଧୀର ଶର୍ମାର ପ୍ରସାଦରୁ ଆଉ କିଛି ହେବ ନାହିଁ । ଏଣିକି କେବଳ ଶାନ୍ତ ।
ଯେବେ ହେଟେଲ ତା' ମୁହଁକୁ ଅନେଇଲେ ପାଇବି ..ବିରାଗ ନୁହେଁ, ବିରାଗ ନୁହେଁ ।
ଅନାସ୍ଥା ! ଗୀତ ନାହିଁ, ଗୀତ ନାହିଁ, ଅନାବିଳ ସୁନ୍ଦରତା ! ଅନାସ୍ଥା ! ଭାଙ୍ଗି
ଲଗିଲା ଜନପଥର ଜନତା ତାଙ୍କ ପଛରେ ହୋ' ହୋ' ଧୋ' ଧୋ' ହେଉଛନ୍ତି ।

ଅନ୍ଧାର ଓରେଇଲା ପରି । ସେମିତିକ ସମ୍ପର୍କରେ ଜଙ୍ଗଲ କଟିଗଲା, ଏଥର ସେମାନେ ତାଙ୍କୁ ଠେଲି ଠେଲି ନେଇ ନଗ୍ରଟିଆ ବେଲାଭୂଇଁରେ ଛାଡ଼ି ଦେବେ ··କୁନ କଙ୍କଡ଼ାଟିଏ ପର୍ଯ୍ୟନ୍ତ ପାଖକୁ ଆସିବ ନାହିଁ ।

ସେଇଠୁ ସେ ବାଞ୍ଛିଲେ । ଅନୁମାନ କଲେ ଯେ ଆଜି ହେଉଛି ପ୍ରାର୍ଥନା ସଭାର ଶେଷ ଦିନ । ମାସ ସରିବାକୁ ଅବଶ୍ୟ ଆଉ ସାତଦିନ ଅଛି; କିନ୍ତୁ କହିହେବ ନାହିଁ ମୁଁ ବାବାଙ୍କ ପାଖକୁ ଯିବି, ମେ ତେ ଯିବାକୁ ପଡ଼ିବ ।

ପହୁଞ୍ଚିବା ମାତ୍ରେ ସେ ପିମ୍ପୁଡ଼ିଆ ଗାତ ଖୋଜିଲେ ନାହିଁ । ସିଧା ସଳଖ ସାମନାରେ ଯାଇ ବସିଲେ ଏବଂ ସାହସର ଶେଷକୁ ଓଟାରି ଆଣି ନିଜକୁ କହିଲେ, ଦେଖେ ତାଙ୍କ ମୁହଁକୁ, ଅରେ ଆଖିଖେ ଲି ଦେଖେ ? ଆରେ ଦେଖିବ କ'ଣ ମ ? ସେ ପରା ସେଇ ଶଙ୍କର ନାଏକ, ପଡ଼ା ମାନ୍ତ୍ରିକଯାଏଁ, ବାପା ଅଜା କୋଇଲା ବେପାର କରୁଥିଲେ, ମୁଁ କଣ ତାଙ୍କ ବିଷୟରେ ପଢ଼ି ନାହିଁ ? ଆରେ ଦେଖେ, ସ୍ୱାମୀଜୀମାନଙ୍କର ଅତୀତ ନାହିଁ, ଏତିକ ଜାଣି ନାହୁଁ ? ମଲା ମୁଁ କଣ ଦେଖି ନାହିଁ ? କଟାକ୍ଷରେ ଦେଖିଛୁ, ଝଲକରେ ଦେଖିଛୁ, ସେଇ ସର୍ବସାଧାରଣ ନାଶ, ଦାଢ଼ି, କପାଳରେ ନାଲି ସିନ୍ଦୁର ଟୋପା, ହୁଏତ ସ୍କୁହ'ଣୀ ଦପ୍ ଦପ୍ କରୁଛି, କିନ୍ତୁ କିଏ ମନା କରୁଛି । ଦେଖେ, ଏ ସୁଯୋଗ ଆଉ ମିଳିବ ନାହିଁ । ମୂର୍ଖ, ତୋର ଗତି କଅଣ ଅଛି ? ତୁ ଆଉ କୋଉ ଘଇତା ପାଖକୁ ଯିବୁ ?

ଘଇତା ନୁହେଁ, ବାପା ! ମୁଁ ନାବାଳକ ହୋଇପାରେ, ସ୍ତ୍ରୈଣ ନୁହେଁ । ରାମପ୍ରସାଦ ରାଗିଲା ପରି ହୋଇ ଆଖି ଉପରକୁ କଲେ ଏବଂ ବାବା ଜସ୍ମାନନ୍ଦଙ୍କ ମୁହଁକୁ ଅନେଇଲେ । ଅନେଇଲେ ଆଉ କହିଲେ—ହେଉ ଏବେ କିଛି ଅଧିକା ନୁହେଁ କିନ୍ତୁ ଏଇଠୁ କଅଣ ଆହୁରି ଆଗକୁ ଯାଇ ହେବ ନାହିଁ ? ଅନୁରାଗର କାନ ଧରି ହେବନାହିଁ ? ମେ'ର ସତ ବାପାଙ୍କୁ ଦେଖିପାରିବ ନାହିଁ ?

କେତେବେଳେ ଭକ୍ତମଣ୍ଡଳୀକୁ ଜଣେ ଚେତାଇ ଦେଲା, ବାବା, ଟାଇମ୍ ହୋଇଗଲାଣି ।

ରାମପ୍ରସାଦ ଚମକି ଉଠିଲେ । ନା, ଟାଇମ୍ ହୋଇନାହିଁ । ହଉ, ରହନ୍ତୁ ମୁଁ ଆପଣଙ୍କ ସାଙ୍ଗରେ ଯିବି; କିନ୍ତୁ (ରାମପ୍ରସାଦ ସକରୁଣ ନୟନ ତୋଳି ଧରିଲେ) ବାବା, ଆପଣ ସୁନାର ଶର୍ମାକୁ ମଧ୍ୟ ଟାଣି ଆଣିପାରିବେ ନାହିଁ ?



# ମଲ୍ଲୀକଢ଼ି ଓ ଚାକରାଣୀ

ମୁଁ ତାଙ୍କ ଘରେ ତିନି ଚାରିଦିନ ରହିଲା ପରେ ଯାଇଁ ଘରର ମାଲିକାଣୀଙ୍କୁ ନେଇ ଗୋଟାଏ ଲଜ୍ଜାଜନକ ଅତୀତକୁ ମନେ ପକାଇଲି । ଅର୍ଥାତ୍ ସ୍ମୃତିକୁ ଘାଣ୍ଟେଇ ଦେଲି ନାହିଁ ହବୁଥର ପରି, ମୁଠେଇ ଧରିଲି । କାରଣ ମାଲିକାଣୀ (ଧରନ୍ତୁ ତାଙ୍କ ନାଆଁ ମଲ୍ଲୀକା) ତାଙ୍କ ଘରେ କାମ କରୁଥିବା ଟୋକା ଚାକରାଣୀର ଚରିତ୍ର ପ୍ରତି ଆକ୍ଷେପ କରି କହିଲେ,—କାମ ଦାମରେ ଭଲ ସିନା, ଟୋକାଖଣ୍ଡିକ ମହା ଜଣେ । ସେଇଥିପାଇଁ ସ୍ୱାମୀ ତାକୁ ଛାଡ଼ି ଦେଇ ଚାଲିଯାଇଛି ପରା……। ଶେଷ ପଦକ ଚତୁର ହସ ହସି ଫୁସ୍‌ଫୁସ୍ ହୋଇ କହିଲେ । ସତେ କି ନିଜେ ସତୀସାବିତ୍ରୀ । ସ୍ୱଜନର ଦୁର୍ଦ୍ଦଶାରେ ଆମୋଦିତ ହେବେ ନାହିଁ ତ ଆଉ କଣ କରିବେ ?

ମୁଁ ମଧ୍ୟ ଯଥେଷ୍ଟ ଆମୋଦିତ ହେଲାପରି ଓଠ କୁଞ୍ଚେଇଲି । ଅର୍ଥପୂର୍ଣ୍ଣ ଚାହାଁଣୀରେ ତାଙ୍କ ଆଡ଼କୁ ଅନେଇଲି । ଆଶା କଲି ସେ ସେଥିରେ ଅତୀତର ଇଙ୍ଗିତ ରହିଛି ଏବଂ ତମେ କିଛି କମ୍ ନୁହଁ ବୋଲି ସେ ବୁଝିବେ; କିନ୍ତୁ ପରକ୍ଷଣରେ ଭାବିଲି ସେ ମୋ ପରି ଆଶାବାଦୀ ପୃଥିବୀରେ ନାହାନ୍ତି । କାରଣ ମାଲିକାଣୀଙ୍କ ନାଆଁ ମଲ୍ଲୀକା । ସଦାସୁଖୀ । ତାଙ୍କ ମତରେ ବର୍ତ୍ତମାନର ଟୁପ୍ସି-ଗପରେ ଅତୀତ ଅଥବା ଘନବାରୁ ନାମକ ପ୍ରେମିକକୁ ଆଣି ପଶେଇବା ବେରସିକତା । ଉପସ୍ଥିତ ବର୍ତ୍ତମାନରେ ସେ ମିସେସ୍ ମଲ୍ଲୀକା ମାନସିଂହ, ଝିଅକୁ ଅଠର ବର୍ଷ ହେଲାଣି, ସଂପନ୍ନତାର ଦ୍ୱିସ୍ତର ଚିବୁକ ସଦୃଶ ହେଲାଣି, ବାଳକୁ ରଙ୍ଗେଇ ନ ଥିଲେ କେବଳ କଡ଼ରେ ନୁହେଁ ଉପରେ ମଧ୍ୟ କେତେ ଧଳାବାଳ ଦେଖା ଯାଆନ୍ତାଣି (ମୋ.ର ଅନୁମାନ ଭୁଲ ହୋଇ ନ ପାରେ) ଏବଂ ସେ ଟେବୁଲ ଆର ପାଖରେ ବସି ସ୍ୱାମୀଙ୍କର ଜଣେ ବଶିଷ୍ଟ ବନ୍ଧୁ, ସେ ଭାଇ ପରି ନଜର, ତାଙ୍କ ପାଇଁ ପାନ ଭାଙ୍ଗୁଛନ୍ତି । ଦେବଦେବୀମାନଙ୍କର କାଳୀ ପିଇସୀ ପରି ମନେ ହେଉଛନ୍ତି, ପ୍ରବୀଣା, ପରିଣିତା, ଅଙ୍ଗବିଶେଷରେ ଅସୁନ୍ଦର ବୋଲି କହିଲେ କିଛି ଯାଏ ଆସେ ନାହିଁ ତାଙ୍କୁ ତୁମେ କଭାଲି ଚାହାଁଣିରେ ଚହଲେଇ ଦେଇ ପାରିବ ? ମାଲିକାଣୀ ପାନ ଭାଙ୍ଗିବାକୁ ଲାଗିଲେ । କାଳ୍ପନିକ ଚୂର୍ଣ୍ଣକୁନ୍ତଳକୁ ସଜାଡ଼ିଲେ, ଯାହା ତାଙ୍କର ପୁରୁଣା ଅଭ୍ୟାସ, ଅବା ଝାଳ ପୋଛିଲେ କହିହେବ ନାହିଁ ।

ତିନି ଦି'ପହର । ଡାଇନିଙ୍ଗ୍ ରୁମ୍‌ରେ ଝରକାମାନ ଠିଆ ମେଲା । ମୌସୁମୀ ପୂର୍ବର ଆକାଶ ଅଳଜୁକ ଖସ ଓ ହାଣ୍ଡି ମୁହାଁ । ଝରକାର କେତେ ଛବି ଦେଖାଉଛି । ସତେକି ଏହି ସନ୍ଧିକ୍ଷଣରେ ସବୁ ସମ୍ଭବ, ଖାଲି ମନକୁ ସେଆଡ଼କୁ

ନେଇଗଲେ ହେଲ । ମନକୁ ଟାଣିନେଇ ସ୍ତ୍ରିମାଗି ଗୃହିଲେ କମ୍ପା ବାଜଲ ହୋଇ ମାଗିଲେ ଆକାଶ ତମର ଥାଳ ଭରିଦେବ, ଝରଝର ହୋଇ ଝରିବ, ଫେଁ ଫେଁ ହୋଇ ହସିବ, କାନ୍ଦିବାକୁ ଥିଲେ କନ୍ଦେଇବ, ହସିବକୁ ହେଲେ···। ମୁଁ କିନ୍ତୁ ଆକାଶରୁ ବିମୁଖ ହୋଇ ମାଲିକାଣୀଙ୍କ ପଛରେ ଥିବା କାନ୍ଥକୁ ଅନେଇଲି । ବାରମ୍ବାର ଗୁଣି ହେଲି ଯେ ଏଇ ଯେଉଁ ଅସମ୍ଭବ ମିଥ୍ୟା, ଯେ କାଳୀ ପିଙ୍ଗଳୀ ନୁହେଁ କଳାବରଙ୍ଗମଣ୍ଡିତା ହିମାଳୟ ପରି ମୋ ସାମ୍ନାରେ ବସି ରହିଛି, ତାକୁ ମୁଁ କୌଣସିମତେ ଟମ୍‌କେଇ ଦେଇପାରିବ ନାହିଁ । ତାକୁ ତା'ର ସତ୍ୟାସତ୍ୟ ମନେ-ମନେଇ ଦେଇ ପାରିବ ନାହିଁ । ହଜାରେ ଅଧା ମୌସୁମୀଙ୍କ ଚଙ୍ଗଢ଼ଙ୍ଗରୁ କିଛି ମିଳିବ ନାହିଁ ମୋତେ । ମୋ ଦେଇ ହେବ ନାହିଁ—ବସ !

କାହିଁକନା ସେ ମୋଠାରୁ ବଡ଼ । ମାନୁଛି, ମ ନୁହଁ ।

ବୟସରେ ସାନ ହେଲେ କଣ ହେବ ତା'ର ଆତ୍ମାବଳ ମୁନିଋଷିଙ୍କ ପରି, ମୁଁ ତା' ଆଗରେ କାଲିକାର ଦୁଧଖିଆ ପିଲା । ଧର ମୁଁ ତା'ର ମିଛ ଭାଙ୍ଗିବାକୁ ଯାଇ ହଠାତ୍ ଦୁଃସାହସୀ ହୋଇଉଠିଲି, ଝରକା ଖୋଲାଥିବା ସତ୍ତ୍ୱେ (କମ୍ପା ତାକୁ ଚଟ କରି ବନ୍ଦ କରି ଦେଇ) ତା' ଅଙ୍ଗକୁ ମାଡ଼ିଗଲି ଓ ତା'ର ଏକଦା-ଚପଳ ଓଠରେ ଟାଣୁଆ ଚୁମ୍ବନଟାଏ ପୂରେଇ ଦେଇ ତା'ର ଆଖିରେ ଆଖି ରଖି କହିଲି— କୋଉ ଗ୍ରନ୍ଥବଣୀ କଥା କହୁଛ ମ ? ତମେ ନିଜେ କଣ କମ୍ ଜଣେ ଥିଲ ? ମନେ-ନାହିଁ ଯେଉଁଦିନ ତମେ ମୋ ସାଙ୍ଗରେ ପ୍ରେମ କରିବ ବୋଲି ସ୍ୱାମୀଙ୍କୁ କାମରେ ପଠେଇ ଦେଲ ? ପୁଣି ତାଙ୍କ ସାଙ୍ଗରେ ଫୋନରେ କଥାବାର୍ତ୍ତା ହେଲାବେଳେ ମୋ ଦେହ ସାଙ୍ଗରେ କିଭଳି କଥାବାର୍ତ୍ତା ହେଉଥିଲ ମନେଅଛି ତ ? ଯଦି ଏମିତି କହେ ମାଲିକାଣୀ କଣ କରିବେ ମୋତେ ଜଣାଅଛି । ପ୍ରଥମେ ଚୁମ୍ବନର ଓଦାକୁ ପୋଛି ଦେବେ । ଯେପରି କି ତାଙ୍କ ମୁହୂର୍ତ୍ତରେ ଅମୃତ କି ବିଷ ଲଭେଇ ଦିଆ-ଗଲା । ସେଇଠୁ ଉଦାର ସ୍ମିତହାସଟିଏ ଦାନ କରି କହିବେ—ଆଜ୍ଞା ହେଉ । ଧନ୍ୟବାଦ ।··· ···ତା'ର ସ୍ୱାମୀଟା ଭଲ ମଣିଷ ମ । ଥରେ ଏଠିକି ଆସିଥିଲା । ମନେ ହେଉଛି ମୁଁ ବୁଝେଇଲେ ମଙ୍ଗିଯିବ । ସ୍ତ୍ରୀକୁ ଫେରେଇ ନେବ ।

ମୁଁ ଏହି ମର୍ମରେ ଭାବିଗଲି । ଚେଇଁ ଉଠିଲା ପରେ ଦେଖିଲି ଯେ ମୋର ଚୁମ୍ବନ ଆକ୍ରମଣ ଉଦ୍ଦେଶ୍ୟ ରହିଗଲା ସିନା, ସେ ତା'ର ଲିପଷ୍ଟିକ ଓଠରେ ଯାହା କରିବାର କହୁଛି । ସ୍ୱାମୀଟି ଭଲ ମଣିଷ ମ···ଇତ୍ୟାଦି ।

ହେଟ୍‌ର ଓଡ଼ିଆ ଭାଷାନ୍ତର ଘୃଣା ନୁହେଁ । ଯାହାକୁ ବଡ଼ ବୋଲି ସ୍ୱୀକାର କରୁଛି, ତାକୁ ଘୃଣା କରିବ କେମିତି ? କିନ୍ତୁ ହେଟ୍ କରିହେବ । ଯେ ତମେ ପରମ ଶତ୍ରୁ । କେବଳ ମୋର ନୁହେଁ, ନ୍ୟୁନତମ ମାଙ୍ଗବାଦର, ସତର, ଯାହା ବିନା ମଣିଷ

ସେସ'ର ଗୋଟାଏ ମୁଣ୍ଡଗଣ୍ଡବିହୀନ ମାଦଳ ହୋଇ ରହିଯିବ । ନା, ତା ହେବ ନାହିଁ । ତମ ସ୍ୱକବଣୀର ସ୍ୱାମୀ ତାକୁ ଫେରେଇ ନେଇ ଆପତ୍ତି ନାହିଁ, କିନ୍ତୁ ସେଥିରେ ଗ୍ଲାନି ଓ ସନ୍ତାପର ଶେଷକଥା ରହିବା ଉଚିତ୍ । ହିନ୍ଦୀ ଫିଲ୍ମ ପରି ନହେଲ ନାହିଁ, ଅନ୍ତତଃ କଛୁଟା ସତରେ ଅଙ୍ଗୀକାର, ହୃଦାବନକାଶ । ଆଉ ତମ ସ୍ୱାମୀ ଯେ ତମକୁ ମୁଣ୍ଡରେ ବସେଇଛନ୍ତି (ମଧୁଭାଇ ମଲ୍ଲୀକାର ବିପୁଳ ଶ୍ୟାମଳ ବପୁକୁ ମୁଣ୍ଡରେ ବସେଇ ଥିବାରୁ ଦୃଶ୍ୟ ହାସ୍ୟାସ୍ପଦ ହେଲେ ହେଁ ସେଥିରେ ମୋ ହେଟ୍ କମିନ ନାହିଁ), ତାଙ୍କର ମଧ୍ୟ ତମ-ଆମ ବିଷୟ ଜାଣିବା ଦରକାର । ସେଇଠୁ ଯାହା କରନ୍ତୁ ପଛକେ । ତମେ ପାପ କରିଛ କି ଭୁଲ କରିଛ, କି ଏମିତି ସଚରାଚର ହୁଏ, ହେବା ସ୍ୱାଭାବିକ, ଇତ୍ୟାଦିର ପ୍ରଶ୍ନ ଉଠୁନାହିଁ । ତାଙ୍କର ଜାଣିବା ଦରକାର । ଦରକାର !

କେମିତି ଜଣେଇବାକୁ ହେବ କହି ପାରୁ ନାହିଁ । ଆଜି ଏତେ ବର୍ଷ ପରେ, ଯୁଗଟାଏ ବିତିଗଲାଣି, ସଂସାର ଘର ପିଲାଛୁଆ ସମେତ ସଂପଦରେ ଭରି ଗଲାଣି; ଏଇକ୍ଷଣି ସେଇ ତାତିଲା ସତକୁ କେଉଁ ଥାକରେ ରଖି ହେବ ଭାବି ପାରୁ ନାହିଁ । ସେଇଥି ଲାଗି କେବଳ ମୁଁ ତମକୁ ହେଟ୍ କରେ, ଅନ୍ତରତମ ହୃଦୟରୁ .....

ହେଟ୍ ହେତୁ ମୋ ଚେହେରା ଅବଶ୍ୟ ଭିନ୍ନ ଦେଖା ଯାଉଥିବ, କିନ୍ତୁ ମନେ ହେଉଥାଏ ତାର କଣ୍ଟିନ୍ୟାଜ ଅଭ୍ୟାସ ମାଲିକାଣୀଙ୍କ ପାଖରେ ପହଞ୍ଚି ପାରୁ ନାହିଁ । ମଲ୍ଲୀକା ପରମସନ୍ତୋଷରେ ଗପି ଯାଉଥାନ୍ତି । ସ୍ୱକବଣୀ ବ୍ୟାପାର ପରେ ଦିଲ୍ଲୀରେ ପାଣିପାଗ, ସ୍ୱାମୀଙ୍କ ସଚ୍ଚୋଟପଣିଆ, ଯେଉଁଥିରେ ସହକର୍ମୀ ମାନେ ତାଙ୍କୁ ସହି ପାରୁ ନାହାନ୍ତି ଇତ୍ୟାଦି । କଥା କହୁ କହୁ ପୁରୁଣା ଅଭ୍ୟାସ ଗୁଡ଼ିକର ନମୁନା ଦେଖାଉ ଥାଆନ୍ତି । ଚୂର୍ଣ୍ଣକୁନ୍ତଳ କାଲ୍ପନିକ ସିନା ଅନ୍ୟାନ୍ୟ ଅଭ୍ୟାସର ଉପାଦାନ ଗୁଡ଼ିକ ଖତମ୍ ହୋଇ ଗଲାଣି ବୋଲି କୁହା ଯାଇ ନ ପାରେ । ଯଥା, ବଚନକାର ବିରାମରେ ଓଠକୁ ଈଷତ୍ ମେଲେଇ ଦେଇ ରହିଯିବା (ଓଠ ଏତେ ମୋଟା, ଏତେ କଳା, ଏଇଥିକୁ ଦିନେ ମୁଁ........!) ଆଖିପତା ତଳକୁ କରି ମୃଦୁ ମୃଦୁ ହସିବା ସୁହାଣୀକୁ ଯେତେ ସ୍ୱପ୍ନିଳ ଚଳଚଳ କଲେ କଣ ହେବ, ସେଥିରେ ପଙ୍କ କାହିଁରେ କଅଣ, ମୋ ସ୍ତ୍ରୀଙ୍କ ନିର୍ମଳ ସୁହାଣୀକୁ ଛାଡ଼ି ମୁଁ କେମିତି..... !?), କଥା କହିବାର ମଝିରେ କଣ୍ଠ ଭିତରୁ ଗୋଟାଏ ପଲ୍ଲକିଆ କୁରୁଳିଆ କୁହଁ ବ ହାର କରିବା (ମନେ ମନେ ଚୋଙ୍ଗା ? ହୁଏତ ତମ ହିଁଥ, ତମେ ମଲ୍ଲୀକା ହେଲେ ସେ ମଲ୍ଲୀକଢ଼ୀ, ତାକୁ ଶୋଭା ପାଇବ), ଏମିତି କେତେ ପୁନଶ୍ଚର କ୍ଳେଶ । କାହାର କାମ ନାହିଁ ଟିପି ରଖିବ ?

ହଠାତ୍ ଘର ସାମନାରେ ଗୋଟାଏ ସ୍କୁଟର ଆସି ରହିଯିବାର ଶବ୍ଦ ହେଲା ଓ ମୁଁ ଝରକା ବାଟେ ଦେଖିଲି ଯେ ଗୋଟିଏ ଝିଅ ସେଥିରୁ ଓହ୍ଲେଇ ଆସିଲା । ସେଇ ମଲ୍ଲୀକଳି, ଚଣ୍ଡୀଗଡ଼କୁ ତା' ସାଙ୍ଗ ପାଖରେ କିଛି ଦିନ ଛୁଟି ବିତେଇବାକୁ ଯାଇଛି ଏବଂ ଆଜି ଫେରି ଆସିବ ବୋଲି ତା' ମାଆ କହୁଥିଲା, ଏତିକି ବୁଝିବାରେ ବିଳମ୍ବ ହେଲା ନାହିଁ । ତେବେ ବୁଝିବା ପୂର୍ବରୁ ଯେଉଁ ମୁହୂର୍ତ୍ତରେ ଯାହାକୁ ଦେଖିଲି ସେ ଥିଲା କେବଳ ଗୋଟିଏ ଝିଅ । ଅନୂଢ଼ା, ଅସଜଡ଼ା । ଅବନ୍ଧନା··· ମନେହେଲା ତାର ଅଞ୍ଚଳ ଉଡ଼ିବା ସାଙ୍ଗେ ସାଙ୍ଗେ ଓ ତା'ର ସତପଢ଼ିକା ଚୂର୍ଣ୍ଣକୁନ୍ତଳ ଦେଖା ଦେଖି ପଡ଼ରମାନେ ସିରସିର ହେବାକୁ ବାଧ୍ୟ ହେଲେ । ସେଇଠୁ ତା'ର ସହର୍ଷ ଉଚ୍ଚକଣ୍ଠ 'ହାଏ !'ର ଝଙ୍କେଯରେ ସେମାନଙ୍କର ଫଡ଼ ଫଡ଼ ହେବା ଛଡ଼ା ଗତି ନଥିଲା । ଋତୁ ବଦଳର ସୁବିଧା ନେଇ ବିଚରାମାନେ ବାନପ୍ରସ୍ଥର ହେବାକୁ ବସି ଥିଲେ, ପାରିଲେ ନାହିଁ । କୁମାରୀର ଆଗମନ ତାକୁ ଚଞ୍ଚଳେଇ ଦେଲା । ମୋ ମନରେ ଏଭଳି ଧାରଣା ଆସିବାର କାରଣ ହେଉଛି ଯେ ସ୍ୱାସ୍ଥ୍ୟବତୀ ବେଗବତୀ କୁମାରୀଟିଏ ଦେଖିଲେ ମୋର କ୍ଷଣିକ ଭାବାନ୍ତର ଆସେ । ସତେ ମୁହୂର୍ତ୍ତିକ ପାଇଁ ସେଇ ଆବେଗକୁ କୁଣ୍ଢେଇ ଧରିପାରିଲେ ମୋର ଶ୍ଳଥ କଟିଯିବ । ଦୀର୍ଘ ଜୀବନର, ମୁହାଣ ପାଖରେ ମାଣ୍ଡେଇ ହେବାର ଶ୍ଳଥ । ସେଇ ବୟସର ପୁଅମାନଙ୍କୁ ଦେଖିଲେ ହିଂସା ହୁଏ, ବେଳେ ବେଳେ ଡର ମାଡ଼େ; କିନ୍ତୁ କୁମାରୀ ଭିନ୍ନ ଧାତୁରେ ଗଢ଼ା । ହେଲା, ଇଏ ହେଉଛି ବୁଢ଼ା ହୋଇ ଆସିବାର ଲକ୍ଷଣ । ମୋତେ କହିବାକୁ ଲାଜ ଲାଗୁ ନାହିଁ । ମୁଁ କଣ ସ୍ୱାଙ୍କ ପରି ହୋଇଛି, ଯେ ମୋ ସାମ୍ନାରେ ବସିଛନ୍ତି ?

କୁମାରୀ ଦର୍ଶନର ବିହ୍ୱଳ ମୁହୂର୍ତ୍ତଟି କଟିଗଲା । ବୁଝିଲି ସେ ହେଉଛି ମଲ୍ଲୀକଳି, ଲକ୍ଷ୍ମୀ ମାନସିଂହ । ଆସୁ ଆସୁ ମାଆର ବିଶାଳ କୋଳକୁ ଆଉଜିଗଲା ଓ ମାଆ ତାକୁ ଗେହ୍ଲା କରି ପକେଇଲେ । ମୁହଁ ଦେଖେଇଲାରୁ ଦେଖାଗଲା ମୁହଁରେ ଗୋଟି ଗୋଟି ବ୍ରଣ । ମୋଟାମୋଟି ମାଆର ଝିଅ ବୋଲି ବାରି ହୋଇପାରୁଛି । ହୁଏତ ସ୍ୱାସ୍ଥ୍ୟାଣୀ ଏତେଟା ଢ଼ଳଢ଼ଳ ନୁହେଁ । ଚଙ୍ଗଚଙ୍ଗିଆ, ତା ବାପ ପରି··· ।

ସେ ମୋତେ ଅଗକୁ ଭାବିବାକୁ ଦେଲା ନାହିଁ । ଚହ୍ନିଲା ମାତ୍ରେ ବିରାଟ ଆନନ୍ଦ-ବିସ୍ମୟର ଭାବ ଦେଖାଇ କହିଲା—"ଆ-ରେ ଘନଦାଦା !" ପ୍ରଣାମ ସହକାରେ ଆହୁ ପଦେ ଯୋଡ଼ିଦେଲା—"ମୋର ଆପଣଙ୍କ ସାଙ୍ଗରେ ଅନେକ କଥା କହିବାର ଅଛି ।" ସେଥିରେ ଚପଳତା ମୋଟେ ନ ଥିଲା ।

ସେ ଏତେ ସିରିୟସ୍ ହୋଇ କହିଲା ଯେ ମୋତେ ଲାଗିଲା ସେ ମୋତେ ଜେରା କରିବାକୁ ଚାହେଁ । କହିବ ତା'ର ମାଆର ପାପପାଇଁ ମୁଁ ଦାୟୀ । ମୋତେ

କୈଫିୟତ୍ ଦେବାକୁ ପଡ଼ିବ, ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ଆଜିକାଲିକାର ପିଲା-ମାନଙ୍କୁ ବିଶ୍ୱାସ ନାହିଁ । କହିଲେ କହ. ମୁଁ ସ୍ପଷ୍ଟ ଭାବରେ ଜଣେଇଦେବି ଯେ ହଁ, ମୁଁ ତୋ ମାଆର ପ୍ରେମରେ ପଡ଼ିଥିଲି; କିନ୍ତୁ ମୁଁ ସନ୍ତାପରେ ଦଗ୍ଧ ହୋଇଛି । ଦଗ୍ଧ ହେବାର ଇଙ୍ଗିତ ମଧ୍ୟ ମୋର ସ୍ତ୍ରୀ ବିମଳାକୁ ଦେଇଛି । ସେ ହଠାତ୍ ବେମାର ପଡ଼ି କଚଟ୍ଗାଲଗା ହୋଇ ନଥିଲେ, ଦ'ଟା ବର୍ଷ ଭିତରେ ଆଖି ବୁଜି ଦେଇ ନଥିଲେ ମୁଁ ତାକୁ ଟିକିନିଖି କରି ସବୁ କଥା କହିଦେଇ ଥାଆନ୍ତି, କିନ୍ତୁ ତୋ ମାଆ କଣ କରିଛି ? ସନ୍ତାପ ଦୂରର କଥା, ବର୍ଷକୁ ବର୍ଷ ଫୁଲୁଛି, ଲୋ ବାପ ଆଗରେ ସଙ୍ଗସାବିତ୍ରୀ ବେ ଲଉଛି, ଆଉ ସ୍ୱାମୀ ଜୀବନୀର ଚରଣକୁ ନେଇ ହସୁଛି । ତୋ ମ'ଆ ହେଉଛି— ।

ମୋର ଅଶଙ୍କାର କୌଣସି କାରଣ ନଥିଲା । ମୁଁ ମଲ୍ଲୀକାକୁ ଖଣ୍ଡେ ହେଲେ ଚିଠି ଦେଇ ନଥିଲି । ମୁଁ ମଦ୍ଧା ହୁସିଆର, ସେଇଥିପାଇଁ ନୁହେଁ । ଆମର ଅନ'ବିଲ ସେକସ୍ ଭିତରେ ପ୍ରେମ ଫ୍ରେମର ଅବକାଶ ନଥିଲା । ଠିକଣା ସମସ୍ତଙ୍କୁ ମିଠା ମିଠା କଥା କହିବା ପ୍ରେମ ନୁହେଁ ଏବଂ ତା'ର ମଧ୍ୟ କୌଣସି ରେକର୍ଡ଼ ନଥିଲା । ତେବେ···ତା'ର ମାଆ କଣ ତା' ଆଗରେ କିଛି ଗପିଛି ? ମ'ନେ ମଲ୍ଲୀକା ! ହେ ଭଗବାନ ! ହୁଏତ ବିଶ୍ୱାସ କରିବ ଯେ ସୂର୍ଯ୍ୟ କେବଳ ପଶ୍ଚିମ ଦିଗରେ ଉଦୟ ହୋଇନାହିଁ, ଡେଙ୍ଗି ଡେଙ୍ଗିକା ଖେଳୁଛି; କିନ୍ତୁ ମଲ୍ଲୀକାକୁ ବିବେକ ଦଂଶିଥିବ, ଆହ ସେ ଦୁର୍ବଳ ମୁହୂର୍ତ୍ତରେ ସ୍ୱାମୀ କନ୍ୟା ଦୂରର କଥା ପିମ୍ପୁଡ଼ି ପିଲାଟିକୁ ମଧ୍ୟ କିଛି କହିଥିବ, ଏହା ମୁଁ ମରିଗଲେ ବ···। ଅସମ୍ଭବ !

ସମ୍ଭାବନାଟି ଏତେ ଉଦ୍ଭଟ ମନେ ହେଲାଯେ ମୁଁ ପ୍ରକାଶ୍ୟରେ ହସି ପକେଇଲି । ସେତେବେଳକୁ ଅବଶ୍ୟ ମାଆଝିଅ କେହି ପାଖରେ ନଥିଲେ । ବେଡ଼ରୁମ୍ ଖଟ ଉପରେ ବସି କେତେ କଣ ବକର ବକର ହେଉଥିଲେ । ଖୋଲା ଦରଜା ବାଟେ ମୁଁ ଦେଖୁଥିଲି ସେମାନେ କେମିତି ଲଗାଲଗି ହୋଇ ବସିଛନ୍ତି, ବକର ବକର ସଂଗକୁ ମାଇପି କାରବାର ଚାଲିଛି । ମାଆ ଝିଅ କାନରୁ ଝୁମୁକା ଉତାରିବା'ରେ ସାହାଯ୍ୟ କରୁଛି, ଝିଅ ମାଆକୁ ଚୁଡ଼ି ପିନ୍ଧାଉଛି ନା କଅଣ । ଚଣ୍ଡୀଗଡରେ ଖେଶାଲ ଚୁଡ଼ି ମିଳେ ବୋଲି ମୁଁ ତ ଜାଣି ନଥିଲି ? ମୋର ଦୁଃଖ ହେଲା ଯେ ମୋ ହସର ଶବ୍ଦ ତାଙ୍କ କାନକୁ ଶୁଭି ନଥିବ । ତାହାହେଲେ ହୁଏତ ତାଙ୍କ ମନକୁ ଲାଗିଥାଆନ୍ତା ଯେ ଏଇ ମାଆ-ଝିଅ ଦେଖାଦେଖିର ଦୃଶ୍ୟ ଅତିରଞ୍ଜିତ । ନ ହେବ କେମିତି ? ସେତେବେଳେ ମଲ୍ଲୀ ଓ ମଲ୍ଲିକଢ଼ି ।

ତା'ପରଦିନ ଝିଅ ପୁଣି ଗମ୍ଭୀରପଣରେ ଗାମ୍ଭୀର୍ଯ୍ୟ ଦେଖାଇ ମୋ' ପାଖକୁ ଆସିଲା । ସେତେବେଳକୁ ମୁଁ ବୁଝିନେଲିଣି ଯେ ଇଏ ବି ଗୋଟାଏ ଢଙ୍ଗ ।

ମାତୃଦଣ୍ଡ । ଲୋକେ, ଜାଣିବେ ଯେ ଆଧୁନିକା ପୂରାପୂର ବାଳିକା ନୁହେଁ । ପପ୍ ମ୍ୟୁଜିକ୍‌ରେ ମଧ୍ୟ ତାର ରୁଚି ବୋଲି ହୋଇଯାଏ ।

ତା'ର ଶ୍ୟାମତରଙ୍ଗ ସନ୍ଧ୍ୟାକୁ ଆରେଇ ଯାଉଥିଲି; କିନ୍ତୁ ତାର ଚଞ୍ଚଳ ଚାହାଣୀ ସନ୍ଧ୍ୟା ସାଙ୍ଗରେ ତାଳ ଦେଇ ସ୍ତବ୍ଧ ହୋଇ ଯିବାଟା ଭଲ ଲାଗିଲା ନାହିଁ । ମନେ ହେଲା ସେ ଢଙ୍ଗ ଛଡ଼ୁଛି ସିନା, ତା'କୁ ବାଧୁଛି । ଯାହାହେଉ ଯେ ଆସିଲାକ୍ଷଣି ମୋ ସାମନାରେ ବସିପଡ଼ିଲା । ଚାରିଆଡ଼କୁ ଅନେଇ ଆଉ କେହି ନାହାଁନ୍ତି ବୋଲି ଆଶ୍ୱସ୍ତ ହେଲାପରି ଗୋଟାଏ ନିଃଶ୍ୱାସ ମାରିଲା ଓ ଆରମ୍ଭ କଲା,—

"ଆପଣ ସେଇ ଯେଉଁ ଲେଖାଟିଏ ଲେଖିଥିଲେ ନା, ମୋର ସେ ବିଷୟରେ ଆଉଁ କିଛି ବୁଝିବାର ଅଛି ।"

"ଏଁ ?" ମୁଁ ଇଂଜିନିଅର ଲୋକ, ମୋର କେଉଁ ଲେଖା ସେ ଦେଖିବାକୁ ପାଇଲା ଓ ସେଥିରୁ କଣ ବୁଝିଲା ମୁଁ ଭାବି ପାରିଲି ନାହିଁ ।

ସେଇଠୁଁ ସେ ମୋତେ ଚେତାଇ ଦେଲା ଯେ ପ୍ରାୟ ଛଅ ମାସ ତଳେ ମୁଁ ଷ୍ଟେଟ୍‌ସ୍‌ମାନର ସମ୍ପାଦକଙ୍କୁ ଖଣ୍ଡେ ଚିଠି ଲେଖିଥିଲି । "ଅପେକ୍ଷା ସରିବ କେବେ ?" ଏହି ଶିରୋନାମାରେ ଚିଠିଟି ପ୍ରକାଶିତ ହୋଇଥିଲା ଏବଂ ସେଇଆ ତା' ବୁଝି ପଢ଼ି ମନେ ରଖିଛି । ଆଶ୍ୟର୍ଯ୍ୟଚକିତ ହେଲି । ଦୀର୍ଘଜୀବନରେ ସେଇ ଗୋଟିଏ ଯୋଡ଼ିଏ ଲେଖା (ପ୍ରଥମ ରମାକାନ୍ତ ମାଟ୍ରିକ୍‌ରେ ଫେଲ୍ ହେଲା ପରେ ମୁଁ ବୋର୍ଡର ପ୍ରିସ୍ପାପୋଷଣ ନୀତି ନେଇ ଆଉ ଗୋଟିଏ ଚିଠି ଅମ ସ୍ଥାନୀୟ କାଗଜକୁ···ପଠେଇଥିଲି, ମୋର ମନେ ଅଛି, ଯେଉଁଥିରୁ ମୋର ସମାଜଚେତନା ସ୍ପଷ୍ଟ ଜଣା ପଡ଼ିବ । ଏବେକା ଚିଠିରେ ସ୍ୱାର୍ଥର ସାମାନ୍ୟ ଅଛି ଗନ୍ଧ ବୋଲି ମଧ କେହି କହିପାରିବେ ନାହିଁ । ଆମ ମାଳୀର ସ୍ତ୍ରୀ ମୋର କିଏ ? ତାର ଅସାଧ୍ୟ ରୋଗ, ଅପରେସନ୍ ଛଡ଼ା ଅନ୍ୟ ଗତି ନାହିଁ, ତଥାପି ସରକାରୀ ଡାକ୍ତରଖାନା କେମିତି ତାକୁ ବାରମ୍ବାର ଆଶା ଦେଇ ଫେରାଇ ଦେଲା, ଗାଆଁରେ ପିଲାକୁଆଙ୍କୁ ପକେଇ ଦେଇ ଜମିବାଡ଼ି ବନ୍ଧାଛନ୍ଦା କରି ଆସିଲା ପରେ ନାହିଁ ପଦ ଶୁଣିବାକୁ ପଡ଼ିଲା, ସେହି ବିଷୟ ନେଇ ମୁଁ ଲେଖିଥିଲି । ଶେଷକୁ ଧାଡ଼ିଏ କ୍ରୋଧ ଥିଲା । ଲେଖିଥିଲି– ଗରିବ ଲୋକର ଅପେକ୍ଷା କଣ ସରିବ ନାହିଁ ? ଚିଠିର ଉଦ୍ଦେଶ୍ୟ କେତେଦୂର ସାଧିତ ହେଲା କହି ପାରିଲି ନାହିଁ । ତେବେ ରୋଗିଣୀର ଅପେକ୍ଷା ସରିଗଲା । ଦିନେ ମାଳୀ ମୋ ଆଗରେ ଅସଭ୍ୟଙ୍କ ପରି ଭୋ ଭୋ ହୋଇ କାନ୍ଦିଲା । କହିଲା—"ଆଜ୍ଞା ନିଉଆର ମାଆ ଚାଲିଗଲା । ବୃନ୍ଦାବତୀଙ୍କ ପାଖରେ ଧକ୍ ଧକ୍ ହୋଇ ଧାନ୍ତ କରି ପକେଇଲା, ଛେଳି ଛେଳି ରକ୍ତ···ମୁଁ ସମ୍ପାଦକଙ୍କ ପାଖକୁ ପୁଣି ଗୋଟିଏ ଚିଠି ଲେଖିବାର ଆବଶ୍ୟକତା ମନେ କଲି ନାହିଁ ।

ଘଟଣାର ବଶଦ ବ୍ୟାଖ୍ୟା ବାଣ୍ଟିଦେଲ ଏଇ କଅଣ ? ଲକ୍ଷ୍ମୀ ମାନ ସିଂହର ସ୍ଥିର ଗୃହାଣୀ କଷ୍ଟ ପାଇଲ ପରି ବଶୁଛୁ, କଡ଼ା ମୋଟେ ନୁହଁ; କନ୍ତୁ ଏମିତ ଗଲଗଲ ପରି ମନେହେଉଛୁ କାହିଁକ ? ସତେକ ମୋର ଆଉ ଖଣ୍ଡେ ଚଠି ଲେଖିବା ଉଚତ ଥିଲ !

ନା, ସେ କଷ୍ଟ ପାଉଛୁ । ଏକା ସାଙ୍ଗରେ ଅନେକ କଥା କହିବାକୁ ଚାହେଁ, ପାରୁନାହିଁ । ଯଥେଷ୍ଟ ଅନ୍ଧାର ହୋଇଗଲଣି, ଏଥର ଆଲୁଅ ଜଳେଇଦେବା କଥା । ଆଲୁଅରେ ତା'ର ନଜ ରୂପ ଦଶିଯିବ, ମୁହଁରେ ଗଣି ଗଣି ବ୍ରଣ, ମାଆ ପରି ଓଠ, ଓଠରେ ସନ୍ତୋଷର ଗାର କଟା ହୋଇଛୁ · ଗୃହ'ଣୀର ଝ'ଡ଼ି ରହିବ ନାହିଁ । ହେଲେ ମୁଁ ଆଲୁଅ ଜାଳେଲ ନାହିଁ । ସ୍ୱପ୍ନ ଜୀବନରେ ଆଉ କେତୁଟା ମୁହଁ ସତ୍ତ ଆସିବ ଓ ତା'ର ମାୟା, ଭ୍ରମ,—ଆଉ ଟିକଏ ଯାଉ ନା, କ୍ଷତ କଅଣ ଅଛୁ ?

ଝିଅ ମୋ ପାଖକୁ ଲଗି ଆସିଲ । ତମେଇ ଅଛ, ତମକୁ ଭସେଇ ନେବ ବୁଡ଼େଇ ଦେବ ଏହିପରି ଗୋଟାଏ ଉଚ୍ଛ୍ୱସିତ ଅସମ୍ଭାଳ ସ୍ୱରରେ କହିଲ—

"ଘନ ଦାଦା ! ମୁଁ ମଧ୍ୟ ଦେଖିଛୁ । ଆମର ଏଇ ଦିଲ୍ଲୀର ବିଖ୍ୟାତ ହସପିଟାଲ, ଭି ଆଇ. ପି. ମାନଙ୍କର ହସ୍ପିଟାଲ, ଏଠିକର ଅନ୍ୟ ରୋଗୀମାନେ କେଉଁଠି ଅପେକ୍ଷା କରନ୍ତି ଜାଣିଛ ? ରାସ୍ତା କଡ଼ରେ ! ଭିକାରୀଙ୍କ ପରି । କାହିଁକନା ଥରେ ଫେରିଗଲେ ଠିକଣା ସମୟକୁ ଆସି ହେବ ନାହିଁ, ବେଡ଼୍ ଭର୍ତ୍ତି ହୋଇଯିବ । ମୁଁ ଦେଖିଛୁ, ମୁଁ ତାଙ୍କ ସାଙ୍ଗରେ କଥା କହିଛୁ—"

ମୁଁ ଆବାକ୍ ହୋଇ ଶୁଣିଲ । ସେ ହଠାତ୍ ଉଠିଯାଇ ଆଲୁଅ ଜଳେଇ ଦେଲ । ମୁଁ ବ୍ୟଥିତ ଦେଶପ୍ରେମୀଙ୍କ ପରି ମୁଣ୍ଡ ତଳକୁ କଲ, ଟେବୁଲ୍‌ରେ ଆଙ୍ଗୁଳି ଚଳେଇଲ ।

"ଜଣକ ନାଆଁ ଥିଲ ଧନରାମ୍ । ତା'ର ସ୍ତ୍ରୀ, ବୋହୂ, ଆଉ ନାତକୁ ନେଇ ଆସିଥାଏ । ନାତକୁ ବର୍ଷେ ଖଣ୍ଡେ ହେବ, ବେଶ ଗୋରା ଦେଖିବାକୁ, କନ୍ତୁ ଦେହସାକ ଚକା ଚକା ନାଲ ଦାଗ ଭର୍ତ୍ତି ହୋଇଛୁ । ବୁଢ଼ା କହିଲ···ଡାକ୍ତର କହୁଛନ୍ତି ଇଏ କଛୁ ନୁହେଁ, ଅସଲ ରୋଗର ସାମାନ୍ୟ ଲକ୍ଷଣ । ସାତଦିନ ପରେ ଆସ, ଏଇକ୍ଷଣି ବେଡ୍ ନାହିଁ । ଦ୍ୱିତୀୟଥର ଗଲାରୁ କହିଲେ ଏଇକ୍ଷଣି ଷ୍ଟ୍ରାଇକ୍ ଚାଲିଛୁ, ଆମେ କଣ କରିବୁ ? କାଲ ଯାଇଥିଲୁ ସେ କହିଲେ ଆହୁରି ମାସକ ପରେ । ମୁନ୍‌ନାର ମାଆ କାନ୍ଦ ପକେଇଲ । ଯେଉଁଠ୍ ତାଙ୍କ ଭିତରୁ ଗୋଟାଏ ମାଇକିନିଆ ଛାଟି କରି ଉଠିଲ । କହିଲ ତୋ ପୁଅ ଏଇକ୍ଷଣି ମରିଯାଉଛୁ ନା' କଅଣ ?······ ଘନଦାଦା, ଆପଣ ଭାବିପାରିବେ ନାହିଁ !"

ମୁଁ ମନେ ମନେ ହସିଲି । ବୁଢ଼ା ଶୁଅକୁ ପାଠ ପଢ଼ାଉଛି । ପିଲାର ମାଆ ଅସଭ୍ୟଙ୍କ ପରି ହାଉଳି ଖାଇଥିବ, ମାଲୀ ଯେମିତି ହୋ' ହୋ' ହେଲା । ତାଙ୍କୁ କଣ ସମସ୍ତେ ସହିପାରନ୍ତେ, ମୋ ପରି ?

"ପିଲାଟା ଉଃ ଆଃ ହେଉଥାଏ । ରୋଗ ଛଡ଼ା ଦିଲ୍ଲୀର ପ୍ରଚଣ୍ଡ ଗରମ, ଝାଳ୍ପି ପିଟୁଥାଏ (ହସିଲ୍ ତୁ ସେଠି ରହୁଥିଲୁ କାହିଁକି ? ନିଜକୁ ପରଖୁଥିଲୁ ? ଏକ୍ସପିରମେଣ୍ଟ କରୁଥିଲୁ ?) କିନ୍ତୁ ତା'ର ମା'ର ମଝିରେ ମଝିରେ କଣ ଗୋଟାଏ ହଚଡ ଶବ୍ଦ କରୁଥାଏ ଯେ ପିଲା ହସି ପକଉଥିଲା । ବୁଢୀ, ଶୁକୁଟୀ, ସେ ମଧ୍ୟ ତାଙ୍କ ଦେଖ ଦେଖି ହସୁଥିଲା । ହେଲେ ଆଶ୍ଚର୍ଯ୍ୟ କଥା ବୁଢ଼ା ମୁହଁରେ ଟିକଏ ବୋଲି ହସ ନଥିଲା । ହସ ନ ଥିଲା କି ଦୁଃଖ ରାଗ, କିଛି ଥିଲା ପରି ଦିଶୁ ନଥିଲା ·।"

ହସିବ କେମିତି ? ସେ ସବୁ କାଳସର୍ପଙ୍କୁ ଛଡି କରିଛି ? ଜଣାଶୁଣା କ୍ୟାରେକ୍ଟର୍ । ଗୋପୀବାବୁଙ୍କ ଶୁକ୍ଟ୍ ଜାନ, ତାରାଶଙ୍କରଙ୍କ ଡାରଣୀ, ହାର୍ଡିଙ୍କର— । ତୁ ସାଇନ୍ସ ନେଇଛୁ କି ନା, ସାହିତ୍ୟ ପଢ଼ିନୁ ଭଲକରି, ମଣିଷମାନଙ୍କୁ ଚହ୍ନି ପାରୁନାହୁଁ ।

"ଏମିତି କେତେ ଦେଖିଛି । ଆଉଥରେ ଦିଲ୍ଲୀରେ କନ୍‌କନିଆ ଶୀତରେ (ଭଲକରି ଯୋଡ଼ଘାଡ଼ ହୋଇ ଯାଇଥିଲୁ ନା ସେଠି ମଧ୍ୟ ଏକ୍ସପିରମେଣ୍ଟ କରୁଥିଲୁ ?) ଗୋଟିଏ ଝିଅକୁ ଦେଖିଥିଲି, ମୋର ବୟସର ହେବ, ସାଙ୍ଗରେ ଗୋଟାଏ ମରଦ, ତା'ର ସ୍ୱାମୀ କି ଆଉ କିଅଣ । ମୋତେ ଡାକ୍ତରାଣୀ ବୋଲି କାହିଁକି ଭାବିଲା କେଜାଣି, ମୋ ପଛେ ପଛେ ଗୋଡ଼ାଇଲା । ସଁ ସଁ ହୋଇ ନେହୁରା ହେଲା, ଏଣେ ଜାଣୁଥାଏ, ତା' ଭାଷା ବୁଝି ହେଉ ନଥାଏ, ଯେ ମୋତେ ହାସ-ପାତାଳକୁ ନେଇଯାଅ··· ।

ଏତେବେଳଯାଏଁ ମୁଁ ତା' ମୁହଁକୁ ଭଲକରି ଚାହିଁ ନଥିଲି । ମଲ୍ଲୀକାର ଝିଅ ବୋଲି ନୁହେଁ । ଗୋଟାଏ ଭାବ ତରଳ ଚପଳାର ଉଦ୍‌ଗିରଣ, ମୋ ଦୀର୍ଘ ଜୀବନରେ କେତେ ଯୁବକ ଯୁବତୀଙ୍କୁ ଏମିତି ଗର୍ଜିବାର, ଛଳଛଳ ଗଦ୍‌ଗଦ୍ ହେବାର ଦେଖିଛି, ଭୁଚ୍ଛା ସେଣ୍ଟିମେଣ୍ଟ୍, ମିଛୁଟାରେ ତାର ତେହେରାକୁ ଅନେଇ ଲାଭ ନାହିଁ । କାଳେ ମୁଁ ମଧ୍ୟ ସେଣ୍ଟିମେଣ୍ଟାଲ୍ ହୋଇପଡ଼ିବ, ଏଇଥି ପାଇଁ; କିନ୍ତୁ ସେ ଯେତେବେଳେ କହିଲା ଯେ କୋଉ ରୋଗୀ ତାଙ୍କୁ ଡାକ୍ତରାଣୀ ଭାବି ତା ପଛରେ ଗୋଡ଼େଇଲା, ମୋତେ ବୁଦ୍ଧି ଦିଶିଗଲା । ପଦକରେ ଏଇ ସୁଅକୁ କାଟି-ଦେଇ ପାରିବ, ତା'ର ମୁହଁକୁ ବନ୍ଦ କରିଦେଇ ପାରିବ । କିନେ ତା' ବାପା ମୋତେ କହିଥିଲା, ମୁଁ ଜାଣିଛି ।

ସେଇଠୁ ମୁଁ ଦମ୍ଭରେ ତା' ଆଡ଼କୁ ଅନେଇ କହିଲି—

"ଇଲେ, ତୁ ହତପତିକା ଡାକ୍ତରଣୀ ହେବୁ ପରା,—ଆଉ ଚିନ୍ତା କଅଣ ? ଏଇ ଯେତେକ ରୋଗବଇରାଗ ଦୁଃଖ, କଷ୍ଟକୁ ସିଧା କରିଦେବୁ, ନାହିଁ ?"

ମୋ କଥାରେ ବିଦ୍ରୂପ ନଥିଲା । ମାନେ ତା' ପ୍ରତି ନୁହେଁ । ଥିଲେ ଥିବ ଚିରଚରିତ ଯୌବନ ପ୍ରତି ।

କିନ୍ତୁ ଉତ୍ତର ନ ଦେଇ ସେ ମୋ ଆଡ଼କୁ ଏମିତି ଅନେଇଲା ଯେ ମନେ ହେଉଥାଏ ମୁଁ ତାକୁ ଖୁନ କରି ଦେଲି ! ନା, ଖୁନ ବୋଲି କହିବା ଠିକ୍ ହେବ-ନାହିଁ, ସେଥିରେ ବି ତରଫର ରାଗ ଥାଏ । ସ୍ତା'ର ଆହତ ଚାହାଣୀରେ ଅଷ୍ଟର୍ଫି ଥିଲା ମାତ୍ର—ଘନଦାଦା, ଶେଷକୁ ଆପଣ ବି ? ଆଚ୍ଛା କଥା, ଘନଦାଦା ତୋର କଅଣ କି ? ହୋଇପାରେ ମୁଁ ତୋ ବାପାର ଘନିଷ୍ଠ ବନ୍ଧୁ, ଘନିଷ୍ଠତା ଗାଢ଼ୁଁ ଗାଢ଼ୁଁ ମାଡ଼ିଗଲା, ତମେ ସବୁ ଯେତେବେଳେ କଲିକତାରେ ଥିଲ, ତୁ ବର୍ଷକର ହୋଇଥିଲୁ (ସେଇଠି ମଧ୍ୟ ତୋ ମାଆ ସଙ୍ଗରେ···), ତା' ବୋଲି ମୁଁ କଣ ତୋର ଠେକା ନେଇଛି ? ଯାହା ହେଉ ମୁଁ ତୋତେ ଥଟ୍ଟା କରୁ ନ ଥିଲି ମ, ତୋ' ଭଲ ପାଇଁ କହୁଥିଲି, ତୁ ମୋର ଶତ୍ରୁ ନୁହଁ; କିନ୍ତୁ ସେ ମୋର ଅକୁହା ଆଶ୍ୱାସନାକୁ ଗ୍ରାହ୍ୟ କଲାନାହିଁ । ଫାଟି ପଡ଼ିବା ପୂର୍ବରୁ ଚାହାଣୀର ମୂର୍ତ୍ତିକୁ ଲମ୍ବେଇଲା । ତମେ ବ୍ୟାଧ, ମୁଁ କପୋତ, ଏମିତି ଗୋଟାଏ ଭାବ ଦେଖାଇଲା । ତା'ର ଆଖି ଡୋଳା କଳା ନା ଢାଉଥ, ପ୍ରକାଶ ମାଆ ପରି ଟଳଟଳ ନା ବାପା ପରି ଚଇଁଚଇଁ ଅବା ଏକ ଅନନ୍ୟ ଉଜ୍ଜ୍ୱଳତା, ବିଚାର କରିବାକୁ ସମୟ ମିଳିଲା ନାହିଁ । ଶେଷକୁ ତା'ର ଚାହାଣୀ ଉଷତ୍ର ନଇଁ ଆସିଲା, ଆଲୁଅର ଭୋଲ୍ଟେଜ କମିଗଲା, ଅଥବା ମୋର ଆସନ୍ନ ବୁଢ଼ାପଣ ମୋତେ ହଠାତ୍ ଘାରିଦେଲା କହି ହେଉନାହିଁ. ମୋର ଗୋଟାଏ ଅଦ୍ଭୁତ ଧାରଣା ହେଲା । ମୋର ମନେ ହେଲା ଯେ ମେଞ୍ଚଡ଼ ଟୋକୀ ମୋତେ ଦୟା ଦେଖାଉଛି ! ସତେକି ମୁଁ ବ୍ୟାଧ ମଧ୍ୟ ନୁହେଁ, ବାଲ୍ମୀକି; କିନ୍ତୁ ରାମାୟଣ ଲେଖି ପାରିବ ନାହିଁ ! ସେ ମୋତେ ଚିହ୍ନିଛି ।

ସେଇଠୁ ସେ ଫାଟି ପଡ଼ିଲା । କହିଲା,—

"ଘନଦାଦା ! ଆପଣ ଭୁଲ୍ ବୁଝିଛନ୍ତି । ମୁଁ ଡାକ୍ତରଣୀ ଫାକ୍ତରଣୀ କିଛି ହେବ ନାହିଁ । ନର୍ସ, ଗ୍ରେଟ ଡ଼ାକ୍ତର ବଡ଼ ଡାକ୍ତର, ସମସ୍ତେ ସମାନ, ପେଶାଦାର । ମୁଁ ଦେଖିଛି ସେମାନେ ରୋଗୀମାନଙ୍କୁ କେମିତି ଅନାନ୍ତି । କିଏ ବିଛଣାରୁ ଉଠି ବସି ଗଥଁ ଗଥଁ ହେଉଛି, କିଏ କଥା କହି ନ ପାରି ଠାରୁଛି, ସାଲାଇନ୍ ସରିଗଲା କି କଅଣ ହେଲା, ତାଙ୍କର ବାଟ ଦେଇ ଗୋଟାଏ ରୋଗୀ ଗ୍ରେଟେଇ ଗ୍ରେଟେଇ ଚାଲି, ହାତ ଦେଖେଇ କଣ ଗୁଡ଼ାଏ କହିଗଲା ପାଗଳଙ୍କ ପରି—ସମସ୍ତେ ରୋଗୀ

ମାନ, ପୁଣି ଶିଶିର, ଅଧମ, ତାହାଙ୍କୁ ପିତୃ ଆଖିରେ ଅନେଇବାର ନୁହେଁ । ମୁଁ ସେମିତି ହେବ ନାହିଁ ! ହେବାକୁ ଚାହେଁ ନାହିଁ !—"

କଣ ହେବୁ ତା' ହେଲେ ? କଣ ହେବୁ ??

ମୋର ଜିଜ୍ଞାସା ତା' ପାଖରେ ପହଞ୍ଚିଥିବ ନିଶ୍ଚୟ; କିନ୍ତୁ ସେ ମୋତେ ଯୁକ୍ତି କରିଦେଇନାହିଁ । ସତେ କି ଭାବି ନେଲା ଯେ ମୁଁ ଏତେଟା ନିର୍ବୋଧ ନୁହେଁ । ସେ କେଉଁ ଭୂମିକାରେ ଆତ୍ମପ୍ରକାଶ କରିବ, କଲେ ତା'କୁ ଶୋଭା ପାଇବ—ମାଷ୍ଟରଣୀ, ଘରଣୀ, ସମାଜ ସେବିକା, ନିକ୍‌ସନ୍ଲଇଟ୍ କି କଅଣ, ମୋର ଜାଣିବା ଉଚିତ । ଯେମିତିକା ସେ ଚାହୁଁ କି ଚାହୁଁ, ଘନଶ୍ୟାମ ପ୍ରଧାନର ଗୋଟାଏ ଦାୟିତ୍ୱ ଅଛି, ଲକ୍ଷ୍ମୀ ମାନସିଂହର କେଉଁଥିର୍ କଅଣ ହେଲେ ଭଲ ହେବ, ସୁନ୍ଦର ଦିଶିବ ।

ସେ ସ୍ଥାନ ତ୍ୟାଗ କରି ଚାଲିଗଲାବେଳେ ମୁଁ ଅବଶ୍ୟ ଚୁପ୍ ହୋଇଥିଲି; କିନ୍ତୁ ମୋର ମତନପତ୍ର୍ ନାହିଁ ମୋ ଓଠରେ ସାମାନ୍ୟ ସହାନୁଭୂତିର ସ୍ମିତହାସ୍ୟ ଥିଲା, ନା ସେ କାଳେ ତା'କୁ ବିଦ୍ରୂପ ବୋଲି ଭାବିବ, ମୁଁ ଗୁମ୍ ହୋଇ ବସିଥିଲି, ଅତିଥିସୁଲଭ ଭଦ୍ରତାଟିକ ଭୁଲି ଯାଇଥିଲି ।

ଯାହା'ହେଉ ପରବର୍ତ୍ତୀ ଯୋଡ଼ାଏ ଦିନ ସୁରୁଖୁରୁରେ କଟିଲା । ମୌସୁମୀ ଆସିବାକୁ ଆହୁରି ଉଚ୍ଛନ୍ନ ହେଲା, ଚେଣ୍ଟୁ ହାଉଆ ମେଘ ଓଗେର ଆପଣା ସ୍ନିଗ୍ଧତାର ଅଧିକ ଆଡ଼ମ୍ବର ଦେଖାଇଲେ । ମୁଁ ଯେଉଁଥିପାଇଁ ଦିଲ୍ଲୀ ଆସିଥିଲି ସେଇ କାମ ମଧୁଭାଇର ସାହାଯ୍ୟ ଓ କର୍ତ୍ତୃପକ୍ଷଙ୍କ କୃପାରୁ ସମ୍ପନ୍ନ ହେବାକୁ ବସିଲା । କାମ ହେଉଛି କଅଣ ମୁଁ କି କଲିକତାରେ ଯେଉଁ ଇଂରେଜିକରଙ୍କ କମ୍ପାନୀରେ ଅଛି, ତାଙ୍କର ଗୋଟାଏ ବଡ଼ ସରକାରୀ କଣ୍ଟ୍ରାକ୍ଟ ଅଟକି ଯାଇଥିଲା । ଦିଲ୍ଲୀବାଲା ଗୋଡ଼ ଲମ୍ବାଉଥିଲେ । ମୁଁ ଭାବିଲି—ମଧୁଭାଇ ଦିଲ୍ଲୀରେ ଥାଉଁ ଥାଉଁ ମୁଁ ଏତିକି କରେଇ ପାରିବି ନାହିଁ ? ମଧୁଭାଇ ଅନ୍ୟ ମିନିଷ୍ଟ୍ରିରେ କାମ କରେ; କିନ୍ତୁ ତା'ର ନିଜ ଲୋକ ସବୁଠି ଅଛନ୍ତି । ତା'ର ଦୁର୍ଦ୍ଦାନ୍ତ ଦୋସ୍ତିଭାବ, ଆସମାନ୍‌ରୁ କଇଁଆ ତୋଳି ଆଣି ଦେଇ ପାରିବାର ଭଙ୍ଗୀରେ ଭାସିଯିବା ଲୋକ କମ୍ ନାହାନ୍ତି । ଭୁଲିବାକୁ ହେବ ନାହିଁ ଯେ ମଲ୍ଲୀକା ମଧ୍ୟ ଭାସି ଯାଇଛି । ବାକି ଯାହା କରିଛି, ହାତ ଗୋଡ଼ ହିଲେଇ ନିଃଶ୍ୱାସ ମାରିଲା ପରି । ନା, ନା, ମୁଁ ତା'ର ସପକ୍ଷରେ କହୁନାହିଁ । ମଧୁଭାଇର ଅଧିକନ୍ତର ଗୁଣଗାନ କରିବା ହିଁ ମୋର ଉଦ୍ଦେଶ୍ୟ ।

ପ୍ରୀତିକର ପରିବେଶରେ ବିଶେଷ ଲକ୍ଷଣ ଥିଲା ଏଇ ଯେ ଲକ୍ଷ୍ମୀ ମାନସିଂହ ନିର୍ମଳ ମନେ ହେଉଥିଲା । ସେଦିନର ସନ୍ଧ୍ୟା ଗୁଳୁଗୁଳିଆ ନ ଥିଲା କି ? ସେଇଥିପାଇଁ ଅଳ୍ପବୟସ୍କୀର ଭାବତରଳତା ଅବାଟରେ ମାଡ଼ି ଯାଇଥିଲା । ନହେଲେ ଦେଖନ୍ତୁ,

ସେ ପୁଣି ସେମିତ ତା' ମାଆ ପାଖରେ ଗେହ୍ଲେଇ ହେଉଛି । ବାପା ସାଙ୍ଗରେ ବଡ଼ ମଣିଷଙ୍କ ପରି ଆଲୋଚନା କରୁଛି ଯେ ପ୍ରେସିଡ଼େଣ୍ଟ ସିଷ୍ଟମ ଭଲ ନା ପାର୍ଲିଆମେଣ୍ଟ ସିଷ୍ଟମ ଭଲ, ତାତ ଟିକିଏ ହେଲେ ନାହିଁ । ରେଡ଼ିଓରେ ପପ୍‌ସଙ୍ଗୀତର ସଦ୍ୟତମ ତାଲିକା ନାଜିଆ ହୁସେନ୍‌ର ଗୀତ ସାଙ୍ଗକୁ ତାଳ ଦେଉଛି । ଅବଶ୍ୟ ମୁଁ ତାକୁ ବେଳେବେଳେ ଚୁପ୍ ହୋଇ ଆକାଶକୁ ଅନେଇ ରହିବାର ଦେଖିଛି, ସତେ କି ସେଥିରେ ଥିବା ଗ୍ରେଟ ଅକ୍ଷରମାନଙ୍କୁ ଚିହ୍ନୁଛି, ପଢ଼ୁଛି; କିନ୍ତୁ ଶିକ୍ଷିତ ସମାଜର ଲୋକମାନେ କଣ ମଝିରେ ମଝିରେ ସେମିତ ଅନାନ୍ତି ନାହିଁ ? ଖବୁକ ହୁଅନ୍ତି ନାହିଁ ? ମୋଟ ଉପରେ ଝିଅଖଣ୍ଡିକୁ ନେଇ ଯେଉଁ ଆଶଙ୍କା ଉଦ୍ରେକ ହୋଇଥିଲା, ମୁଁ ତାକୁ ଅମୂଳକ ବୋଲି ସ୍ଥିର କରିନେଲି । ଭାବିଥିଲି ତାକୁ ବୁଝେଇଦେବି ଯେ ଗରିବଗୁରୁବାଙ୍କ ପ୍ରତି ସହାନୁଭୂତି ଭଲକଥା; କିନ୍ତୁ ସେଥିରେ ଖାରସାମ୍ୟ ହରେଇ ବସିଲେ ବିପଦ, ଯେ ସେମାନେ ଯେଉଁ ରେଟ୍‌ରେ ବଢ଼ି ଚାଲିଛନ୍ତି, ତାଙ୍କ ପାଇଁ ଯେତେ ଡ଼ାକ୍ତରଖାନା ବସେଇଲେ ବେଡ୍ ଲଗେଇଲେ ଲାଭ ନାହିଁ. ଆବଶ୍ୟକ ହେଲେ କହିବ ଯେ ସେମାନେ ମଧ୍ୟ ପ୍ରେମ କରନ୍ତି, ଚୋରି ପ୍ରେମ କରନ୍ତି । ଯଥା— ତମ ଚାକରାଣୀ, ମିଛ କହନ୍ତି, ବଦମାସି କରନ୍ତି, ଉଚ୍ଛାଟାକୁ ପାଟି କରନ୍ତି, ଡାକ୍ତର ମାନଙ୍କୁ, ଅଫିସରମାନଙ୍କୁ ବଦନାମ କରନ୍ତି ଇତ୍ୟାଦି । ଭାଗ୍ୟ ଭଲ ମୋତେ କଷ୍ଟ କରିବାକୁ ପଡ଼ିଲା ନାହିଁ । ସମ୍ପାଦକଙ୍କ ପାଖକୁ ଲେଖିଥିବା ଚିଠିର ମହାତ୍ମ୍ୟ କ୍ଷୁର୍ଣ୍ଣ ହେଲା ନାହିଁ ।

ମୋର ଦିଲ୍ଲୀ ରହଣିର ଶେଷଦିନ ସନ୍ଧ୍ୟାରେ ଏକ ସ୍ୱପ୍ନବିସ୍ମୃଦରତା ଉଦ୍‌ଭାସିତ ହୋଇ ଉଠିଥିଲା । ଏକେ ମୌସୁମୀର ବର୍ଷା ଆରମ୍ଭ ହୋଇ ଯାଇଥିଲା । ପୂର୍ବାହ୍ନରେ ଖାଙ୍କି ପଡ଼ି ଉତ୍ତୁଳୁଥିଲା, ଅପରାହ୍ନରୁ ଝିର ଝିର ଝରୁଛି, ରହି ରହି ଗର୍ଜୁଛି ଝରକା କାଚରେ ବାଜା ବଜଉଛି । ସତେ କି ସେ ଜାଣେ ଯାତ୍ରା ସରିବାକୁ ଅନେକ ଦିନ ଅଛି, ଏଇକ୍ଷଣି ଏଥିରୁ ଟିକିଏ ସେଥିରୁ ଟିକିଏ ଅଭ୍ୟାସ କରିନେଲେ ଭଲ । ମାନସିଂହ ପରିବାର ଯଦିଓ ଶାନ୍ତ ପ୍ରକୃତିର ଲୋକ । ଆଷାଢ଼ର ପ୍ରଥମ ବର୍ଷାରେ ସାମାନ୍ୟ ଆସ୍ୱସ୍ତିର ସମ୍ଭାବନା ମଧ୍ୟ ଧୋଇ ହୋଇଯାଇଥିଲା । ଡ଼ାଇନିଙ୍ଗ ଟେବୁଲ । ଆହାର, ସେଇଠୁ ନିଦ୍ରା, କାମିକା ପୂର୍ଣ୍ଣ ଜୀବନର ପାଉଣା (ଯେମିତିକି ପାଗ ହୋଇଛି ମଧୁଭାଇ ଆହାର ପରେ ବିହାର କରିପାରେ, ତାର ଦୃଶ୍ୟ ମନକୁ ଆସିବା ସତ୍ତ୍ୱେ ମୋର ହେଟ୍ ବଢ଼ିବାକୁ ନଥିଲା) କଣ୍ଟ୍ରାକ୍ଟର କପି ମୋ ପକେଟ୍‌ରେ ଥିଲା, ମଧୁଭାଇର ମେହେରବାନି; କିନ୍ତୁ ଲୋକଟାର ବଡ଼ପଣ ଦେଖ, ସେ ବିଷୟରେ ପଚରାଉଚରା କରି ମୋତେ କୃତଜ୍ଞତା ଜଣାଇବାର ଅଡ଼ୁଆରେ ପକାଇବାକୁ ଚାହୁଁ ନ ଥିଲା । ଜଣାଇ ଦେଉଥିଲା ଯେ ମୁଁ ସାଧାରଣ ବନ୍ଧୁ ନୁହେଁ, ଭାଇ । ମୁଁ ଭଲ ପାଏ ବୋଲି ଭାବି ସେ ମୋ ପାଇଁ ଗୁନ୍ଦମାଛ କିଣିକରି ଆଣିଥିଲା । ଏଇଠି ଅବଶ୍ୟ

ତା'ର ଭୁଲ୍ ହେଲା, କାରଣ ମୋ ସ୍ତ୍ରୀ କମଳା ଶୁଦ୍ଧ ମାଛ ଭଲ ପାଉଥିଲା, ମୁଁ ନୁହେଁ । ମୋତେ ସେ ମାଛ ଗନ୍ଧାଏ । ମଲ୍ଲିକା ଜାଣେ, ଯେହେତୁ ବଙ୍ଗର ଅନ୍ତଃପୁର ରନ୍ଧାଘରେ ମାଛମାଂସର ଉପଯୋଗୀ ଭୂମିକା ଥିଲା; କିନ୍ତୁ ତାର' ବୁଦ୍ଧି ବିଚାରକୁ ଧନ୍ୟ କହିବ, ସେ ମଧୁଭାଇର ଭୁଲ ଧାରଣାକୁ ଭଙ୍ଗାଇ ଦେଲାନାହିଁ । ସ୍ୱାମୀଙ୍କ ସମ୍ମାନରେ ଆଞ୍ଚ ଲାଗିବ, ଖାଲି ସେଇଥିପାଇଁ ନୁହେଁ । ମୋର କମଳା ମନେପଡ଼ିବ, ମୋ ମନରେ କଷ୍ଟ ହେବ, ଆନନ୍ଦ ସମ୍ପର୍କରେ ଦୁଃଖକଷ୍ଟର ଅବକାଶ ନାହିଁ—ସେଇଥିପାଇଁ । ମୋର ସଂଯମକୁ ମଧ୍ୟ ପ୍ରଶଂସା କରିବା ଉଚିତ୍ । ମୁଁ ମଲ୍ଲିକାକୁ ବାନ୍ଧିଲା ପରି ପଦେ କଥା କହି ନଥିଲି । ଆସନ୍ତା ସକାଳେ ମୁଁ କଲିକତା ଫେରିଯିବି ହେତୁ ତାକୁ ଚରିତାର୍ଥ କରିବାର ସୁଯୋଗ ପୁଣି କେବେ ମିଳିବ, ଏଭଳି ମନୋବୃତ୍ତିକୁ ପ୍ରଶ୍ରୟ ଦେଇ ନଥିଲି । ଏଇ ହେତୁ ମୋର ଗୋଟିଏ ଉଜ୍ଜ୍ୱଳ ନିଧି, ଆସେଟ୍, ଯଥା ସ୍ଥାନରେ ମହଜୁଦ୍ ଅଛି—ତାକୁ ନଷ୍ଟ କରିବ କାହିଁକି ?

ଏଇ ମନୋରମ ଶେଷ ଦୃଶ୍ୟରେ ମାନସିଂହ ଦମ୍ପତିଙ୍କ ଏକମାତ୍ର ସନ୍ତାନ ଲକ୍ଷ୍ମୀ ମଧ୍ୟ ମିଶି ଯାଇଥିଲା ପରି ମନେହେଲା । ମୋର ସାମ୍ନାସାମ୍ନି ବସିଥିଲା ସିଏ, ମୁଁ କିଣ ତାକୁ ଲକ୍ଷ୍ୟ କରିନାହିଁ ? ମଧୁଭାଇ ଯେତେବେଳେ କଥା ପଡ଼ୁପଡ଼ୁ କହିଲା ଯେ ଲକ୍ଷୀମା (ଝିଅର ଗେହ୍ଲା'ର ନାଆଁ ) ମେଡ଼ିକାଲ୍ ପଢ଼ିବ, ଦିଲ୍ଲୀରେ କମ୍ପା ଅଛି କେଉଁଠି, ମୁଁ ଭାବିଥିଲି ଝିଅ ଗୋପନରେ ମୋ ଆଡ଼କୁ ଚାହିଁବ, କିନ୍ତୁ ସେ କେବଳ ଚୁପ୍ ହୋଇ ରହିଲା । ଏଥିରୁ କିଛି ବୁଝିବାକୁ ହେବ ନାହିଁ ଯେ—? ବିଶେଷ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ମଲ୍ଲୀକା ତାଙ୍କ ଗୃହିଣୀକୁ ନେଇ ଗୋଟାଏ ମଜା କଥା କହିଲା ଓ ଝିଅ ରସବିନୋଦରେ ଯୋ'ଗ ଦେଇଛି ବୋଲି ମନେ ହେଲା । ମଜାକଥା' ହେଉଛି ଏଇ, ଯେ କେତେ ଦିନ ହେଲା ଗୃହିଣୀର ମୁହଁରେ ହସ ଉଭେଇଛି । ମଲ୍ଲୀକା ସାଙ୍ଗେ ସାଙ୍ଗେ ସଂଶୋଧନ କରି କହିଲା,—ଉଭେଇଥିଲା । ସେ ମାଲିକାଣୀଙ୍କ ସମେତ ସେତେକ ସାହାପଡ଼ିଶାଙ୍କୁ କହିଛି ଯେ ସ୍ୱାମୀ ତା'କୁ ଫେରାଇ ନେବ ବୋଲି କହିଛି, ଶାଢ଼ୀ, ଚୂଡ଼ି, କେତେ କଣ ପଠେଇଛି; କିନ୍ତୁ ଦିନ ପରେ ଦିନ ବିତିଗଲା, ସ୍ୱାମୀର ଦେଖାଦର୍ଶନ ନାହିଁ । କଥା କଅଣ ? ବୁଝୁ ବୁଝୁ ଜଣାପଡ଼ିଲା ଯେ ବିଜୁଳି ଚମକୁଛି ସିନା, ମେଘ ଉଠେଇବାର ପ୍ରଶ୍ନ ନାହିଁ । ଟେ.କା ମିଛ କହୁଥିଲା ବୋଲି ଭାବୁଛ କି ? ନା ନୁହେଁ । ସୁନ୍ଦର ସ୍ୱପ୍ନ ଦେଖୁଥିଲା ! ମଲ୍ଲୀକା ଏତିକି କହି କଥାରେ ମୁଣ୍ଡି ମାରିଲା ଓ ଆମେ ସମସ୍ତେ ହସି ପକେଇଲୁ । ମୋର ସ୍ପଷ୍ଟ ମନେ ଅଛି ଲକ୍ଷ୍ମୀର ଓଠରେ ମଧ୍ୟ ସ୍ମିତହାସ୍ୟ ଦେଖା ଦେଇଥିଲା ।

କ୍ରମଶଃ ମୋର ମନେ ହେଲା—ସେତେବେଳକୁ ଖିଆପିଆ ସରିଲାଣି, ଖଣ୍ଡେ ଖଣ୍ଡେ ପାନ ପରେ ମଧୁଭାଇର ପାଇପ୍ ଆଉ ମୋର ସିଗାରେଟ୍ ଧୂଆଁ

ବର୍ଷାଙ୍କୁଆଁ କୋଠରୀରେ ଚଳପ୍ରୁଥିଲା—ସେ ଆମେ ସମସ୍ତେ ସମାନ । ମାନସିଂଙ୍କ ପରିବାର, ପ୍ରଧାନ ପରିବାର, ଜୀବିତା ମଲ୍ଲିକା, ମୃତା କମଳା, ତାଙ୍କ ଝିଅ, ଆମ ପିଲାମାନେ । ହୁଏତ ମଧୁସ୍ମିତ ନିଜେ ଆଉ କାହା ଘରେ ପଶିଥିବ, ସେ ସେମିତିକା ମଉଜିଆ ଖୁସିବାସିଆ ଲୋକ । କିଏ ଜାଣିଛି, ହୁଏତ କମଳା ପତିବ୍ରତା ଆଉ କେଉଁ ପୁରୁଷକୁ ନେଇ ଆନନ୍ଦ କରିଥିବ । ଧର ସେଇ ଅମରବାବୁ, ଯାହାଙ୍କ ଗୋରଚମ, ଟିବାଆଖି ଓ ଆଦର୍ଶ ଏକା ଧାତୁରେ ଗଢ଼ା ବୋଲି ମନେ ହେଉଥିଲା । କିଛି କ୍ଷତି ନାହିଁ । ଆମେ ସମନ୍ୱିତ, ସଂଯମିତ, ସମତୁଲ୍ୟ ସମାଜ । ଯାହାହେଉ ପଛକେ ନମିଳରେ ଆଞ୍ଚ ଲାଗିବ ନାହିଁ । ଆମେ ସେମିତି, ଆମ ଘର ବନ୍ଧୁମାନେ ମଧ୍ୟ ସେମିତି, ଏ ଘରୁ ଜଣକୁ ପଠେଇଦଅ ସେ ଘରକୁ, ସେ ଘରୁ ନେଇ ଆସ···

ଝିଅ ଡାଇନିଙ୍ଗ ଟେବୁଲରୁ ଉଠି ଗଲାଣି ବୋଲି ମୋର ଖିଆଲ ନଥିଲା । ଖିଆଲ ପଡ଼ିଲା ଯେତେବେଳେ ମଧୁସ୍ମିତ ପ୍ରସ୍ତାବ ନ ଦେଇ ଆରମ୍ଭ କଲା,—ଘନଶ୍ୟାମ, ତମ ସାଙ୍ଗରେ ଗୋଟାଏ କଥା ଥିଲା । ହଁ କି ନା କହିଦେବ, ମୁଁ ମୋଟେ ଭୁଲ ବୁଝିବି ନାହିଁ । ମୁଁ କଣ କହୁଥିଲି କି, ଆମ ଲକ୍ଷ୍ମୀ ସାଙ୍ଗରେ ତମର ଉମାକାନ୍ତର ବାହାଘର କଲେ କେମିତି ହୁଅନ୍ତା ?

ପ୍ରଥମେ ମୋର ମନେ ହେଲା,—ଆରେ, ସେ ତ ମୋରି ମନକଥା କହୁଛି ! ଭଲ, ଭଲ, ଏ ଘରୁ ଜଣକୁ ପଠେଇଦଅ ସେ ଘରକୁ, ସେ ଘରୁ—। ଧାତ୍, ବର୍ଷା ଝର ଝର ସରିବାକୁ ବସିଲାଣି । ପ୍ରସ୍ତାବ ଆସିଥାଆନ୍ତା ଯେତେବେଳେ ମୌସୁମୀ ଫାଟିବାକୁ ବସିଥିଲା । କ୍ଲାଇମାକ୍ସର ଚମକ ଆସିଥାଆନ୍ତା । ମଧୁସ୍ମିତଟା ନପଟ ଗଦ୍ୟ, ନାଟକୀୟତା'ର ଧାର ଧାରେ ନାହିଁ— ।

ସାମୟିକ ବିକାର କଟିଗଲା । ଝରବର୍ଷା ଥମିଗଲା । ମନେହେଲା କ୍ଲାଇମାକ୍ସ ଫେରିଆସିଲା, ହେଲେ ତଳେ ପଡ଼ିଗଲା ଧଡ଼୍‌କିନି । ମଧୁସ୍ମିତ କହୁଛି ମୋ ପୁଅ ଉମାକାନ୍ତ ତୋ ଝିଅ ଲକ୍ଷ୍ମୀକୁ ବାହାହେବ । ମୋ ପୁଅ ଉମାକାନ୍ତ ମଲ୍ଲିକାର ଝିଅ ଲକ୍ଷ୍ମୀକୁ ବାହାହେବ । ମାନେ ସେ ଦୁଇଜଣ ହୋମନିଆଁକୁ ସାକ୍ଷୀ କରି ଏକାଠି ହେବେ ସବୁଦିନ ପାଇଁ, ଶେଯରେ, ସମାଜରେ ।

ବୋଧହୁଏ ଅଫିସ୍ କାମରେ କିମ୍ବା ଘରକରଣାରେ ଏତେ ଶୀଘ୍ର ଗୋଟାଏ ନିଷ୍ପତ୍ତି ଆଗରୁ କେବେ ନେଇ ନଥିଲି । ଏଥର ନେଲି । ମହଲତ ମାଗିଲି ନାହିଁ । ଖୁସି ହେବାର ଭଙ୍ଗୀ ଦେଖାଇ ପୁଅକୁ ପଚାରିବା ଜାତକ, ମିଳେଇବା ଇତ୍ୟାଦିର ବାହାନା କଲି ନାହିଁ । ସିଧାସଳଖ କହିଲି,—ମଧୁସ୍ମିତ, ଆଇ ଆମ୍

ପର, ଇଏ ହୋଇ ପାରିବ ନାହିଁ । ଉମାକାନ୍ତ ଅଢ଼ ଜେଲ୍କୁ ବାହା ହେବାକୁ ଚାହେଁ ।

ମିଛ କହିଲି । ଏଭଳି ଏକ ପରିସ୍ଥିତିରେ ମରଣ ମୁହଁରୁ ବଞ୍ଚିବା ପାଇଁ ମିଛ କହିଲେ ସତର ମୂଲ୍ୟ କଟେଣ? ମହାଭାରତ କଣ ଶିଖାଉଛି ଆମକୁ ?

ନଷ୍ଟଝିଅର କାରଣ ଖୋଜିଲେ ଖୋଜୁଥାଆନ୍ତୁ । ହୁଏତ ଆପଣମାନେ କହିବେ ଯେ ଯେହେତୁ ସେ ମଲ୍ଲୀକାର ଝିଅ, ସେ ମୋ ବୋହୂ ହେବାର ଜଟିଳ ବିଷମତାକୁ ଗ୍ରହଣ କରି ହେଲା ନାହିଁ । ମୁଁ ଡରିଲି କାଳେ ମୋ ମନରେ କି କାହା ମନରେ ଆସିବ ଯେ ହେଷ୍ଟ୍ ପଙ୍କ ସରିଗଲା । ଭିତରେ ଭିତରେ ପ୍ରେମ ଥିଲା ପରା, ଇତ୍ୟାଦି । ବାଜେ କଥା । ମୁଁ ଭୟାଳୁ ନୁହେଁ, ମୋ ହେଷ୍ଟ୍କୁ ମୁଁ ଜାଣେ, ମଲ୍ଲୀକାର ପାପ ତା' ଝିଅକୁ ଛୁଇଁନାହିଁ ·····।

ହୁଏତ ଭାବିପାରନ୍ତି ଯେ ମୁଁ ଲକ୍ଷ୍ମୀର ଭିନ୍ନ ରୂପ ଦେଖିଛି, ସେଇଥିପାଇଁ ଶଙ୍କିଗଲି । ମୋର ପାଠୁଆ ପୁଅ, ଉଚ୍ଚାଭିଳାଷୀ । ମାଟ୍ରିକ୍ରେ ଥରେ ଫେଲ ହେଲେ କଣ ହେବ, ଆଉ କେଉଁଠି ଅଟକି ନାହିଁ । ଇଞ୍ଜିନିୟରିଂ ପାସ୍ କରି ଯାଇଛି । ତାକୁ ଏ ଝିଅ ଅସୁବିଧାରେ ପକେଇବ, ତାର ଦୁର୍ବଳତାକୁ ଅସନା କରିଦେବ । ଏକ ଅପରଣ ଟିକି ଦେବ । ଛି ! ଉମାକାନ୍ତ ମୋ ପୁଅ, ଲକ୍ଷ୍ମୀ ମୋର ଝିଅ, ଦୁହେଁ ଭଲ, ନିଜର.... ।

ଓଃ ! କେଡ଼େ କାହିଁକି ବିଶ୍ୱାସ କରୁନାହାନ୍ତି ଯେ ମୁଁ ଚାହିଁଥିଲି ସେ ଝିଅ ବାହା ନହେଉ ? କାହିଁକନା ସେ ପୁରୁଷ ସ୍ତ୍ରୀର ସମ୍ପର୍କ ନିଭେଇବା ପାଇଁ ଆସିନାହିଁ ଏଠିକି । ମୁଁ ସେଦିନ ସନ୍ଧ୍ୟାରେ ତା' ଚାହାଣୀରେ ଯାହା ଦେଖିଥିଲି, ଶେଷ ସନ୍ଧ୍ୟାରେ ତା ସ୍ମିତହାସରେ ଯାହା ଦେଖିଥିଲି, ତା'ର ନାଆଁ ହେଉଛି କରୁଣା । ସେଇଥିରେ ସେ ମୋର, ତା' ମାଆର, ବାପାର, ଆମ ସମସ୍ତଙ୍କର ପାପ, କାଟିଦେବ । ପ୍ରେମ ସେକ୍ସର ଜୈବିକ ଇତରତା ନୁହେଁ, ଅସଲ ମିଛର ପାପ, ଅଣ ଅନୁଭୂତ । ଅ-ଭାବ । ସେ କଣ ହେବ ଭଗବାନ ଜାଣନ୍ତି, କିନ୍ତୁ ସେ କଷ୍ଟ ପାଇବ । କୋଟିକରେ ଗୋଟିଏ ହୋଇ ରକ୍ତ ବୁହାଇବ, ଯୀଶୁଙ୍କ ପରି । ସନ୍ତାନ ପାଇଁ ନୁହେଁ ମ, ତା ବାପାମାଆମାନଙ୍କ ପାଇଁ······।

ଖାଲି ସୁକରଣୀମାନେ ସ୍ୱପ୍ନ ଦେଖିପାରନ୍ତି ବୋଲି ମୁଁ ମାନିବି ନାହିଁ । ଆମର ମଧ୍ୟ ସେ ଅଧିକାର ଅଛି ।

# ସ୍ୱର୍ଗ ସୀମା

ଅଳିକ୍ସ ନିଦ ଲାଗି ଆସୁଛି; କିନ୍ତୁ ନିଦ ଲାଗି ଆସୁଆସୁ ଅନ୍ଧାର ହୋଇଯାଏ । ମୁଁ ଅନ୍ଧାର ହେବାକୁ ଦେବ ନାହିଁ । ଅଚେତନରେ ଚେତା ହୋଇ ମିଶିଯିବ । ପାହାଡ଼ମାନଙ୍କର ନୀଳ ସବୁଜ ଗ୍ରାଇ ଆଲୁଅରେ ମିଶିଯିବ, କେଉଁ ଦୂରରୁ ଶୁଭୁଥିବା ଅକସ୍ମାତ ଚମକ ଉଠିଥିବା ପ୍ରାଣୀର ଉଚ୍ଚାରଣରେ ଉଲୁପି ଉଠିବ, ପାଣି ସାଙ୍ଗରେ ଆହୁଲର ଅନବରତର ଘୋଷା ଧରିବ, ଭାସି ଭାସି ଭାସିଯିବ, ପାଖ ନଉକାବାଲା ଫୁଲବାଲାଟି ନିଜେ ଫୁଲ ହୋଇଯିବ, ତା'ର ଛୋଟିଆ ମୁହଁ ମସିଆ ଦିଶିବ ନାହିଁ ନା ଗୁରଅଣା ଅଠଅଣାର ଲୋଭ ଦିଶିବ ନାହିଁ; ଶୋକ କରିବ ନାହିଁ, ହୃଦର ଘାଟ ନାହିଁ ଯେ ଫେରିବାକୁ ପଡ଼ିବ, ପୁଣି ସେହି ଟୁରିଷ୍ଟ୍ ଗହଳି, ହାଉଯାଉ ମଣିଷ, ଖାଇବା ଶୋଇବା ଯୁକ୍ତି କରିବାର ଚିନ୍ତା, ନା-ନା-ହୃଦର ଘାଟ ନାହିଁ, ଖାଲି ଏକ ସମମାନତା, ଏଇ ହେଉଛି ସ୍ୱର୍ଗ······

ଜନ ଜାନ ଜନାର୍ଦ୍ଦନ୍ ପରଭମ୍ ପମ୍ ପମ୍ ପମ୍ ···

ପ୍ରାଣବନ୍ଧୁ ବାଧ୍ୟ ହୋଇ ଆଖି ଖୋଲିଲା । "ଷ୍ଟାର୍ ଅଫ୍ ଏସିଆ" ଶିକାରାର ଗୁଲକ ବଡ ପାଜିଆ, ସେଇଥି ପାଇଁ ହୁଏତ ସାହେବ୍ କିଛି ଓଜର ଆପତ୍ତି କରିବା ଆଗରୁ ପ୍ରାଣବନ୍ଧୁ ତା'ର ଶିକାରାରେ ବସିବା ପାଇଁ ରାଜି ହୋଇ ଯାଇଥିଲା । ଶିକାରାରେ ମଧ୍ୟ ବାଗ୍ଲୀ ମିଆଁ (କହୁଲା ମୋତେ ସମସ୍ତେ ମାମା ବୋଲି ଡାକନ୍ତି) ବକର ବକର ହେଉଥିଲା, ଗୀତ ବୋଲୁଥିଲା, ହେଲେ ସେଥିରେ ସ୍ୱର୍ଗ ସୁଖର ହାନି ହେଉ ନଥିଲା । କିଏ ଜାଣିଥିଲା ଯେ ତଦୁପରି ତା'ର ଚୋଟାଏ ରେଡ଼ିଓ ଅଛି ଓ ଅସଭ୍ୟ ହଠାତ୍ ଏମିତି ଗର୍ଜି ଉଠିବ ?

ବିରକ୍ତରେ ଭୂରୁ କୁଞ୍ଚେଇ ହୋଇଯିବା ସ୍ୱାଭାବିକ । ତେବେ ଭୂଲ କୁଞ୍ଚେଇଲେ ଏତେ ଗୁଡ଼ାଏ ଗାର କପାଳରେ ଲହଡ଼େଇ ହୁଏ ? ପୁଣି ଚଟକିନି ଉଠି ପଲ୍ଲାଳକୁ ତା'ର ଅନତିଦୀର୍ଘ ଦେହ "ଷ୍ଟାର ଅଫ୍ ଏସିଆ"ର ହେଲ୍ ଭେଟ ଗଡରୁ ସାମାନ୍ୟ ଖସି ଆସିଲା ଓ ସେ ନିଜକୁ ସଳଖେଇ ନେଲା । ହେଲା, ଏଥିରେ ଏବେ ହସିବାର କଣ ଅଛି ? ପ୍ରାଣବନ୍ଧୁ ଦେଖିଲା ଯେ ସାହେବ୍ ତାର ନିଦଭଙ୍ଗା

କେବେହେଲେ ବଦ୍ଧେୟଣରେ ଠୋ ଠୋ ହୋଇ ହସୁଛ । ସତେକି ସମତଳ ଭୂମି ବନ୍ଧୁଟିର ସରଳତା ଅର୍ଥାତ୍ ବାଳୁତପଣ ଧରି ପକାଉଛନ୍ତି ! ଏବଂ ସେ ନିଜକୁ ପୁଣି ଥରେ କାଶ୍ମୀରୀ ଶେଖ୍ ବୋଲି ଚିହ୍ନେଇ ହେଲା !

ଅବଶ୍ୟ ସାଦିକ୍ କାଶ୍ମୀରୀ ବୋଲି ସ୍ପଷ୍ଟ ଜଣାପଡ଼ିଯାଏ । ତା'ର ଲମ୍ବା ଚଉଡ଼ା ଦେହ, ଖାଡ଼ା ନାକ, ଗୋରା ଚମରେ ନାଲି ରକ୍ତର ରଙ୍ଗ ଓ ଉଜ୍ଜଳ ସ୍ୱାସ୍ଥ୍ୟକୁ ଦେଖିଲେ ମାନିବାକୁ ପଡ଼େ ଯେ—ହଁ, ଏ ଏ ଦେଶର ଲୋକ, ଭାରତର ହୋଇ ମଧ୍ୟ ଭାରତର ନୁହଁ; ଭିନ୍ନ । କିନ୍ତୁ ସେ ଯେତେବେଳେ ପରିହାସ ଛଳରେ କୁହେ, ବାରମ୍ବାର କୁହେ ଯେ ସେ ମଧ୍ୟ ଜଣେ ଶେଖ୍, ଶେର୍-ଏ-କାଶ୍ମୀର ଏକମାତ୍ର ଶେଖ୍ ନୁହଁନ୍ତି ପ୍ରାଣବନ୍ଧୁ ତା'ର ତାତ୍ପର୍ଯ୍ୟ ବୁଝିପାରେ ନାହିଁ । ସାଦିକ୍ କପ ମଣ୍ଡୁକ ନୁହେଁ, ଦିଲ୍ଲୀରେ ପାଠ ପଢ଼ିଛି, ଭାରତର ବିଭିନ୍ନ ଅଞ୍ଚଳ ଛଡ଼ା ବାପ ଟଙ୍କାରେ ବିଦେଶ ବୁଲି ଆସିଛି ଏବଂ କଥାକଥାକେ ଘୋଷଣା କରେ ଯେ ଭାରତ କାଶ୍ମୀରର କାଶ୍ମୀର ଭାରତର । କେହି ମିଆଁ ବିବିଙ୍କୁ କେହି ଅଲଗା କରି ପାରିବ ନାହିଁ । ତଥାପି ସେ ତା'ର ଭିନ୍ନ ପଣକୁ ଏମିତି ଦେଖେଇ ହୁଏ କାହିଁକି ? ଖାଲି କାଶ୍ମୀରୀ ବୋଲି ଜାଣିଲେ ଯଥେଷ୍ଟ ନୁହେଁ, ଲୋକେ ବୁଝିବା ଦରକାର ଯେ ସେ ମଧ୍ୟ ଜଣେ ଶେଖ୍ ! ପ୍ରାଣବନ୍ଧୁର ମନେହୁଏ କହିବ ଯେ ମୁଁ ମଧ୍ୟ ଅପର୍ଯ୍ୟାପ୍ତ ଅନିର୍ଦ୍ଦିଷ୍ଟ ସମତଳ ଭୂମିର ଲୋକ ନୁହେଁ, ମୁଁ ହେଉଛି ଓଡ଼ିଆ, ବଶିଷ୍ଠ, ପୁଣି ବ୍ରାହ୍ମଣ, ସବୁଠାରୁ ଉଚ୍ଚ ଶ୍ରେଣୀର ବ୍ରାହ୍ମଣ, ମୋର ପୂର୍ବ ପୁରୁଷମାନେ ରାଜଗୁରୁ ଥିଲେ, କିନ୍ତୁ ଏଭଳି ଭାବନା ଆସିଲାକ୍ଷଣି ସେ ଲଜେଇ ଯାଏ, ଝାଡ଼ଝୁଡ଼ି ହୋଇ ସାଦିକ୍ ଆଡ଼କୁ ଅନାଏ—ସେ ମୋ ମନ କଥା ଜାଣି ପାରିଲା କି ? ସାଦିକ୍ କେବଳ ମୋର ବନ୍ଧୁ ନୁହେଁ, ସାଚତା ସଙ୍କୀର୍ଣ୍ଣତା ତା'କୁ ପ୍ରକୃତରେ ସ୍ପର୍ଶ କରି ନାହିଁ, ହେଲା ଏ ଏବେ ସେ ଶେଖ୍, ପରିହାସ ମାତ୍ର, ଯୌବନ ସୁଲଭ ଚପଳତା···

ସାଦିକ୍‌ର ଯୌବନ । ସେଇଠୁ ତା'ର ଖିଆଲ ହୁଏ ଯେ ଯୌବନ ଯେତେ ଶୀଘ୍ର ଢଳିଯିବ, ସରିଯିବ ସେତେ ଭଲ ।

ମନେ ହୁଏ ଯୌବନରେ ଆନନ୍ଦ ଥାଇପାରେ; କିନ୍ତୁ ସୁଖ ନାହିଁ । ପ୍ରାଣବନ୍ଧୁ ବୁଝିପାରେ ନାହିଁ ସେ ସାଦିକ୍ ଓ ଯୌବନର ପରସ୍ପର ଦୁଶ୍ୟକୁ କାହିଁକି ଦୁଇ ଆଖିରେ ଅନେଇ ହୁଏ ନାହିଁ । ସବୁ କ ଗୁଣ ଓ ଉପାଦାନ ବୁହେଁ ଉତ୍ତମ ହେବା ଉଚିତ ନୁହେଁ, ସେଥିରୁ ପାପରେ ପାପ୍ତି ପରିତ୍ରିହୁଏ । ଫଳରେ ଅନର୍ଥ । ପୁଣି ତା ସାଙ୍ଗକୁ ସୁନ୍ଦର ଯୋଡ଼ି ହେଲେ କଣ ହୁଏ ? ସାଦିକ୍‌ର ସୁନ୍ଦରୀ ସ୍ତ୍ରୀ ସଲ୍‌ମା, ତାଙ୍କର ଦୁଇ ପୁଅଝିଅ—ସେଠି କ'ଣ ଯୌବନ ପ୍ରେମକୁ ନେଇ ଅକାମୀ ହୋଇଯାଏ ନା ଲୋକଙ୍କୁ ଉଠି ଜାଳଯାଏ ? ପ୍ରାଣବନ୍ଧୁ ନିଜର ଉଦ୍‌ଭଟ ଭାବନାକୁ ଛାଡ଼ିଦିଏ; କିନ୍ତୁ

ବନ୍ଧୁର ଚେହେରାରୁ ଯୌବନକୁ ଉଚାଉ ନ ଆଣିଲା ଯାଏଁ ତାଙ୍କୁ ଭଲ ଲାଗେ ନାହିଁ ।

ସାଧକ୍ ହସିଲା ଉତ୍ତରରୁ ଯାହା କହିଲା ସେଥିରେ କେବଳ ଯୌବନର ସମ୍ପର୍କ ନ ଥିଲା, ଯୌନତାର ଇଙ୍ଗିତ ଥିଲା, ସେଥିପାଇଁ ପ୍ରାଣବନ୍ଧୁଙ୍କୁ ଆଘାତ ବାଧିଲା । କହିଁ ଲାଗି ଖଗମେଘର ଉପର ବେଳାରେ ଡ'ଲ୍ ଲେକ୍‌ରେ ନୌକା ବିହାର ଏମିତ ଧୂଳିଧୂସର ହୋଇଯିବ ବୋଲି ସେ ଭାବି ନଥିଲା । ସାଧକ୍ କହିଲା—

"ମୁଁ ତୋତେ ମୂଳରୁ କହୁଛି ପରା ! କାଶ୍ମୀରକୁ ଉପଭୋଗ କରିବାକୁ ହେଲେ ଭାଉଜଙ୍କୁ ସାଙ୍ଗରେ ନେଇ ଆସନ୍ତୁ, ତାହା ହେଲେ ଏମିତ ମାଣ୍ଡେଇ ଯାଆନ୍ତୁ ନାହିଁ, ଶୋଇ ପଡ଼ନ୍ତୁ ନାହିଁ । ଚେଙ୍ଗା କରିବାର ଉପାୟ ଅବଶ୍ୟ ମୋତେ ଜଣା ଅଛି; କିନ୍ତୁ ତୁ କଣ ସେଥିରେ ରାଜି ହେବୁ ?"

ପ୍ରାଣବନ୍ଧୁ ଦୁର୍ବଳ ସ୍ମିତହାସର ପ୍ରତିଦାନ ଦେଲା । ଆଉ କଣ କରନ୍ତା ? କେମିତ ଏ ଲୋକଟାକୁ ବୁଝେଇବ ଯେ ତୁ ତୋର ପ୍ରିୟ କାଶ୍ମୀରର ଅବମାନନା କରୁଛୁ, ଲେକ୍‌ରେ ମିଛଟାରେ ତରଙ୍ଗ ଉଠଉଛୁ, ରଙ୍ଗଭୋଳା ପାହାଡ଼କୁ ଅକାରଣରେ ଉଷ୍ଣ ଆଉ ଟାଣ ହେବାକୁ କହୁଛୁ ? ସେକ୍‌ସ ସତ ହୋଇପାରେ, କିନ୍ତୁ ତା'ର ଦେଶକାଳ ପାତ୍ର ଅଲଗା । ମୋ କାଶ୍ମୀର ସେମିତ ନୁହେଁ, ତା'ର ମୂଳଗତ ଶାନ୍ତ । ମଜା କଥା ମୋ ସ୍ତ୍ରୀ ନାଆଁ ଶାନ୍ତ । ସେ ପ୍ରକୃତରେ କାଶ୍ମୀର ଆସିବାକୁ ଚାହିଁଥିଲା । ଲେଖିଥିଲା ମୋତେ ଆସି ନେଇ ଯାଅ, ଏ ସୁଯୋଗ ପୁଣି ଆଉ ମିଳିବ ନାହିଁ, ପଢ଼ା ସରିଗଲେ ତମେ ଦିଲ୍ଲୀରୁ ଫେରି ଆସିବ, ତମ ବନ୍ଧୁ କୁଆଡ଼େ ବେଲ କୁଆଡ଼େ ପଳେଇବେ, ଅବଶ୍ୟ ମୋ ପାଇଁ ଟେଁକ୍ତ ହେବାକୁ ଇଚ୍ଛା ନ ଥିଲେ · ଇତ୍ୟାଦି ମୁଁ ଏଣୁ ତେଣୁ କହି ଟାଳି ଦେଲି । କଥା ଦେଇଛି ତା'କୁ ସାଙ୍ଗରେ ନେଇ ଆଉ ଥରେ ଆସିବ, ଆମେ ଦୁଇଜଣିଆ ହନମୁନ କରିବା, କିନ୍ତୁ···କିନ୍ତୁ (ମୁଁ ମୋ ଶାନ୍ତିଙ୍କୁ ଭଲ ପାଏ ସନ୍ଦେହ ନାହିଁ, ସାଧକ୍‌ର ସଲ୍‌ମାଠାରୁ ବେଶି) । ଏଠି ଯୌନତାର ଗଣ୍ଡଗୋଳ ନ ଥିଲେ ଭଲ । ନାସି ଥିଲେ ଥିବ ସେଇ ଫୁଲବଗିଚା ପରି, ଏକୁଟିଆ ନଉକା ବାହି କଇଁଫୁଲଟିଏ ଧରି ବସି ଆସୁଥିବା ବାଳିକା ସେ ଶୋଭାରେ ସୁଷମା ପରି ମିଶି ଯାଇ ପାରିବ···

ସାଧକର କିଛି ଅଧିକାର ନାହିଁ ମୋତେ ଚେତାଇ ଦେବ ଯେ ମୁଁ ମୋ ସ୍ତ୍ରୀର ନେହୁର ଶୁଣିଲି ନାହିଁ, ତା'କୁ ଏଇ ସ୍ୱର୍ଗସୁଖରୁ ବଞ୍ଚିତ କଲି । ମୁଁ ତାଙ୍କୁ କଥା ଦେଇଛି, ମୋ କଥା ଅନ୍ୟଥା ହେବ ନାହିଁ; କିନ୍ତୁ ମୋର ଏଇ ପଦ୍ମିଲି କାଶ୍ମୀର,

ପନ୍ଦ୍ରୀକ୍ ପ୍ରେମର କୋଳରେ ଟିକିଏ ଶୋଇ ପଡ଼ିବ, ସେଥିକି କାହାର ଦେହରେ ସହିବ ନାହିଁ ?

ଆରେ, ତୋ ଦାନ୍ତଦେଖାପଣ କଣ ସରିବ ନାହିଁ ? ମାନୁଛୁ ତୋ ଦାନ୍ତ ଦ'ଟାକି ଚକଚକ ଧଳା, ବ ଣ୍ଡ ହେଲା ପରି, ତା ଉପରକୁ ହସେ ଜବର ଖଣି, କେଖ୍ ସୁଲଭ । ପ୍ରାଣବନ୍ଧୁର ମନେ ହେଲା ସେ ସାଦିକ୍ ଆଉ ବାବୁ ମିଆଁ ସଜ ହୋଇଛନ୍ତି, ତା'ର ନିଜସ୍ଵ ଉପଭୋଗକୁ ଟିକି ଟିକି କରି ଛୁଟାଇ ଦେବେ । ବରଂ ଏଇ ଲେକ୍ ବିହାର ଶୀଘ୍ର ସରିଯାଉ । କୂଳକୁ ଆସିଲା ପରେ ମୁଁ ତାଙ୍କ ଘର 'ସବ୍‌ନମ୍'କୁ ଫେରି ଯାଇ ମୋ ରୁମ୍‌ର ଝରକା ଖୋଲି ଦେଇ ସେଇଠି ବସି ରହିବି । ରାତି ହେଲା ଯାଏଁ । ରାତିରେ ଝଡ଼ ଆସୁ ବା ତାରା ଦେଖା ଦେଉ, ଯାଏ ଆସେ ନାହିଁ । ଲେକ୍‌ର ଆଶ୍ଚର୍ଯ୍ୟଟିକ ଲୁଚିଯିବ ନାହିଁ, ମୁଁ ତା'ର କାନ ଧରି ଖସି ଆସିବି, ପୁଣି ମୋ ସ୍ୱର୍ଗର ଛିଅ ଧରିବ । ଖାଲି ସେ ନନ୍ଦନନ୍ଦନିକା ଡେଙ୍ଗା ଡେଙ୍ଗା ପପ୍‌ଲର୍ ଗଛ ଦଳଟା, ଆକାଶରେ ମୁଣ୍ଡ ବାଜିଲାରୁ ଝୁଙ୍କି ଆସିଛନ୍ତି, ସେଇମାନେ ମୋର ପଳାୟନକୁ ଦେଖି ପାରିବେ । ଫୁରୁଫୁରିଆ କେଉଁଏ ଡାଳକୁ ହଲେଇ ଦେଇ ଭଲ ଭଲ ବୋଲି କହିବେ । ହୁଃ ! କାଶ୍ମୀରରେ ସାଦିକ୍ ଛଡ଼ା ମୋର କଣ ଆଉ ସାଙ୍ଗ ନାହାନ୍ତି ?

କିନ୍ତୁ ସାଦିକ୍‌ର ଉଦ୍ଦେଶ୍ୟ ଭିନ୍ନ ଥିଲା । ସେ ନିଷ୍ପତ୍ତି କଲା ଯେ ଶ୍ରୀନଗରରେ ଯେତେକ ଉଦ୍ୟାନ ଅଛି, ଯାହା ପ୍ରତ୍ୟେକ ଟୁରିଷ୍ଟର ଦେଖିବା କଥା, ଆଜି ଗୋଟାଏ ଦିନରେ ସାରି ଦେବାକୁ ପଡ଼ିବ । କାହିଁକିନା ଶ୍ରୀନଗରରେ ତଥା କାଶ୍ମୀରରେ ଅନେକ ଦେଖିବାର ଜାଣିବାର ବସ୍ତୁ ଅଛି, ଯାହା ଟୁରିଷ୍ଟ ଗାଇଡ୍ ବୁକ୍‌ରେ ଲେଖା ନାହିଁ; କିନ୍ତୁ ସାଦିକ ତା' ବନ୍ଧୁ ପାଇଁ ବାଛି ରଖିଛି । ମୋଟେ ଯୋଡ଼ାଏ ସପ୍ତାହ, ଗୁହୁଁ ଗୁହୁଁ କଟିଯିବ । ଗୁଲ୍‌ମାର୍ଗରେ ବରଫ ତରଳି ଯିବ, ପହଲଗାମ୍‌ରେ ଘୋଡ଼ାମାନେ ଅଲସୁଆ ହୋଇ ଯିବେ । ଆମ ବନ୍ଧୁଙ୍କ ପରି (ଆଖିମିଟିକା ମାରିଲା), ନା, ନା, ଆଜି ଶଳା ଯେତେକ ଗାର୍ଡ଼େନ ଅଛି ସାରି ଦେବାକୁ ପଡ଼ିବ···ଏଭଳି ଜରୁରି ପଣ ଦେଖାଇ ସାଦିକ୍ ପ୍ରାଣବନ୍ଧୁକୁ ରଖେଇ ଥୋଇ ଦେଲା ନାହିଁ । ଶିକାରା କୂଳରେ ଲାଗୁ ନ ଲାଗୁଣୁ ତାକୁ ଅନ୍ୟାନ୍ୟ ଆଇଟେମ୍‌ର ଦୃଶ୍ୟ ଦେଖାଇବା ପାଇଁ ଟାଣି ଟାଣି ନେଲା ।

ଫଳରେ ପ୍ରାଣବନ୍ଧୁର ଅଧାପନ୍ତରିଆ ଅନୁଭବ ଅର୍ଥାତ୍ ଅସୁଖ ବଢ଼ିବାକୁ ଲାଗିଲା । ପ୍ରଥମେ ନିଶାତ୍ ଗାର୍ଡ଼େନ । ପାହାଡ଼ କେବଳ ଆଖି ସାମନାରେ ନାହିଁ, ମାଡ଼ି ବସୁଛି ବୋଲି ମନେ କରି ନାହିଁ, ମୁଁ ତା' ସାଙ୍ଗରେ କଥାଭାଷା ହୋଇ ପାରିବି, ମୁଁ ଜମି ହେଲେ ସେ ଦେବତା ହୋଇଯିବ, ମୋ ପ୍ରାଣରେ ଅବତରଣ

କରିବ···ଏହି ଉଦ୍ଦେଶ୍ୟରେ ପ୍ରାଣବନ୍ଧୁ ଆଖି ବୁଜାଇବେଳକୁ ସାଦକ୍ ତା'କୁ ଉଠେଇ ଦେଲା, କହିଲା ଚେରି ଗଛରେ ଚେରି ଫଳିଛି ଦେଖିବୁ ଆ' । ସେଠି ଗଛତୋଳା ଚେରିର ସୁଆଦ ଚଖେଇଲା, ଯଦିଓ ସେଥିପାଇଁ ତା'କୁ ଗଛକୁ ଜଗି ବସିଥିବା କଣ୍ଟ୍ରାକ୍ଟରଙ୍କ ଲୋକଙ୍କ ସାଙ୍ଗରେ କଳି କରିବାକୁ ପଡ଼ିଲା । ପୁଣି ହସି ହସି ପ୍ରାଣବନ୍ଧୁଙ୍କୁ ସଫେଇ ଦେଲା ଯେ ସରକାର ଘର ନିଜ ଭାଇ ବନ୍ଧୁମାନଙ୍କୁ କଣ୍ଟ୍ରାକ୍ଟ ଦେଇଛି, ଲାଇସେନସ ଅଫିସର ମୋ ସାଙ୍ଗ ପରା, ମୁଁ ତା'କୁ ଜାଣିଛି, ବ୍ୟାପ ସମସ୍ତେ ଚୋର—ତାଙ୍କଠୁଁ ଚୋରି କରିବ ନାହିଁ ତ ଆଉ କଣ କରିବ ? ପଇସା ଦେଇ କିଣିବ ? ଅନେକ ସମୟରେ ମନେ ହୁଏ ଯେ ସାଦକ୍ ରାଗିବାର ଢଙ୍ଗ ଦେଖାଏ ସିନା, କଦାପି ରାଗି ପାରିବ ନାହିଁ । ତା ପାଇଁ ଅସଲ ହେଉଛି ଯୁଦ୍ଧ କରିବାର ଠାଣି, ଆଡ଼ମ୍ବର, ସେଥିରେ କାହାରି କିଛି କ୍ଷତି ହେବାର ପ୍ରଶ୍ନ ଉଠୁ ନାହିଁ । ସେଇଠୁଁ ଶାଲିମାର୍ ଗାର୍ଡ଼େନ । ସେଠି ଛଳଛଳ ଧାରା ଝରଝର ଫୁଆରା-ମାନଙ୍କର ଦୃଶ୍ୟ ଦେଖି ତା'ର ନାସାଲବ ସାଙ୍ଗରେ ନିଶାଭରା ହ୍ରାଣ ପୌଛୁଥିଲୁ ଥାପିଲା ବେଳେ (ଶାନ୍ତ ଏଠିକାର ବେଗମ୍ ହେଲେ ମୁଁ ସେଠିକାର ବାଦ୍‌ଶା କାହିଁକି ନ ହେବି ବୋଲି ଭାବିଲା ବେଳେ) ସାଦକ୍ ଫେରି ଚାଲ ଫେରି ଚାଲ ବୋଲି ପାଟି କଲା । କହିଲା ଆଉ ଦିନେ ରାତିକୁ ଆସିବା ଯେ ପାଣିରେ ନାଲି ନେଳି କେତେ ରକମର, ରଙ୍ଗ ଦେଖିବା, ଏଠି ଲାଇଟ୍ ଏଣ୍ଡ ସାଉଣ୍ଡ ଶୋ' ହୁଏ. ଡମ ଦିଲ୍ଲୀ ରେଡ଼୍‌ଫୋର୍ଟ୍‌ରେ ଯେମିତି ହୁଏ, ପ୍ରତ୍ୟେକ ଦୃଶ୍ୟର ମାନେ ହେଲା ରଙ୍ଗ, ବାଜଣା, ଶୋ !

ଘଣ୍ଟା ହେଉ ହେଉ ଡ୍ରୁ ବର୍ଷା ଆସିଲା । ବର୍ଷା ଛାଡ଼ିବା ଯାଏଁ ଅପେକ୍ଷା କରୁ-କରୁ ସାଦକ୍‌ର ମନେ ପଡ଼ିଲା ଯେ ଆଜି ସନ୍ଧ୍ୟାରେ କେତେ ଜଣଙ୍କୁ ନିମନ୍ତ୍ରିତ କରାଯାଇଛି କାଶ୍ମୀରି ରନ୍ଧା ଖାଇବା ପାଇଁ, ପ୍ରାଣବନ୍ଧୁ ସାଙ୍ଗରେ ଚିହ୍ନା କରେଇ ଦେବା ପାଇଁ । ସଲମାର ନାନାଦି ବନ୍ଦୋବସ୍ତ ଅଛି । ସଲମା ସହଜ ଜନ୍ତୁ ନୁହେଁ କହି ସାଦକ୍ ପୁଣି ହୋ' ହୋ' ହୋଇ ହସିଲା ଓ ଆଶ୍ୱାସନା ଦେଲା ଯେ ବାକିତକ ଗାର୍ଡ଼େନ୍ କାଲି ଦେଖି ନେବା । ପ୍ରାଣବନ୍ଧୁ ନିଃଶ୍ୱାସ ମାରିଲା ।

ପ୍ରାଣବନ୍ଧୁ ଅନୁମାନ କରିଥିଲା ଯେ ସାଦକ ଯେଉଁମାନଙ୍କୁ ନିମନ୍ତ୍ରଣ କରିଛି, ସେମାନେ କଦାପି କାନ୍ଥ ବାଡ଼କୁ ଲାଗି ଲାଗି ଯିବା ଲୋକ ହୋଇ ନଥିବେ, କଥାରେ ଭଙ୍ଗୀରେ ଆପଣା ଉପସ୍ଥିତି ବ୍ୟକ୍ତ କରିବେ । ସାଦକ୍ ଜଣେଇ ଦେଇ-ଥିଲା ଯେ ସେମାନେ ସମସ୍ତେ ଶିକ୍ଷିତ ବୁଦ୍ଧିବାଦୀ । ତେଣୁ ସେମାନେ ଅବଶ୍ୟ ରାଜନୀତିକୁ ଚର୍ଚ୍ଚା କରିବେ ଏ ସନ୍ଦେହ ମଧ୍ୟ ତା' ମନରେ ଆସିଥିଲା । ପ୍ରାଣବନ୍ଧୁ

ସଲମାଠାକୁ ନାପସନ୍ଦ କରେ ତା ନୁହେଁ, ପଲିଟିକାଲ୍ ସାଏନ୍‌ସରେ ତା'ର ସବିଶେଷ ରୁଚିଥିଲା । ପ୍ଲାଟୋ ଫାସିଷ୍ଟ କି ନୁହନ୍ତି ଏହି ବିଷୟରେ ସେ ଗୋଟିଏ ପ୍ରବନ୍ଧ ଲେଖି କଲେଜ ମ୍ୟାଗାଜିନରେ ଛପେଇ ଥିଲା; କିନ୍ତୁ ଅାଜିପର୍ଯ୍ୟ ଦିନରେ ହୁଡ ପାହାଡ଼ ଓପେନହେରଙ୍କ ଗେହ୍ଲା ଉନୁର ନାହିଁ ଆଣୁର, ମଣିଷ ଦଳର ମାଡ଼ଗୋଳକୁ ନେଇ ସମସ୍ତ ନଷ୍ଟ କରିବା ଅବାସ୍ତବିକ ବୋଲି ତା'ର ମନେ ହେଉଥିଲା । ତେବେ ସେ ଆଶା କରିଥିଲା ଯେ ଉଷ୍ମମ ହାଲୁକା କହୁାଓ୍ୱା (କାଶ୍ମୀରୀ ଚା')ର ଧୂଆଁରେ ସଲମାଠ ମିଳେଇ ଯିବ । ତା' ଛଡ଼ା ଆସରରେ କେବଳ ପୁରୁଷମାନେ ନ ଥିବେ, ସେମାନଙ୍କର ପତ୍ନୀ, କନ୍ୟା ଥିବେ । ଯେତେ ବଦ୍‌ଗୁଣୀ ହେଲେ ମଧ୍ୟ ସେମାନେ କଣ ସଲମାଠାକୁ ବିଶେଷ ବରଦାସ୍ତ କରି ପାରିବେ ? ଏବଂ ସାଦିକ୍‌ର ସୁନ୍ଦରୀ ସ୍ତ୍ରୀ ସଲ୍‌ମା ହୋଷ୍ଟେସ୍ ହୋଇ ଅତିଥିମାନଙ୍କର ଖବର ବୁଝୁଥିବ । ସେ କଣ ତା' ଦେଖିଲା କାମ କରିବ ନାହିଁ ? ଫୁଲଫଳ, ଅନ୍ତତଃ ଶାନ୍ତି ଗହଣା କଥା ପକେଇ ପାର୍ଟିର ସୁନ୍ଦର ଗୁଣକୁ ବଞ୍ଚେଇ ରଖି ପାରିବ ନାହିଁ ? ପ୍ରାଣବନ୍ଧୁର ମନରେ ଆସିଲା ଯେ ସେ ଏଠିକି ଆସିବାର ଦୁଇ ତିନି ଦିନ ହେଲାଣି, ସେ ଏପର୍ଯ୍ୟନ୍ତ ସଲମାକୁ ଭଲ ଭାବରେ ଦେଖିବାର ସୁଯୋଗ ପାଇ ନାହିଁ । କାହିଁକିନ ସବୁଥର ସେ ସ୍ୱାମୀର ସ୍ତ୍ରୀ ହୋଇ ପାଖରେ ବସିଛି, ତା'କୁ ଇଏ ମୋର କହିଲା ପରି ବସେଇଛୁ, ସତେକି ସେ ମଣିଷ ନୁହେଁ ସୁବର୍ଣ୍ଣ ପ୍ରତିମା, ତା'କୁ ଖାଲି ଅନେଇ ରହିବା ଉଚିତ । ତିଙ୍ଗ ଦେଖେଇ କହିଲା କଣ ନା ସେ ସହଜ ଜନ୍ତୁ ନୁହେଁ । ତା' ମୁଣ୍ଡରେ ସିଙ୍ଗ ଉଠିଛି ! ସେମିତି କଥାକୁ ମୋର କି ଗରଜ ପଡ଼ିଛି ମୁଁ ତା ମୁହଁକୁ ବସି ଚାହିଁବ ? ମୁଁ କଣ ସୁନ୍ଦରୀ ସ୍ତ୍ରୀ ଦେଖି ନାହିଁ ? ନା ମୋ ଶାନ୍ତି କୋଉ ···? ଅଜି ସେ ନେକ ଗହଳରେ ଥିବ, ମୁଁ ତା' ସାଙ୍ଗରେ ଜଣକୁ ଜଣ ହୋଇ କଥାବାର୍ତ୍ତା କରିବ, ତାକୁ ବଢ଼ା ସଙ୍କୋଚରେ ଦେଖିବ, ଚହ୍ନିବ । ପ୍ରାଣବନ୍ଧୁ ଆସନ୍ତା ଅାସର ପାଇଁ ନିଜକୁ ପ୍ରସ୍ତୁତ କରି ରଖିଲା ।

ପ୍ରଥମ କହ୍ୱାଓ୍ୱାର ଧୂପ ଉଠିଲାବେଳେ ସଲମା ପାଞ୍ଚ ମିନିଟ ମଧ୍ୟ ରହିଲା ନାହିଁ । ସାଦିକ୍ ତା'କୁ କଣ କହିଲାରୁ ସେ ଭିତରକୁ ଚାଲିଗଲା । ସେତେବେଳେ ପ୍ରାଣବନ୍ଧୁ ଲକ୍ଷ୍ୟ କଲେ ଯେ ଅତିଥିସତ୍‌କାରକାରିଣୀର କପୋଳରେ ଆଖି ତଳେ ଅତ୍ୟଧିକ ଝାଳ । ଏମିତି ଦେଖାଯିବା ଉଚିତ ନୁହେଁ । ତା'ର ସନ୍ଦେହ ହେଲା ଯେ ସଲ୍‌ମା ଜାଣିଶୁଣି ତା'ର କ୍ଳାନ୍ତିଚିହ୍ନମାନଙ୍କୁ ଗୋଟିଛି ନଦେଇ ଆସିଛି, ଅତିଥିମାନେ ଦେଖିବେ ବୋଲି ।

ଏଣେ ଚା'ରେ ଚୁମୁକ ଦେଉ ନ ଦେଉଣୁ ପ୍ରାଣବନ୍ଧୁ ପଲିଟିକ୍ସର ମୁହାମୁହିଁ ହେଲା । ମାନେ ଗୁପ୍ତାଜୀ । ସେ ତାଙ୍କର ଦେହ ଉପରେ ନାଥୁକନା

ବସିଥିବା ବଳବନ୍ତ ମୁହଁ ପାଖକୁ ଆଣି କୌଣସି ବିଦେଶୀ କୋଲନର ବାସ୍ନା ବାଢ଼ି ଦେଇ କହିଲେ—"ସ୍ୱା'ଙ୍କୁ କଣ କହ୍ନାଓ୍ୱା କହନ୍ତି ? କହ୍ନାଓ୍ୱାର ମଜା ପାଇବାକୁ ହେଲେ କାଶ୍ମୀରୀ ପଣ୍ଡିତଙ୍କ ଘରକୁ ଯିବାକୁ ପଡ଼ିବ । ଖାଲି କହ୍ନାଓ୍ୱା ନାହିଁ କି ସ୍ୱଚ୍ଛନ୍ଦ, ଗୁପ୍ତାଙ୍କ … …।"

ପ୍ରାଣବନ୍ଧୁ ମନେ ପକାଇଲେ ଯେ ସାଦିକ୍ କହୁଥିଲା ଇଏ ଏଠିକାର ଜଣେ ପୁରୁଣା ବ୍ୟବସାୟୀ । ପଞ୍ଜାବୀ । ଗୁପ୍ତାଜୀଙ୍କର ବନ୍‌ଶୀ ପକେଇ ମାଛ ଧରିବାରେ ଭାରି ସଉକ୍ । ମାଛମାନଙ୍କୁ ଠକେଇବାର ସମସ୍ତ ଉପାୟ ତାଙ୍କୁ ଜଣା, ସେଇଥିରେ ସେ ସାଦିକ୍‌ର ମନ ମୋହି ନେଇଛନ୍ତି; କିନ୍ତୁ ସାଦିକ୍ କଣ ଆଜି ଯାଏଁ ଜାଣି ପାରି ନାହିଁ ଯେ ଭଦ୍ରଲୋକଟି କାଶ୍ମୀରୀମାନଙ୍କୁ ମାନେ ପଣ୍ଡିତମାନଙ୍କ ଛଡ଼ା ଅନ୍ୟମାନଙ୍କୁ ଘୃଣା କରେ ? ଯେଉଁ ଲୋକ କହ୍ନାଓ୍ୱାଠାରୁ ଏହି ଧରଣର ମନୋଭାବ ଦେଖାଇଲାଣି ତାକୁ ବିଶ୍ୱାସ ନାହିଁ ।

ସତକୁ ସତ ଗୁପ୍ତାଜୀ ପ୍ରାଣବନ୍ଧୁଙ୍କର ହାଲଚାଲ ପଚାରିଲେ ପରେ କ୍ରମଶଃ ଯେଉଁ ବାଟରେ ଗଲେ, ସେଥିରୁ ବୁଝିବାକୁ ହେଲା ଯେ ଯେଉଁମାନଙ୍କୁ କହ୍ନାଓ୍ୱା କରି ଆସେ ନାହିଁ ସେମାନଙ୍କୁ ମଧ୍ୟ ଅଙ୍କ କଷି ଆସେ ନାହିଁ, ସଚ୍ଚା ପ୍ରେମ କରି ଆସେ ନାହିଁ, ଇତ୍ୟାଦି ଗୁପ୍ତାଜୀ ଫୁସ୍‌ଫୁସ୍ ହୋଇ କଥା କୁହନ୍ତି, ତେଣୁ କାଶ୍ମୀର ପରିର ସମସ୍ତ ଆଇଟେମ୍ ପ୍ରାଣବନ୍ଧୁଙ୍କର କାନରେ ପଡ଼ୁଥିଲା ନାହିଁ । ତେବେ ପ୍ରେମ କଥା ନେଇ ସେ ବିବ୍ରତ ହୋଇ ଉଠିଲେ । ଶାନ୍ତ କେତେଥର ଚେତେଇ ଦେଇଛି ଯେ ପ୍ରେମ କଲାବେଳେ ମୁଁ କୁଆଡ଼େ ଅଯଥାରେ ଫୁସ୍‌ଫୁସ୍ ହୋଇ କଅଣ ଗୁଡ଼ାଏ କହେ । ତା'ମାନେ ମୁଁ ଗୋଟାଏ ହିସାବରେ ଏଇ ଲୋକଟାର ଆତ୍ମୀୟ ? ରକ୍ଷା କର ! ଅନ୍ଧାରରୁ ଆଲୁଅ ଖୋଜିଲା ପରି ପ୍ରାଣବନ୍ଧୁ ସାଦିକ୍‌କୁ ଲୋଡ଼ିଲେ । ତାର ସତେଜ ବଦନ, ଉଚ୍ଚ ହସ … କୋଉ କଥା ପଡ଼ୁଛି ନ ବୁଝି ସେ ମଧ୍ୟ ହସି ଦେଲା । ସଭାର ଆର ପଟକୁ ମୁହେଁଇଲା ।

ବୁଝିଲେ ଯେ ସରକାରଙ୍କ କଥା ପଡ଼ୁଛି । ସରକାରଙ୍କ ଦୁଷ୍ଟତା, ଧୃଷ୍ଟତା, ମୂର୍ଖତା । ମୁଖ୍ୟ ବକ୍ତା ହେଉଛନ୍ତି ଜଣେ ଗୌର ସୁପୁରୁଷ, ପ୍ରକାଶ ନାରାୟଣ ଟିକ୍କୁ । କାଶ୍ମୀରୀ ପଣ୍ଡିତ । ସାଦିକ୍ କହୁଥିଲା ଯେ ଲୋକଟାର ଭାରି ସୁନାମ । ଫଳ ଉତ୍ପାଦନ ବଢ଼ାଇବାରେ, ଖେଳକୁଦ ପ୍ରତିଯୋଗିତାର ଆୟୋଜନ କରିବାରେ ଏବଂ ଛାତ୍ରଦଳ ସହିତ ମଧ୍ୟସ୍ଥତା କରିବାରେ ସେ ସରକାରଙ୍କୁ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ତା ବୋଲି କ'ଣ ସେ ସବୁ ମଞ୍ଚରେ ସେମାନଙ୍କୁ ଲଙ୍ଗଳା ମୁକୁଳା କରିବାର ଅଧିକାର ପାଇଛନ୍ତି ?

କିନ୍ତୁ ଇଏ କୋଉ ସରକାର କଥା ପଢ଼ୁଛି ? କିଛି ସମୟ ଉତ୍ତରୁ ପ୍ରାଣବନ୍ଧୁର ବୁଝିବାରେ ଗଣ୍ଡଗୋଳ ହୋଇଗଲା । ସେଇ ରୁମାଟୋପି ପିନ୍ଧା ଜଣକ, ତାଙ୍କ ନାଆଁ ଆମଜାଦ୍ ଅଲି । ସରକାରୀ ଦଳର ଜଣେ ବିଶିଷ୍ଟ ଏମ୍. ଏଲ. ଏ. ସେ ଯେଉଁ ମନ୍ତ୍ରୀଙ୍କ ରସରସିଆ ମାଡ଼ଖିଆ କଥା କହୁଚନ୍ତି ସେ କଣ ଏଠିକାର ନେତା ନା ଦିଲ୍ଲୀର ? ନା ହରିଆନାର ? ଲମ୍ବା ମୁହାଁ ଓକିଲ ଜଣକ, ପୂର୍ବତନ ସରକାରଙ୍କ ପ୍ରିୟପାତ୍ର ବୋଲି ସାବିକ୍ କହୁଥିଲା, ସେ ଥାପ୍ଲା ତୋଟା ନିଲମ ନେଇ ଯାହାସବୁ କହିଲେ, ଗପଟି କଣ ଓଡ଼ିଶାର କେନ୍ଦ୍ରପଡ଼ା କାହାଣୀରୁ କପି କରା ହୋଇଛି ? ଯାଙ୍କ ରାଜନୀତି-ଦୁର୍ନୀତିରେ ନିଜସ୍ୱ ବୋଲି କଣ କିଛି ନାହିଁ ? ନା ଏମାନେ ସବୁ ଦଳରୁ ସବୁ ପ୍ରାନ୍ତରୁ କାଟୁକାଟୁ ହାସଲ କରି ପାରିଛନ୍ତି ବୋଲି ଏଭଳି ବଡ଼େଇ କରୁଛନ୍ତି ? ଏବଂ ସେଇ ଟୋକା ଜଣକ, ସାବିକ୍ ଠାରୁ ସାନ ହେବ, ସେ କୁଆଡ଼େ ପୁରପୁରି ପାଞ୍ଚଥର ନମାଜ ପଢ଼େ, ପରିବାର ବନ୍ଧୁଙ୍କ ପୁଅ, ସେ ଯା' ମୁହଁରୁ ତା ମୁହଁକୁ ଚାହୁଁଛି କାହିଁକି ? ଯେମିତିକି ସେ ପ୍ରତି ଲୋକଙ୍କୁ ଚିହ୍ନି ରଖୁଛି, ଭବିଷ୍ୟତକୁ କାମରେ ଆସିବ ।

ଆଉ ସାବିକ୍ ସମସ୍ତଙ୍କ କଥାରେ ହସୁଛି !

କେବଳ ସେଇ ଗୋଟିଏ ମୁହୂର୍ତ୍ତ, ପ୍ରାଣବନ୍ଧୁ ତା'କୁ ମୋଟେ ଭୁଲିପାରିବ ନାହିଁ, ଯେତେବେଳେ ସାବିକ୍ ମଧ୍ୟ ହସିବାକୁ ଲାଗିଗଲା । ପ୍ରାଣବନ୍ଧୁ ଠାରୁ କଥାଟା ଆରମ୍ଭ ହେଲା । ପ୍ରାଣବନ୍ଧୁ କାହାଓ୍ୱାକୁ ପ୍ରଶଂସା କରିବାକୁ ଯାଇ କହିଲା—ଚା ଏମିତି ହେବା ଉଚିତ । ନିରୋଳା, ଖାଣ୍ଟି ଦୁଧ ଇତ୍ୟାଦି କିଛି ମିଶିବ ନାହିଁ । ଜଣେ କିଏ କହି ଉଠିଲା—ଠିକ୍ କହୁଛନ୍ତି । ଆମର ଇଏ ଖାଣ୍ଟି ନିରୋଳାଦେଶ, ମିଶା ମିଶି ନାହିଁ । ଲ୍ୟାଣ୍ଡ୍ ଅଫ୍ ଦ' ପିଓର୍ । ସେଇଠୁଁ ଜଣେ ଭଦ୍ର ମହିଳା, ସେ କାହା ସ୍ତ୍ରୀ, ଠିକ୍ରୁ ସାହେବ କି ଅଲି ସା'ହେବ କି ଆଉ କାହାର ଜଣା ପଡ଼ିଲା ନାହିଁ, ରସିକତା କଲେ । ମାତ୍ର ଯୋଡ଼ିଏ ଶବ୍ଦ ଉଚ୍ଚାରଣ କଲେ—ମାନେ ପାକିସ୍ଥାନ !

ସ୍ତବ୍ଧତା । କାହାର ପାଟିରୁ କଥା ବାହାରିଲା ନାହିଁ । ହସର ଟୁଁ କିନା ଶୁଭିଲା ନାହିଁ । ଏମିତି କେତେ ସମୟ ବିତିଗଲା ? ଦୁଇ ମିନିଟ୍ ? ପାଞ୍ଚ ମିନିଟ୍ ? ଶେଷକୁ ପ୍ରାଣବନ୍ଧୁଙ୍କୁ ଦୋଷୀ ଭଳି ମାଡ଼ି ପଡ଼ିଲା । କହିଲା,—ସରି, ମୋର ଭୁଲ ହୋଇଗଲା । ଏ ଚା' ନିରୋଳା ନୁହେଁ, ଏଥିରେ ଅଳେଇଚ ପଡ଼ିଛି, ବାଦାମ ପଡ଼ିଛି,—ନୁହେଁ ?

ସ୍ୱାଭାବିକ ଅବସ୍ଥା ଫେରି ଆସିଲା; କିନ୍ତୁ କିଏ କାହା ପାଖେ କେଉଁ ଦଳ କେଉଁ ମତର ପୃଷ୍ଠପୋଷକ ଅଥବା ବିରୋଧୀ, ତଥାପି ବୁଝା ପଡ଼ିଲା ନାହିଁ । ବରଂ

ଗଣ୍ଡଗୋଳ ବଢ଼ିଲା କାହିଁକନା ସେମାନେ ତା'ଙ୍କୁ ପାର୍ଟି ଉପଯୋଗୀ ତତ୍ତ୍ୱଗ
ଲୋକଟିଏ ବୋଲି ଧରି ନେଲେ ଏବଂ ଉପରେ ପଡ଼ି ଆତ୍ମୀୟତା ଦେଖାଇବାକୁ
ଚାହୁଁଲେ । ନାନାଦି ମଜା କଥା ଶୁଣାଇବାକୁ ଲାଗିଲେ । ଟିକ୍କୁ ସାହେବ
କହୁଲେ,—ଗୁପ୍ତାଜୀ କାହିଁକି ଏମିତି ବଗୁଡ଼ୁଛନ୍ତି ଜାଣନ୍ତି ? ସେ ପାର୍ଟିସନ୍ ପରେ
ଆସିଛନ୍ତି, ସେଇଥିକି ତାଙ୍କୁ ରାଜ୍ୟର ପ୍ରଜା ହିସାବରେ ଗଣା ହେଉନାହିଁ । ତେଣୁ
ବେଚାରା ଜମିଖଣ୍ଡେ କିଣି ପାରିଲେ ନାହିଁ ! ଟିକ୍କୁ ସାହେବ କାଶ୍ମୀର ପଣ୍ଡିତ
ପରା ? ସେ କେମିତି ଗୁପ୍ତାଜୀଙ୍କ ନାଆଁରେ— ? ଅମଜାଦ ଅଲ୍ଲୀ ସେଇ ଧର୍ମ
ପାଗଳ ଟୋକା ସମ୍ପ୍ରଦାୟ ନିହାର କୋଉ ଗୁଣ୍ଡୁଗୁରୀଙ୍କ ଜ୍ଞାନ ଗାରିମା ବଖାଣିବାକୁ
ଲାଗିଲେ । ଟୋକା ଉଗ୍ରପନ୍ଥୀ ସନ୍ଦେହ ନାହିଁ, ହେଲେ ତା'ର ଲୋକମାନେ
ସରକାରୀ ଦଳର ନେତା ଅମଜାଦ୍ ଆଲିଙ୍କର ପ୍ରୀତିଭାଜନ ହେଲେ କେମିତି ?
ଆଉ ଜଣେ ବୁଦ୍ଧିମାନ ବ୍ୟକ୍ତି, ଟାଇ ପିନ୍ଧି ଆସିଛନ୍ତି, ଆଇ. ଏ. ଏସ୍: ଅଫିସର, ସେ
ବୋଧହୁଏ ପ୍ରାଣବନ୍ଧୁର ବିମୂଢ଼ତା ଲକ୍ଷ୍ୟ କରି ପାରିଲେ । ବେଲ ବୁଝି ଜଣେଇ
ଦେଲେ ଯେ ଆଲି ସାହେବଙ୍କର ଉପରୋକ୍ତ ସ୍ୱାମୀଙ୍କ ସାଙ୍ଗରେ ଅନ୍ତରଙ୍ଗ ସମ୍ପର୍କ
ଥିଲା; କିନ୍ତୁ ଭଦ୍ରମହିଳା ସୀମା ପାର ହୋଇ ଚାଲିଗଲେଣି, ଫେରି ଆସିବାର
ପ୍ରଶ୍ନ ଉଠୁନାହିଁ । ହାୟ ! ପ୍ରାଣବନ୍ଧୁ ଆଲୁଅ ଦେଖିଲ ପରି ମନେ ହେଉ
ନାହିଁ ।

ଏହିପରି ଭାବରେ ଆସର ସରଗରମ ହେଲା, ଲମ୍ବିଗଲା ଭୋଜନ ଯାଏଁ ।
ପ୍ରାଣବନ୍ଧୁର ଇଚ୍ଛାଥିଲା କାଶ୍ମୀରର ଅପରୂପ ସୁନ୍ଦରତାକୁ ନେଇ କେତେଗୁଡ଼ିଏ
ପ୍ରଶ୍ନ କରିବ, ଉତ୍ତର ପାଇ କଲ୍ପନାକୁ ଆହୁରି ସଜେଇବ, ଘରକୁ ଗଲେ ବଖାଣିବ ।
ଯଥା,—ଏଡ଼େ ମୋଟାଗଣ୍ଡି ଚନାରମାନଙ୍କର ପତ୍ରଗୁଡ଼ିକ ଏତେ ସୂକ୍ଷ୍ମ ହେଲେ
କେମିତି ? ଶରତ ଋତୁରେ ପତ୍ରଗୁଡ଼ିକ ନାଲି ରଙ୍ଗରେ ଜଳି ଉଠିଲେ ହ୍ରଦ
କେମିତି ଦେଖାଯାଏ ? ପାହାଡ଼ର କଣ ହୁଏ ? ଡେଙ୍ଗା ପପ୍ଲର ସେମାନଙ୍କୁ
ଛୁଇଁବ ବୋଲି ଛଟପଟ ହୁଏ ? ଅଚ୍ଛା, ବାଉଁଶପତ୍ରିଆ କନକନିଆ ଉଇଲୋ ଗଛ
ଏତେ ଟାଣ ହେଲା କେମିତି ଯେ ସେଥିରେ କ୍ରିକେଟ୍ ବ୍ୟାଟ୍ ଗଢ଼ା ହୋଇ ପାରୁଛି ?
ଅଥବା ଆନ୍ତଃପ୍ରାଦେଶିକ ମୈତ୍ରୀଭାବ ଦେଖାଇ କହିବ—ଜାଣିଛନ୍ତି ? କାଶ୍ମୀରର
ସୁନାନାଲି ଧାନକ୍ଷେତ, ଓଡ଼ଣାଦିଆ ଛପରଘର ଦେଖିଲେ ମୋତେ ମନେହୁଏ ଯେ
ମୁଁ ଉତ୍ତର ଭାରତରେ ନାହିଁ, ଓଡ଼ିଶାକୁ ଫେରିଯାଇଛି ଇତ୍ୟାଦି; କିନ୍ତୁ କାହାକୁ
ପଚାରିବ ନା ଜଣେଇବ ? କିଏ ତା'ର ଉତ୍ତର ଦେବ ? ଥରେ ସେ ଭାବିଲା ଯେ
ପୁରୁଷମାନଙ୍କୁ ବାଦ ଦେଇ ଉପରେ ପଡ଼ି ତାଙ୍କ ପତ୍ନୀ କନ୍ୟାଙ୍କୁ ପଚାରିବ,
ଝିଅମାନେ ପାଖାପାଖି ହୋଇ ବସିଛନ୍ତି, ନିଜ ଭିତରେ ମାଇପି କଥା ଗପୁଛନ୍ତି

କିନ୍ତୁ ସେ ବ୍ୟୂହ ଭିତରକୁ ପଶି ପାରିଲା ନାହିଁ । ତେବେ ସେ ପୁଣି ସ୍ଥିର କଲା
ଯେ ସେ ଆଜି ଯେମିତି ହେଲେ ସଲ୍‌ମା ସାଙ୍ଗରେ କଥା କହିବ । କିଛି ନା କିଛି
ପ୍ରଶ୍ନ ପଚାରିବ ।

ସଲ୍‌ମା କାହିଁ ? ଏ କେମିତିକା ପାର୍ଟି ଯେ ହୋଷ୍ଟେସ୍‌ଙ୍କ ଦେଖା ଦର୍ଶନ
ନାହିଁ ? ପ୍ରାଣବନ୍ଧୁ ସ୍ୱାମୀ ସାଦିକ୍‌ର ଦୋଷ ଦେଲା । ଭାବିଲା ମୋ'ର ଶାନ୍ତ ହୋଇ-
ଥିଲେ —

ଭୋଜନ ଅଧା ହେଲାବେଳକୁ ସଲ୍‌ମାର ଆବିର୍ଭାବ ହେଲା, କିନ୍ତୁ ମନେ
ହେଲା ସେ କେବଳ ଛବିରେ ଠିଆହେବାପାଇଁ ଆସିଛି । ପରିବାର ଗହଣରେ ଠିଆ
ହୋଇ ମୋତେ ଦେଖି ପାର ବୋଲି କହୁଛି !

ସାଦିକ୍‌ର ଇଚ୍ଛା ଅନୁଯାୟୀ ଅତିଥିମାନେ ତଳେ ଦରି ଉପରେ ବସି ଭୃତ୍ୟ
ହାତରେ ବଦନାରୁ ଢଳା ହେଉଥିବା ପାଣିରେ ହାତ ଧୋଇ ଗୋଟିକ ପରେ
ଗୋଟିଏ ପରଷା ହେଉଥିବା ପଲାଉ, ଶର୍ମା, ଗୁସ୍ତାବା, ତବକ୍ ମାଂସ ଇତ୍ୟାଦିର
ଅପୂର୍ବ ଚର୍ବ୍ୟତା ଓ ଶ୍ରେଷ୍ଠତାର ପ୍ରଶଂସା କରୁଥିଲେ । ମାଂସକୁ କେତେ
ସିଝେଇଲେ ଏମିତି ଲହୁଣୀ ପରି ହୋଇଯାଏ ? ଦହିରେ ସିଝା ହୁଏ ନା ଦୁଧରେ
ନରମା ଆଞ୍ଚରେ ? କେତେ ସମୟ ? ପ୍ରାଣବନ୍ଧୁର ମନ ହେଉଥିଲା ଏଇଥିରୁ ଗୋଟିଏ
ପ୍ରଶ୍ନ ପଚାରିବ, ଯାହାର ଉତ୍ତର ଦେବା ପାଇଁ କାଶ୍ମୀର ଝିଅମାନେ ଆଗଭର ହେବେ,
ସମସ୍ୱରରେ ବିଚିତ୍ର ସମତଳଟିକୁ ବୁଝେଇ ଦେବେ; କିନ୍ତୁ କେଜାଣି କାହିଁକି
ସଲ୍‌ମାକୁ ଦେଖିଲା କ୍ଷଣି ତା'ର ପ୍ରଶ୍ନର ଉଙ୍କ ମୋଡ଼ି ହୋଇଗଲା । ଯେମିତିକି
ସଲ୍‌ମା ତା'କୁ ଧମକେଇ ଦେବ ଯେ ମୁଁ ସତରେ ଉତ୍ତର ମାଗୁନାହିଁ'
କାଶ୍ମୀର ପୁଣି କେଉଁ ଆଡ଼କୁ ଚଳିବ, କେଉଁ ମତେ ହସିବ, କେଉଁ ମତେ ଭାଙ୍ଗିବ
ଜାଣିବାକୁ ଚାହୁଁଛି ! ଆରେ, ମୁଁ ଅପର ନୁହେଁ ମ । ମୁଁ ପଦ୍ମ ତୋର ସ୍ୱାମୀ ଧାଙ୍ଗ ।

ସଲମା ପଦୁଟିଏ କଥା କହୁ ନ ଥିଲା । ପରିବାରର ଅନ୍ୟାନ୍ୟ ଅତିଥି-
ସତ୍କାରିଣୀମାନେ ସାଦିକ୍‌ର ମାଆ, ବିବାହିତା ଭଉଣୀ, ଅବିବାହିତା ଭଉଣୀ
ଓଗେରଙ୍କ ସାଙ୍ଗରେ ଜଣେ ହୋଇ ଛିଡ଼ାହୋଇ ରହିଥିଲା । ସେମାନେ କୋଉ
କଥାରେ ହସିଲାବେଳେ ତା'ର ଓଠ ରେଖା ମଧ୍ୟ ଲମ୍ବି ଯାଉଥିଲା । ସତେକି
କହୁଛି ଯେ ତୁମମାନଙ୍କ ସାଙ୍ଗରେ ମୁଁ ମଧ୍ୟ ହସୁଛି, ଦେଖି ପାର ।

ପ୍ରାଣବନ୍ଧୁର ଖିଆଲ ହେଲା ଯେ ପ୍ରକୃତରେ ଏଇ ଅବସ୍ଥାରେ ତା'କୁ ଭଲ
ଭାବରେ ଦେଖି ହେଉଛି, କାହିଁକିନା ସେ କେବଳ ତା'ର ନିଜତ୍ୱକୁ ଘୁଞ୍ଚେଇବା
ପାଇଁ ଠିଆହୋଇଛି ସେମିତି । ହସି ନ ହସିଲା ପରି, ମୂକ ହୋଇ ଅସାମାନ୍ୟ

କଥାମାନଙ୍କୁ ତା'ର ଅଣହସରେ ଅଟକେଇ ରଖିଲା ପରେ, ଗୃହିଣୀରେ ଅନେକ ଅପେକ୍ଷାର ଧୈର୍ଯ୍ୟ ଦେଖାଇ ଠିଆ ହୋଇ ରହିଛି । ମୋତେ ଚିହ୍ନିବ ଯଦି ଚିହ୍ନ ବୋଲି ଚ୍ୟାଲେଂଜ କରୁଛି ।

ଚିହ୍ନିବାର କଅଣ ଅଛି ? ସଦା ପ୍ରଫୁଲ୍ଲ ସର୍ବପ୍ରିୟ ସାହେବ୍‌ର ସ୍ତ୍ରୀ, ତା'ର ଚିନ୍ତା କଅଣ ? ଧନୀ ଟ୍ରକ୍ ସରବରାହକାରୀ ସମ୍ଭ୍ରାନ୍ତ କାଶ୍ମୀରୀ ଶେଖ ଶଉକତ୍ ଆଲିଙ୍କ ବୋହୂ, ତା'ର ଯୌନବୋଧ କେଉଁଠି ? ମୌନତା କାହିଁକି ?

ସାନ ମଣିଷଟିଏ । ପାତଳୀ, କିନ୍ତୁ ଡେଙ୍ଗା ନୁହେଁ । ସରୁନାକୀ ବଣାକାଷି ସୁନ୍ଦରୀ; କିନ୍ତୁ ଗାଲ ପୋଚି ହୋଇ ଯାଇଛି, ଯେତେକି ନାସି ମାଂସ ଉପରକୁ ଟାଣି ହୋଇ ରହିଛି, ଭିତରକୁ ସଜଡ଼ା ହୋଇଥିବ ପରି । ଯେମିତିକି ସୁନ୍ଦରତା ମୌଳିକ, ମାଂସଳ ନୁହେଁ ବୋଲି ପ୍ରମାଣିତ ହେଉଛି; କିନ୍ତୁ ତା'ର ଯୌନବୋଧ ଟିକେ ଆଜି ଅଛି ବୋଲି କିଏ କହିବ ? ସେ ତ ଗୋଟାଏ ଝର୍ଣ୍ଣା ! ଯେତେକି ଝବଝବନା ପୋଛି ଦେଇ ସାରିଲାଣି, କ୍ରୋଧକୁ ମଧ୍ୟ ପାରହୋଇ ଗଲାଣି, ଯେହେତୁ ସେ ଜାଣିଗଲାଣି ତା'ର କାମ କଅଣ । ଖାଲି ଅପେକ୍ଷା କରୁଛି । ଦେଖି ନାହିଁ ଝର୍ଣ୍ଣା କେମିତି ଉଦ୍ୟତ ହୋଇ ହୋଇ ଝାଳେଇ ଯାଏ, ହେଲେ ଶତସହସ୍ର ବିନ୍ଦୁରେ ଚକ୍ ଚକ୍ କରେ ? ପ୍ରାଣବନ୍ଧୁଙ୍କୁ ଭୟ ଲାଗିଲା, ସେ ଶାନ୍ତିକୁ ସ୍ମରଣ କଲା, କିନ୍ତୁ ମନେ ହେଲା ସଲ୍‌ମା ଶାନ୍ତିକୁ ପାଖରେ ପୂରେଇ ଦେଇ ନାହିଁ । କହୁଛି ସେ ତ ସାମାନ୍ୟ ସ୍ତ୍ରୀ, ସ୍ୱାମୀର, ଘର କରଣାର, କୋଉ ବୁଦ୍ଧିରେ ଭାବିଛ ଯେ ସେ ମୋତେ ହଟେଇ ଦେଇ ପାରିବ ?

ସେଇଠୁ ପ୍ରାଣବନ୍ଧୁ ନାରୀମୂର୍ତ୍ତିକୁ ସ୍ୱାଗତ ନମସ୍କାର କଲା । କହିଲା ହଁ, ହଁ, ମୁଁ ଜାଣିଛି ତମେ ସାମାନ୍ୟ ସ୍ତ୍ରୀ, ଗୃହିଣୀ ନୁହଁ । ମୁଁ କହିବାକୁ ଭରସି ପାରିବି ନାହିଁ ଯେ ତମେ ସର୍ବସାଧାରଣଙ୍କ ପରି ଶାଶୁ ଶ୍ୱଶୁରଙ୍କ ଅତ୍ୟାଚାର, ନଣନ୍ଦ ଯାଉଜଙ୍କ ଗଞ୍ଜଣା, ସ୍ୱାମୀର ଅବହେଳା ଇତ୍ୟାଦିର ମାମୁଲି ଆଘାତରେ କଷ୍ଟ ପାଉଛ । ଅଥବା ଚୁଁ ଚାଁ କରିବାର ସାହସ ନାହିଁ । କାହିଁକିନା ତମେ ତା'ଙ୍କୁ କିଛି ଗୋଟାଏ ସାମୂହିକ କ୍ରୋଧରେ ମିଶେଇ ଦେଇ ପାରିଛ ବୋଲି ବିଶ୍ୱାସ ହେଉଛି । ତମେ କେବଳ ସୁନ୍ଦରୀ ନୁହେଁ । ସଚତା, ସପାଦତା, ସାଲ୍ୟ ବହ୍ନିନା ଝର୍ଣ୍ଣା ।

ଭଲ, ଭଲ କାଟିଦିଅ । ଏଇ ଗୁପ୍ତାଙ୍ଗମାନଙ୍କୁ, ଟିକ୍‌ଲୁ, ଜୁହା, ଅମ୍‌ଜାଦ୍ ଅଲିମାନଙ୍କୁ । ଏଇ ମିଛମାନଙ୍କୁ । ଯେଉଁମାନେ ରାଜନୀତି ନାଆଁରେ, ଉଦ୍ୟୋଗ ନାଆଁରେ, ଧର୍ମ ନାଆଁରେ, ସ୍ୱାର୍ଥର ଖେଳ ଖେଳନ୍ତି, ମିଛମିଛିକା ଝୁଣ୍ଟି ହୁଅନ୍ତି. ରାଗନ୍ତି, ଯୁଦ୍ଧ କରନ୍ତି, ଗୁପ୍ତାଙ୍ଗ ଅମର ବୋଲି ପାର୍ଟି କରନ୍ତି । ହଁ, ଅବଶ୍ୟକ ହେଲେ

ସାଦିକ୍‌ର ଉଚ୍ଛଳ ଯୌବନକୁ, ଶଳା ସବୁ ଭଲ, ସବୁ ସମାନର ଅଜାତଙ୍କୁ, ବେପରୁଆ ପର୍ବତର ଉଚ୍ଚ ହସକୁ ମଧ୍ୟ କାଟିଦିଅ ।…କିନ୍ତୁ ମୋତେ ଡର ମାଡ଼ୁଛି ଯେ ଇସ୍‌ପାତର ଆଖି ନାହିଁ, କାନ ନାହିଁ । ଥରେ ଖଣ୍ଡା ଚାଲିଲେ ନାଲି ଟୁକୁଟୁକୁ ଚେରିଗୁଡ଼ାକ ନଷ୍ଟ ହୋଇଯିବ, କ୍ଷେତରେ ହଳଦ ଗଣ୍ଡିଆ କୁନ୍ଦୁମୁନିଆ ଜାଫ୍ରାନ କେଶର ଝଡ଼ି ପଡ଼ିବ, ଆପଲରେ ପୋକ ଲାଗିବ, ଚିନାର୍ ପତ୍ରରେ ରକ୍ତ ଜମିଯିବ ଶୈଳଶିଖରମାନଙ୍କରୁ ବରଫ ଧାର ଧାର ହୋଇ ବହି ଆସିବ ଓ ଶ୍ୟାମଳ ଭୂଧରକୁ ହିଡ଼ାଣ ଦେବ, ହ୍ରଦର ନୀଳ ପାଣି ଫାଟିଯିବ, କଇଁ ଫୁଟିବ ନାହିଁ, ଡଙ୍ଗା ଭାସିବ ନାହିଁ, ବାଳିକା ହସିବ ନାହିଁ,…କାଶ୍ମୀର ଛାରଖାର ହୋଇଯିବ !

ପ୍ରାଣବନ୍ଧୁ ଭାବି ନ ଥିଲା ଯେ ଏଥି ଉତ୍ତରରୁ, ସ୍ୱାମୀ ପ୍ରତିମା କଥା କହିବ । ତା'ର ସାଙ୍ଗରେ କଥା କହିବ । ଭୋଜନ ପରେ ଅତିଥିମାନେ ବୈଠକ ଘରେ ବସି ପୁଣି ଥରେ କାହ୍ୱା'ର ଧୂଆଁ ସାଙ୍ଗକୁ ସିଗାରେଟ ଧୂଆଁ ଉଡ଼େଇଲାବେଳେ (ପ୍ରାଣବନ୍ଧୁ ବୃଥାରେ ଆଶା କରିଥିଲା ସେ ଶୌକତ ଅଲି ହୁକ୍‌କା ପାନର ଦୃଶ୍ୟ ଦେଖାଇବେ) ସଲ୍‌ମା ପ୍ରାଣବନ୍ଧୁର ପାଖରେ ଆସି ବସିଲା ଓ ତା'ର ପ୍ରଥମ କୁଶଳ ପ୍ରଶ୍ନ ହେଲା,

—ଭାଉଜଙ୍କୁ ସାଙ୍ଗରେ ଆଣିଲେ ନାହିଁ କାହିଁକି ?

ଶେଷକୁ ତମର ମଧ୍ୟ ଏଇ ଅବାନ୍ତର ପ୍ରଶ୍ନ ପଚାରିବାକୁ ଥିଲା ! ପ୍ରାଣବନ୍ଧୁ ଆଶ୍ଚର୍ଯ୍ୟ ହେଲା ଚିଡ଼ି ଉଠିଲା ଏବଂ ମନେ ମନେ ଟାଣୁଆ ଉତ୍ତର ଯୋଗାଇଲା,— "ନାହିଁ, ନାହିଁ, ନାହିଁ ! ମୁଁ ଶାନ୍ତକୁ ଏଠିକି ଆଣିବ ନାହିଁ ! ମୁଁ ଶାନ୍ତକୁ ଏଠିକି ଆଣିବ ନାହିଁ, କଦାପି ଆଣିବ ନାହିଁ ! ତମ ସାଙ୍ଗରେ ମିଶିବାକୁ ଦେବ ନାହିଁ !"

ହେଲେ ସେ ମଧ୍ୟ ଅବାନ୍ତର ଓଲଟା ପ୍ରଶ୍ନ ପଚାରି ବସିଲା—ମୁନ୍‌ନା କଣ ଶୋଇ ପଡ଼ିଲାଣି ? ମୁଁ ଯେଉଁ ଖେଲୁ କଣ୍ଢେଇ ଆଣିଥିଲି ମୁନ୍ନା ପାଇଁ, ତା'କୁ ସେ ଦେଖି ଡରିଲାନାହିଁ ତ ? ସତେକି ତାଙ୍କୁ ମା ବୋଲି ଚେତେଇ ଦେଲେ ହାଉଆ ଲଦକା ଯିବ । ଖଣ୍ଡା ଝୁଲେଇ ଯିବ ।

× × ×

ମନ ଭିତରୁ କାଶ୍ମୀର ଉଭେଇଯିବା ଅସମ୍ଭବ ଏବଂ କାଶ୍ମୀର ଦେଖା ଦେଲା ମାତ୍ରେ ହିଁ ସାଦିକ୍‌ର ଉଚ୍ଚ ହସ ଶୁଭିଯାଏ, ସେଇଠୁଁ ଝୁଲିଥିବା ଖଣ୍ଡା, ତା'କୁ ବାରଣ କରି ହୁଏନାହିଁ । କେତେ ବର୍ଷ ବିତି ଗଲାଣି, ସେଠିକି ଯିବାର ସ୍ୱପ୍ନ ଉଠି ନାହିଁ । ପ୍ରାଣବନ୍ଧୁ ପ୍ରମାଦ ଗଣେ ଯେ ଶାନ୍ତ ଦିନେ ନା ଦିନେ ମନେ

ପକାଇଦେବ—ମୋତେ 'କଥା ଦେଇଥିଲ ପରା ? ଭୁଲି ଗଲ ? ଖୁବ ଖୁସି ହୁଏ ସେ ଶାନ୍ତ ବୋଧହୁଏ ଭୁଲିଯାଇଛ ।

ସେଉଁ ଦିନ ଶାନ୍ତ ମନେ ପକାଇ ଦେଲା, ପ୍ରାଣବନ୍ଧୁର ଚମକି ପଡ଼ିବା ସ୍ୱାଭାବିକ; କିନ୍ତୁ ଚମକିଲା ଉତ୍ତରୁ ତା'ର ହୁଁ ଭରିବା ଉଚିତ୍ ଥିଲା । ଏଇକ୍ଷଣି ନ ହେଲେ ଆସନ୍ତା ପୂଜାଛୁଟି ବେଳକୁ ଯିବା, ନିଶ୍ଚୟ ଯିବା, ମରଦଙ୍କା ବାତ୍, ଏହିପରି ଅଭିମାନିନୀକୁ ପ୍ରତିଶ୍ରୁତି ଦେଇ ଖୁସି କରେଇବା ଉଚିତ୍ ଥିଲା । କାରଣ ଅଳ୍ପଦିନ ପୂର୍ବରୁ ସେ ଗୋଟିଏ ଚିଠି ପାଇଥିଲା । ଚିଠିର ସମ୍ବାଦରେ ଆଶଙ୍କା ନାଶ ହୋଇଯିବାର କଥା ।

ଶାନ୍ତ ପ୍ରାଣବନ୍ଧୁର କୋଳରେ ଶୋଇଥିଲା । ଓଡ଼ିଶାର ଗୋଟିଏ ଶ୍ରେଷ୍ଠ ସହରରେ ସାନ ଇଞ୍ଜିନିଅର ଲଷିଶି ସରକାରୀ କ୍ୱାର୍ଟର୍ସର ଶୋଇବା ଘର ଝରକାରୁ ନଡ଼ିଆ ନାଲି ମନ୍ଦାର ତା ପଛକୁ ପଡ଼ୋଶୀର ଗୁହାଳ ଘର ଉପରେ ଅଣ୍ଟେଇଥିବ । ପାଣି କଖାରୁ, ଊର୍ଦ୍ଧ୍ୱରେ ସୀମା ଲେପି ହୋଇଯାଇଥିବା ବଡ଼ନ୍ତା କନ୍ଦା, ସମସ୍ତଙ୍କୁ ଦେଖି ଚହଟି ହେଉଥିଲା । ଉଦାସିଆ ଶାନ୍ତ ପରି ସେମାନେ ମଧ୍ୟ ଉଦାସ ଦିଶୁ-ଥିଲେ । ପ୍ରାଣବନ୍ଧୁର ମନେ ହେଉଥିଲା ଯେ ଏଇ ଉଦାସ ଭାବ ଅତି ଆପଣାର, ଉଚ୍ଚ ନୀଚ ନାହିଁ, ଉଠାପଡ଼ା ନାହିଁ, ଗୋଟାଏ ମଧୁରିଆ ଅସମାପିକାର ଆବେଶ···

ମୋ ଶାନ୍ତ ପରି କଏ ହେବ ? ବାହାଘର ଆସି ସାତ ଆଠ ବର୍ଷ ହେଲାଣି, ତା'ର ସେଇଟିଇ ହେବା ଗୁଣ, ଅଭିମାନୀ ପଣ, ଉଦାସ ଭାବ, କିଛି ବଦଳି ନାହିଁ । ରହିଛି, କିନ୍ତୁ ରାଗ ରୁହୁଁ ରୁହୁଁ ଲୁହରେ ମିଳେଇ ଯାଉଛି, ଲୁହ ବୋଳା ମୁହଁ ମୋ ଛାତିରେ ଗୁଞ୍ଜି ହେଉଛି । ଏତେ ବର୍ଷ ହେଲାଣି ପିଲାଟିଏ ହେଲାନାହିଁ, ଏଇ ବଡ଼ ଅପୂରଣଟି ମଧ୍ୟ ସେଇ ଚିରନ୍ତନୀ ଆବେଶରେ ମିଶି ଯାଇଛି, ଅଲଗା ହୋଇ ଦିଶିବାକୁ ସାହସ କରୁନାହିଁ । ତେଣୁ ଶାନ୍ତ ଯେତେବେଳେ ଓଦା ଗୃହାଣୀର ଲକ୍ଷଣ ଦେଖାଇ କହିଲା ଚାଲ ପଳେଇ ଯିବା ଏଠୁ, ଦୂରକୁ, ଅନେକ ଦୂରକୁ ପ୍ରାଣବନ୍ଧୁ ଚିର ପରିଚିତ ଭାବଟିକୁ ଚୁମା ଦେବାକୁ ଲାଗିଲା, ଧୂଳିଚୁକା ଗାଲ ପାରି ହୋଇ ଓଠକୁ, ଓଠରୁ ଆଖିପତା । ବେଉ ତା' ବାପ ଘରକୁ ଦେଖେଇ ଦେଖେଇ ପୁଣି କଣ କହିଲା, ସାନଭାଇ ମୁହଁ ଝାଡ଼ ଦେଲା, ନା ଅନାଗତ ସନ୍ତାନ ହଠାତ୍ କାନ୍ଦି ଉଠିଲା, ଇତ୍ୟାଦିର ସମ୍ଭାବନା ମନକୁ ଆଣିଲା ନାହିଁ; କିନ୍ତୁ ଶାନ୍ତ ସେଇଟାକୁ ଅସ୍ୱୀକାର କଲାପରି ଉଠି ପଡ଼ିଲା ଓ କହିଲା,—''ତମେ କହୁଥିଲ ପରା ମୋତେ କାଶ୍ମୀରକୁ ନେଇଯିବ ? ଆଉ କେବେ ନେବ ? ମରିଗଲା ପରେ ?''

ସେଇଠୁଁ ଯାଇଁ ପ୍ରାଣବନ୍ଧୁ ଚମକି ଉଠିଲା । ଇଏ କଅଣ ? ଶାନ୍ତର କଅଣ ହେଲା ? ପୁଣି ସେଇ କାଶ୍ମୀର ???

ଅବଶ୍ୟ କାଶ୍ମୀରରେ ସଲମା ନାହିଁ । ସୀମା ପାର ହୋଇ ଶତ୍ରୁ ଅଧିକୃତ ଇଲାକାକୁ ଚାଲି ଯାଇଛି, ସେଇଠି ତାର ବାପ ଭାଇ ଅଛନ୍ତି । ଫେରିବାର ଆଶା କମ୍ । ପୁଣି ଚିଠିରେ ଲେଖା ଥିଲା ଯେ ସଲ୍ମାର ଗୋଟିଏ ଭାଇ ଗତ ଯୁଦ୍ଧରେ ଭାରତର ଯୁଦ୍ଧବନ୍ଦୀ ହୋଇଥିଲା, ହେଲେ ଭାଇ ଭଉଣୀଙ୍କ ସାକ୍ଷାତ ହୋଇ ନାହିଁ । ···ଯାଉ, ମୋଟେ ନ ଫେରୁ । ସାଢକ୍ ଅଉ ଗୋଟାଏ ବାହା ହେଉ, ଅହୁର କୋଳରେ ବସୁ, ମିଆଁ ବିବିଙ୍କୁ ଏକାଠି କରିବା ପାଇଁ ଯୁଦ୍ଧର ଆଡ଼ମ୍ବର କରୁ, ଯାହା କରିବାର କରୁ, ମୋ'ର କିଛି ଯାଏ ଆସେ ନାହିଁ । ମୁଁ ମୋ ଶାନ୍ତକୁ ସେଠିକି ନେବିନାହିଁ । ସେଠି ସଲମାର ଭୂତ ଅଛି, ଖଣ୍ଡା ଧାର ତଥାପି ଚକ୍ ଚକ୍ କରୁଛି ।

ଶାନ୍ତ ପକ୍ଷର ଓକିଲ ତା' ମନକୁ ବୁଝାଇବାକୁ ଚେଷ୍ଟା କଲା । ଆରେ, ତୋ ଶାନ୍ତ କୁଆଡ଼େ ଯିବ ମ ? ସେ କୋଉ ସୀମା ଟପି ପଳେଇବ ? ଗଲେ ଯିବ ଭଦ୍ରକ, ତା' ବାପ ଘରକୁ, ନ ହେଲେ ମାମୁଁ ଘର ବାରିପଦା । ତଥାପି ପ୍ରାଣବନ୍ଧୁର ନିଷ୍ପତ୍ତି ବଦଳିଲା ନାହିଁ । ସେ ଶାନ୍ତକୁ କେବଳ ଥାପୁଡ଼େଇବାକୁ ଲାଗିଲା, କହିଲା, ଯିବା, କୋଉଠିକି ହେଲେ ଯିବା, କୁଲୁ, କାମାକ୍ଷା, କନ୍ୟାକୁମାରୀ ।

—O—

# ଶାଶ୍ୱତୀ

"ଆମ ବାପାଙ୍କ ମୁହାଁ ଅନେକଟା ମାଙ୍କଡ଼ ପରି ନୁହେଁ କି ?"

ଯେତେ ଆଧୁନିକା, ସ୍ୱାଧୀନଚେତା, ସ୍ୱାଧୀନା, ଲିବରେଟେଡ୍ ହେଲେ ମଧ୍ୟ ଝିଅ ତା' ବାପାଙ୍କ ବିଷୟରେ ଏମିତି କହିବ, ପୁଣି ଜଣେ ବାହାର ଲୋକ ଆଗରେ, ଯାହାକୁ ସେ ତିରିଶ ଘଣ୍ଟା ପୂର୍ବରୁ ମୋଟେ ଚିହ୍ନି ନଥିଲା···ପରେଶନାଥ ଚମକି ଉଠିଲାପରି ସାମନାରେ ବସିଥିବା ସୁଦୀର୍ଘା ସୁତନୁକୁ ଅନେଇଲା ଏବଂ ଆଖି ଫାଡ଼ି ଫାଡ଼ି ଭରି ଅନେଇ ରହିଲା । କଥାଟା ପରିହାସ ଛଳରେ କହିଥିଲେ ହୁଏତ କ୍ଷମା କରିହୁଅନ୍ତା; କିନ୍ତୁ ତା ମଧ୍ୟ ନୁହେଁ । ଲଘୁ ଆମୋଦର ଚିହ୍ନ ବି ନାହିଁ । ବରଂ ତା' ଟିପା ଓଠର କୋଣରେ ଗୋଟାଏ ଦୀର୍ଘସ୍ପର୍ଶୀ ନିଷ୍ଠୁରତାର ବିଳାସ । କେଡ଼େ ସରଳ ପରେ କହୁଛି—କେମିତି ଲାଗିଲା ? ପରେଶନାଥ ଜଳି ଉଠିବାକୁ ଚାହିଁଲା । ଡେଙ୍ଗୀ ଟୋକୀ ନିଜକୁ କଣ ଭାବୁଛି କି, ଏ ରଙ୍ଗ ରହିବ ନାହିଁ, ଏହି ସମୟରେ ମନେ ମନେ ଅନେକ କଥା କହିଗଲା, ଧିକ୍କାରିଲା, ଅଭିଶାପ ଦେଲା । ହୁଏତ ପଳେଇ ଆସି ପାରିଥାଆନ୍ତା; କିନ୍ତୁ ସେ ଭୁଲିଯାଇ ପାରିଲା-ନାହିଁ ଯେ ମାଙ୍କଡ଼ମୁହାଁ ଭଦ୍ରଲୋକଙ୍କ ଆଦେଶ ପାଳିବାକୁ ପଡ଼ିବ । ସେ ହେଉଛନ୍ତି ତାର ଉପର ଅଧିକାରୀ । ଲଣ୍ଡନ ଅଭିମୁଖରେ ବାହାରିବା ପୂର୍ବରୁ ମାଉସୀଙ୍କଠାରୁ ବିଦାୟ ନେଲାବେଳେ ଏଇ ପଦଟି ବାରମ୍ବାର ଶୁଣିବାକୁ ପଡ଼ିଥିଲା—ଶାଶ୍ୱତୀ ସାଙ୍ଗରେ ଟିକିଏ ଦେଖାକରି ଆସିବ । ତା'ର ଭଲ ମନ୍ଦ ପଚାରି ନେବ । ବୁଝିଲୁ ?

ଭାରି ବିଚକ୍ଷଣ ସାର୍ । କେବଳ ଉପର ଅଧିକାରୀ ନୁହେଁ, ପ୍ରାୟ ସର୍ବୋଚ୍ଚ ଅଧିକାରୀ କହିଲେ ଚଳେ । କାରଣ ତାଙ୍କ ଉପରକୁ ଯିଏ, ସେ ସମ୍ବିଧାନଗତ ରାଷ୍ଟ୍ରପତିଙ୍କ ପରି, କେବଳ ନାମୀୟା ପୁରୁଷ । ତା ଛଡ଼ା ସେ ଆମ ଅଞ୍ଚଳରୁ ଆସିଛନ୍ତି । ପରେଶନାଥ ସାର୍ଙ୍କ ଆଜ୍ଞାବଦ୍ଧ ହୋଇ ଏଠିକି ଆସିଛି ବୋଲି ନିଜକୁ ଚେତାଇ ଦେବା ସଙ୍ଗେ ସଙ୍ଗେ ଶାଶ୍ୱତୀକୁ ଜଣାଇବାକୁ ଚାହିଁଲା ଯେ ମୋର ତୁମ ଉପରେ ରାଗିବାର ଟିକିଏ ଅଧିକାର ଅଛି । ସେ ତୁମର ବାପା ହୋଇପାରନ୍ତି, କିନ୍ତୁ ସେ ମୋର ନମସ୍ୟ । ଯଥାର୍ଥରେ ନମସ୍ୟ ।

ହାତଲେଖା ମୁକ୍ତା ପରି । ଫାଇଲ୍ ଥାକ ଥାକ ହୋଇ ସଜା ହୋଇଥିବ, କାମ ସରିଲେ ଗୋଟି ଗୋଟି ହୋଇ ଫିତାବନ୍ଧା ହୋଇ "ଅଫର୍" ଟ୍ରେରେ ରଖା ହେବ । ଟିକିଏ ଏପାଖ ସେପାଖ ହେବ ନାହିଁ । ନାକିରେ ଥିବା ଚଷମା କାଢ଼ିବାକୁ ହେଲେ ତାକୁ କେମିତି ଧୀରେ ସମାନ୍ତରାଳଭାବେ ରଖା ହୁଏ, ତାହା ମଧ୍ୟ ଦେଖିବାର କଥା । ପରିଚ୍ଛନ୍ନତାର ଆହୁରି ଅନେକ ଦିଗ ଅଛି—ପକେଟ୍‌ର ରୁମାଲ, ମୁଣ୍ଡର ଟୋପି, ଟ୍ରାଉଜରର ଭାଙ୍ଗ ଇତ୍ୟାଦି; କିନ୍ତୁ ସବୁଠାରୁ ବିସ୍ମୟଜନକ ହେଉଛି ତାଙ୍କର ଉଚ୍ଚାରଣ । ସେ କେବଳ ବସେଇ ବସେଇ କଥା କହନ୍ତି ନାହିଁ, ପ୍ରତ୍ୟେକ ଶବ୍ଦ ଶାସ୍ତ୍ରୀୟ ମତରେ ଉଚ୍ଚାରଣ କରନ୍ତି । ପରେଶନାଥ ବୋଲି ଡାକିଲେ ତାଳବ୍ୟ ଶ ଅନବଦ୍ୟ ହୋଇ ଫୁଟି ଉଠେ ଏବଂ ଲକ୍ଷ୍ୟ କରିବାର ବିଷୟ ଯେ ଝିଅର ନାଆଁ ବେଶ୍ ଓଜନିଆ ହେଲେ ମଧ୍ୟ ସେ ତାକୁ ଛୋଟ କରି ଡାକନ୍ତି ନାହିଁ । ତିନୋଟି ଯାକ ଅକ୍ଷର ଶ-ଶ୍ୱ-ତୀ ପରିଷ୍କାର ତାଳବ୍ୟ ତଥା ବ ଫଳା ଓ ଦୀର୍ଘଈକାର ସହକାରେ ଉଚ୍ଚାରଣ କରନ୍ତି । ଏଭଳି ଆଭିଜାତ୍ୟ କେତେ ଜଣ ବଡ଼ ସାହେବଙ୍କଠାରେ ଦେଖିବାକୁ ମିଳେ ?

କହିଲେ—ପରେଶନାଥ, ଦୟା କରି ଶାଶ୍ୱତୀ ସାଙ୍ଗରେ···

ପରେଶନାଥ ସାରଙ୍କର ବିଦାୟୀ ଅନୁରୋଧର ପଦାବଳୀ ସ୍ମରଣ କଲି ଓ ଆପଣାକୁ ଉତ୍ତରୋତ୍ତର ମୁଗ୍ଧ କରାଇଲି । ସେଥିରେ ମର୍କଟସୁଲଭ ଲକ୍ଷଣ ଅଛି ବୋଲି ଭାବିବା କିଭଳି ଗର୍ହିତ······ଭାବିଲାକ୍ଷଣି ସେ ନିଜକୁ ଦୋଷୀ ମନେ କଲି । ଚେହେରାରେ ପ୍ରତ୍ୟେକ ଅଂଶ ସାର୍‌ସୁଲଭ ବଡ଼ ଦାନ୍ତମାନଙ୍କୁ ବୁଜି ରଖିଥିବା ତଥା ସାମ୍ନାକୁ ବାହାରୁଥିବା ଓଠ ଦୁଇଟି ଆଉ କାହା ପରି ହୋଇ ପାରନ୍ତା ନାହିଁ ।

ଲଣ୍ଡନ୍‌ର କନ୍‌କନିଆ ଶୀତସନ୍ତ୍ରକୁ ହେଳା କରିବାର ନୁହେଁ । ଯେତେ ଉକ୍ତୁର କରିବ ସେତିକି ଶୀତ ବଢ଼ିବ: କିନ୍ତୁ ଘର ଭିତରେ ଉଷୁମ, ଉଷୁମର ମୁହୂର୍ତ୍ତମାନଙ୍କୁ ଯେତେ ବଢ଼େଇ ପାରିବ, ସେତେ ଭଲ । ପରେଶନାଥର ଉଠି ଆସିବାକୁ ଇଚ୍ଛା ହେଉ ନାହିଁ, କିନ୍ତୁ ତାର ମନରେ ଆସିଲା ଯେ ସାଧାରଣ ଲୋକେ, ସାଙ୍ଗ ପ୍ରୋଫେସରମାନେ ଶୁଣିଲେ ଠଗଠରି ହେବେ । ଯେମିତିକି ଉଷୁମର ଅଧିଷ୍ଠାତ୍ରୀ ଦେବୀ କିଏ ତାଙ୍କୁ ଜଣାଅଛି । ସାରଙ୍କ ଝିଅ ଶାଶ୍ୱତୀ ଯୁବତୀ ପୁଣି ସୁନ୍ଦରୀ । ଅବନୀ ଦାସ ପରେଶନାଥର ସୌଭାଗ୍ୟକୁ ଈର୍ଷା କରିବା ଛଳରେ କହିଲା—ଆଃ ମୁଁ ଦାସ୍ ହୋଇ ଜନ୍ମ ହେଲି, ଅଥଚ ତମ ଅଡ଼ର ଦାସ୍ ହୋଇ ପାରିଲି ନାହିଁ ! ତା'ହେଲେ ହୁଏତ ମୋତେ ଲଣ୍ଡନ୍ ପଠା ହୋଇ ଥାଆନ୍ତା, ମୁଁ ମଧ୍ୟ ଶାଶ୍ୱତୀଙ୍କ ସମ୍ପର୍କରେ ଆସି ପାରିଥାଆନ୍ତି ।

ଛୁଃ, ସେମାନଙ୍କ ଧାରଣା କେତେ ଭୁଲ୍, ସେମାନେ ମୋତେ ତାଙ୍କର ଭିତରୁ ଜଣେ ବୋଲି ଭାବି ନେଇଛନ୍ତି, ଜାଣନ୍ତି ନାହିଁ ଯେ ପରେଶନାଥ ଉଚ୍ଚମଧ୍ୟ ସବସ୍ତରସ୍ଥ ସ୍କୁଲରେ ପଢ଼ିଛି ତାର ବାପା ଅଜା ଶିଖେଇଥିବା ସାଦ୍ଧର୍ମ ଭୁଲିଯିବ ଏକଥା ହୋଇପାରେ ନାହିଁ । ଯେଉଁ ରୂପରେ ଗୁଣ ନାହିଁ ମୁଁ ତାକୁ ବଷପର ମନେ କରେ । କହିବାକୁ ଗଲେ ଉତ୍କ୍ରମ ତାଢ଼ ପର ଲାଗିଲଣି ବରଂ ହେମାଳ ଶୀତକୁ ପକେଇଗଲେ ରକ୍ଷା···ଏହି ମର୍ମରେ ପରେଶନାଥ ଠିକ୍ କଲା ଯେ ସାର୍‌ଙ୍କ ଆଦେଶ ପାଳନ କରିବାରେ ଡେରି କରିବା ଉଚିତ ହେବନାହିଁ । ଟୋକୀ ମେର ହାବଭାବରୁ ନିଶ୍ଚୟ ବୁଝିନେଇ ସାରିବଣି ଯେ ମୁଁ ତାର ପ୍ରଗଲ୍‌ଭତାକୁ ଆଦୌ ପ୍ରଶ୍ରୟ ଦେବାକୁ ଚାହେଁ ନାହିଁ । ତେଣୁ ସେ କାମ ଛୁଣ୍ଡେଇ ଦେଲାପରି ତରତର ହୋଇ ପଚାରିଲା—"ତାହାହେଲେ କହନ୍ତୁ ମୁଁ କଣ ସାର୍‌ଙ୍କୁ ଜଣେଇ ଦେବ ଯେ ଆପଣ ଭଲ ଅଛନ୍ତି ? ଆପଣଙ୍କର ଅଭାବ ଅସୁବିଧା ନାହିଁ ? ଚିଠିପତ୍ର କିଛି ଦେବାର ଅଛି ? ମୁଁ ଆସନ୍ତା ମଙ୍ଗଳବାର ଦିନ···"

କିନ୍ତୁ ଶାଶ୍ୱତୀ ଉତ୍ତର ଦେବାକୁ ପ୍ରସ୍ତୁତ ନୁହେଁ । ମୁହଁ ତଳକୁ କରି ପରେଶନାଥ ଆଣି ଦେଇଥିବା ଫଟୋ ଖଣ୍ଡିକୁ ଦେଖୁଛି ବସି । ପରିବାର ଫଟୋ, ସାର୍ କହିଥିଲେ ଝିଅ ହାତରେ ଦେଇ ଆସିବ । ସେଇଆକୁ ଦେଖି ଝିଅ ବାପାଙ୍କ ଉପରେ ଏମିତି ଗୋଟାଏ ମନ୍ତବ୍ୟ ଛାଡ଼ି ଦେଇ ପାରିଲା ।

ଆଶ୍ଚର୍ଯ୍ୟ ! ଅନ୍ତତଃ ଝିଅଟାର ସାମାଜିକ ଭଦ୍ରତା ବୋଲି କଣ କିଛି ନାହିଁ ? ମୁଁ ଏତେ ପ୍ରଶ୍ନ ପଚାରିଗଲି, ପଦେ ତା କାନରେ ପଶିଲା ନାହିଁ ? ନା ଭାବୁଛି ମୁଁ ତା ବାପର ଚାକର ? ସାର୍ ମୋର ନମସ୍ୟ ହୋଇ ପାରନ୍ତି....ପରେଶନାଥର କ୍ରୋଧ ନିଆଁ ଖୋରାକ୍ ପାଇଲା ପରି ପୁଣି ତେଜି ଉଠିଲା । ଏପରିକି ତା କାନମୁଣ୍ଡ ଲାଲ ହୋଇ ଆସିଲା ପରି ମନେ ହେଲା । ନାଇଁ କମିଲା ନାହିଁ, କାହିଁକି ନା ପରେଶନାଥ ଲକ୍ଷ୍ୟ କଲା ଯେ ସେ କେବଳ ଅଭଦ୍ର ନୁହେଁ, ନିର୍ଲଜ୍ଜ । ଗ୍ରୁଣ୍ଡର ଶାଢ଼ୀ ଖସି ଗଲାଣି, ଝୁଙ୍କି ଅସିଥିବା ହେତୁ ମଧ୍ୟବର୍ତ୍ତୀ ରେଖା ଦେଖା ଦେଲାଣି, ତଥାପି ସେ ଫଟୋକୁ ଅନେଇ ରହିଛି (ପରେଶନାଥର ଭୟ ହେଲା ଯେ ଶାଶ୍ୱତୀ ଆହୁରି ତଳକୁ ଝୁଙ୍କି ଆସିବ । ପରସ୍ତ୍ରୀ ବିଷମ ହୋଇ ଉଠିବ, ଅଥଚ ସେ ନିଜେ ଭଦ୍ରତା ଖାତିରରେ ଉଠି ଅସି ପାରିବ ନାହିଁ ) । କଣ ଏତେ ଦେଖୁଛି ? 'ବାପାଙ୍କ ମାଙ୍କଡ଼ ମୁହଁକୁ ? ନା ମାଆର ସୁନ୍ଦର ମୁହଁକୁ ? ନିଜକୁ ମାଆ ସାଙ୍ଗରେ ମିଳଉଛି ? କିନ୍ତୁ ଦୁଃଖର ବିଷୟ ତୁମେ ତାଙ୍କ ସୁନ୍ଦରତା-ସ୍ନିଗ୍ଧତାର କାଣିଚାଏ ପାଇନାହଁ । ସାଇଦ କେମିତି ? ଯାହା ପାଟିରୁ ଏଭଳି କଦର୍ଯ୍ୟ କଥା ବାହାରି ପାରେ....

ପରେଶନାଥର ଉତ୍ସ ପ୍ରତିପାଦନ ହେଲା ନାହିଁ । ଶାଶ୍ୱତୀ ଅବଲମ୍ବେ ଚାଲିଗଲେ । ଭିତରେ ଶାଢ଼ୀ ଘେରେଇ ଆସିଲା ଏବଂ ଉତ୍ତର ଦେଲା—

"ହଁ ଜଣେଇ ଦେବେ ମୁଁ ଭଲ ଅଛି, ତାଙ୍କର କିଛି ଖବରବାର ନାହିଁ । ଆଉ ଏଇ ଚଟି ଖଣ୍ଡିକ ମାଆଙ୍କୁ ଦେଇ ପାରିବେ କି ? ଥ୍ୟାଙ୍କ୍ସ ।"

ଇଣ୍ଟରଭ୍ୟୁ ସରିଗଲା, ଏଥର ଆପଣ ଯାଇ ପାରନ୍ତି, ଏହିଭାବରେ ଶାଶ୍ୱତୀ ଉଠି ଠିଆହେଲା । ପରେଶନାଥ ବୁଝିଲା ଯେ ନିଷ୍ଫଳ ହେଉ, ସଫଳ ହେଉ ତାକୁ ଶୀଘ୍ର ବାହାରକୁ ହେମାଳ ରାସ୍ତା ପଡ଼ିଆକୁ ଯିବାକୁ ପଡ଼ିବ । ପ୍ରଥମରୁ ସ୍ଟେପ କପେ ମିଳିଛି । ପ୍ରଶ୍ନାବଳୀର ଉତ୍ତର ଦିଆ ସରିଛି, ଯେତିକି ଆବଶ୍ୟକ । ଉତ୍ତର ସଂଗେ ସୌଜନ୍ୟସୂଚକ ସାମାନ୍ୟ ସ୍ମିତ ହସଟିଏ ନ ଥିଲା ବୋଲି ମଧ୍ୟ କହିହେବ ନାହିଁ । ଆଉ କଣ ଦରକାର ? ବଳକା ବାପାଙ୍କୁ ନେଇ ଅଥବା ମାଙ୍କଡ଼କୁ ନେଇ ଯାହା ଲୁହାଗଲା, ସେଥିରେ ତୁମର ମୁଣ୍ଡ ପୁରାଇବାର କିଛି ନାହିଁ । ମୁଁ ଯାହା କହିଲି ଯେତେବେଳେ ଯାହା କହିଲି, ମୋ ଇଚ୍ଛା । ମୋର ବ୍ୟକ୍ତିତ୍ୱ ଠିଆ ହୋଇଛି ତୁମ ସାମନାରେ, ଗୋଡ଼ରୁ ମୁଣ୍ଡ ଯାଏଁ—ଦେଖି ପାରୁ ନାହିଁ ?

ପରେଶନାଥ ଅବଶ୍ୟ ବ୍ୟକ୍ତିତ୍ୱକୁ ଦେଖି ପାରୁଥିଲା, ମୁହାଁମୁହିଁ । ଦୈର୍ଘ୍ୟ ପ୍ରସ୍ଥ, ବର୍ଣ୍ଣବିଭବ; କିନ୍ତୁ ସେ ତାର ଆକ୍ରମଣକୁ ଦୁଇହାତଥା ଠେଲିଦେବାକୁ ଚେଷ୍ଟା କରୁଥିଲା । ଏଇ ତମ ବ୍ୟକ୍ତିତ୍ୱ ? ଟେହେରା ଝଣ୍ଡିକ ? ଲମ୍ବା ପାଞ୍ଚ ଫୁଟ ଛଅ ଇଞ୍ଚ କି ସାତ ଇଞ୍ଚ, ଚଉଡ଼ା ଏତିକି, ଗୋଲେଇ ଏତିକି, ଉଚ୍ଚନୀଚ....ମୁଁ ମାପଚୁପ କରୁ ନାହିଁ ମୋର ସେଥିରେ ତିଳେ ମାତ୍ର ଆଗ୍ରହ ନାହିଁ । ଖାଲି ଏତିକି ଜଣେଇବାକୁ ଚାହେଁ ଯେ ଭୟ ନୁହେଁ, ଭୟ ନୁହେଁ । ବ୍ୟକ୍ତିତ୍ୱ ସାମ୍ନାରେ ଧୁଏଁ ଧୁଏଁ ମୁଣ୍ଡ ନଇଁଯାଏ, ଓଠରୁ ଫୁଟି ଉଠୁଥିବା ଭାଷା ମିଠା ହେଉ, ଖଟା ହେଉ ସତ ବୋଲି ମନେ ହୁଏ, ସ୍ମିତ ହସରେ କ୍ଷୁରଧାର ଥିଲେ ମଧ୍ୟ କଷ୍ଟ ହୁଏ ନାହିଁ, ଚାହାଣୀରୁ ଯେତେ ଆଲୁଅ କି ନିଆଁ ବାହାରୁ ଯାଏ ଆସେ ନାହିଁ, ସବୁଥିରେ ସର୍ବାଙ୍ଗରେ ଶରଣ ପଶିବାକୁ ଇଚ୍ଛା ହୁଏ । ମୋ ମନରେ ସେଭଳି ଭାବ ମୋଟେ ଆସୁ ନାହିଁ, ବୁଝିଲ ? ଆସିବାର ପ୍ରଶ୍ନ ଉଠୁ ନାହିଁ । ତୁଚ୍ଛା ନାରୀତ୍ୱ ମୋତେ ମୋହି ପାରିବ ନାହିଁ । ତା ଛଡ଼ା ଯାହା ପାଟିରୁ ଏଭଳି........

ଯାହାହେଉ ପରେଶନାଥ ଅବଲମ୍ବେ ସେଠୁ ଚାଲି ଯାଇ ପାରିଲାନାହିଁ । ଭାବିଲା ସ ଉଙ୍କ ପ୍ରତି ମୋର କର୍ତ୍ତବ୍ୟ ଅଛି । ଟିଅଟା ମୁହଁରେ ଯାହା କହୁ ପଛେ ମୋର ତାର ପରସ୍ପର ଦେଖି ଚାହିଁ ଚିପି ନେବା ଉଚିତ୍, ସେଇଥିରୁ ବୁଝା ପଡ଼ିବ ସେ ଭଲରେ ଅପ୍ର କି ମନ୍ଦରେ ଅଛି । ଉତ୍ତର ଲଣ୍ଡନର ଉଇଣ୍ଡସର ରିସେପ୍ସନରେ

ଜଣେ ବନ୍ଧୁପ୍ପା ମହିଳାଙ୍କ ଘରେ ଭଡ଼ାଟିଆ ଅତିଥିଭାବରେ ଅଛୁ । ଭଦ୍ରପଡ଼ା, ଖୁଣିବାର କିଛି ନାହିଁ । କେଉଁଥାରୁ ପଳେଇ ଆସିଥିବା ଅନେକ ସମ୍ପନ୍ନ ଗୁଜରାଟୀ ଏଇ ଇଲାକାରେ ଅଛନ୍ତି, କେତେ କୋଠାବାଡ଼ି ସିନେମା ଘର ତୋଳିଲେଣି ବୋଲି ଶୁଣାଯାଏ । ଭଲ, କିଛି ନା କିଛି ଗୁଜରାଟୀୟ ପ୍ରଭାବ ପଡ଼ିବ ବୋଲି ଆଶା କରାଯାଏ । ଘର ଭିତରେ ଗୋଟାଏ ରେକର୍ଡ଼ ପ୍ଲେୟାର ଖୋଲାହୋଇ ପଡ଼ିଛି, ପାଖରେ ଖେଳନାଛଡ଼ା ରେକର୍ଡ଼ (ପ୍ୟାର ସଙ୍ଗୀତ ମାନେ ଫିଙ୍ଗାଫିଙ୍ଗି, କୋଳାହଳ) ମୁଣ୍ଡାଏ ଟଳ୍ ଅଧା କଟା ହୋଇ ରହିଛି (ସାଣ୍ଡଓ୍ୱିଚ ଖିଆ ଜୀବନ, ରାନ୍ଧିବାରେ ସ୍ପୃହା ନାହିଁ) ଆର୍ଟ କ୍ୟାଲେଣ୍ଡର, (ଆର୍ଟ ନା ଗୋପା ! ବ୍ୟାଚେଲର ଟୋକାମାନଙ୍କ ରୁମରେ ଶୋଭା ପାଆନ୍ତି), ଏ ମୋଟା ବହିଟା କଅଣ, ଷ୍ଟଡ଼ିଜ୍ ଇନ୍ ଡ଼ିଭିଅଣ୍ଟ ବିହେଭିୟର, ଗୋଠଝଣ୍ଡିଆ ଆଚରଣ ପାଠ (ଚମତ୍କାର, ତମପାଇଁ ଉପଯୁକ୍ତ ବହି । ତମେ ପରା ଅର୍ଥନୀତିରେ ପୋଷ୍ଟ ଗ୍ରାଜୁଏଟ୍ କରିବାକୁ ଆସିଛ ଏଠିକି, ଏହାକୁ ପଢ଼ୁଛ କାହିଁକି ?)···

ଟପିବା ପାଇଁ ଅନେକ କିଛି ବାକୀ ରହିଗଲା । କିଛି କ୍ଷତି ନାହିଁ । ଯାହା ଦେଖିବାକୁ ଶୁଣିବାକୁ ମିଳିଲା ସେଇଥିରୁ ତମ ଚରିତ୍ରର ନକ୍ସା ଅଙ୍କି ହେଇ ହେବ । ସ'ରକ୍ଷ ସବୁ କଥା କହି ହେବ ନାହିଁ; କିନ୍ତୁ ମୁଁ ଜାଣି ନେଲି । ମୋର ପଚିଶ ବର୍ଷର ଜୀବନରେ ଯେତେକ ନରନାରୀ ମୋ ବାଟ ଦେଇ ଯାଇଛନ୍ତି, ତମେ ତାଙ୍କର ଭିତରୁ ଜଣେ ନୁହଁ । ଅସଲ ଜଣେ ।

ପରେଶନାଥ ପାଖ ଷ୍ଟେସନରୁ ଟିଉବ୍ ରେଲରେ ଯାଇ ପାରିଥାଆନ୍ତା; କିନ୍ତୁ ତା'ର ଚାଲିବାକୁ ମନ ହେଲା । ଯେମିତିକି ସେ କାହାରି ସଙ୍ଗରେ, ହାତ ଧରେଇ ଦେବା କାଲୁଆ ପବନ ସାଙ୍ଗରେ ହେଉ, ପୁଛ କରିପାରିବ । ସମ୍ଭବ ତା' ଜାତକରେ ନାହିଁ । ଶାଶ୍ୱତୀ ଗୋଟାଏ ଗୁଜର ଗୋସ୍ୱା ଡେଙ୍ଗୀ ଟୋକୀ । ଡେଙ୍ଗୀ ଟୋକୀରୁ ଡେଙ୍ଗୀ ମାଇକିନିଆ ହେବ, ତଥାକଥିତ ଘରଦୁଆର କରିବ, ଛୁଆ ଜନ୍ମ କରିବ । ଆଉ ଅଧିକାଟା କଅଣ ହେବ ? ବାହାସାହା ନ ହୋଇ ଗୁଜରଣ କଲେ ଆହୁରି ଅବସ୍ଥା । ଭେକ କରି କରି ମରିଗଲାରୁ ଅକାଳ ବାର୍ଦ୍ଧକ୍ୟ ଆସିବ । ଯୌବନ ଶିଳୁଡ଼ି ଯିବ, ଓହଳି ଯିବ, ଆଖି ତଳେ ପୃଥିବୀସାକର କଳା ଜମିଯିବ, ଯେତେକ ଦୁଃଖ, କ୍ଷୋଭ, ଆକ୍ରୋଶ, ନିଗିଡ଼ି ପାରି ନ ଥିବା ଲୁହ; କିନ୍ତୁ ଶାଶ୍ୱତୀ ତା'ର କଳ୍ପନାକୁ ଥରକୁ ଥର ଲିଭେଇ ଦେଇ ପୁଣି ଆସି ଛିଡ଼ା ହେଉଥାଏ ଆଖି ସାମନାରେ ଏବଂ ତାର ସଶରୀର ବ୍ୟକ୍ତିତ୍ୱକୁ ଦେଖେଇ ହେଉଥାଏ । ତା'ର ଏଇ ଦେଖେଇ ହେବା ଢଙ୍ଗ ଏତେ ଅସହ୍ୟ ହୋଇ ଉଠିଲା ଯେ ପରେଶନାଥ ଶେଷକୁ ବାଧ୍ୟ ହୋଇ ସୋହୋ ସ୍କୋୟାର ଦୋକାନମାନଙ୍କରେ ଶୋଭା ପାଉଥିବା ରମଣୀ

ମାନଙ୍କ ଚେହେରାକୁ ମନେ ପକାଇଲି, କହିଲି ହୁଁ, ତମେ ତାଙ୍କର ନାତିଝିଅ ହେବାକୁ ଯାଉଛ । ଦୋକାନ ଦୁଆରରେ ଦପ୍ ଦପ୍ ହେଉଥିବା ଅକ୍ଷର ସେକ୍ସ ସେକ୍ସ ସେକ୍ସର ନିମନ୍ତ୍ରଣ ରକ୍ଷା କରି ଭିତରକୁ ପଶିଲେ ଯେଉଁ ରମଣୀମାନଙ୍କର ଗ୍ରୁପ୍ଛବି ଦେଖିବାକୁ ମିଳେ, ଉଲଙ୍ଗ ଅନାବୃତ ଦେହ, ରଙ୍ଗୀନ ଚକଚକିଆ ଦେହ (ଆସନ୍ତା କାଲି ରବିବାର, ଏ ଦୋକାନ ସବୁ କଣ ବନ୍ଦ ଥିବ ? ଆଗ ଦୁଆର ବନ୍ଦ ଥିଲେ ମଧ୍ୟ ଭିତରିଆ ବାଉକବାଟ ଖୋଲା ନ ଥିବ ? ଏଥର ଗୋଟାଏ କିଣିବି ସେଥିରୁ, ବହି, ମ୍ୟାଗାଜିନ ଫଟୋ ଯାହା ହେଉ, ଆଉ ଇଣ୍ଡିଆରେ ଯାଇ ଦେଖେଇବି ଯେ, ଏମାନେ କେତେ ରସାତଳକୁ ଗଲେଣି), ତମର ବ୍ୟକ୍ତିତ୍ୱ ସେମିତିକା, ସେଇ ଧାତୁରେ ଗଢ଼ା । ଅଶ୍ଳୀଳ ।

ଡ୍ୟାମ୍ ! ମୁଁ ପୁଣି ଦେଖିବି ତମକୁ । ଭାରତକୁ ଫେରିଲେ ଦେଖିବି । ଗ୍ରୁଡ୍‌ବାଇ ନାହିଁ ।

ଦିଲ୍ଲୀକୁ ଫେରିଯାଇ ଶାଶ୍ୱତୀ ସାଙ୍ଗରେ ପୁଣି ଦେଖାହେବା ପୂର୍ବରୁ କେତୋଟି ବର୍ଷ ବିତିଯାଇଥିଲା; କିନ୍ତୁ ତାରି ଭିତରେ ପରେଶନାଥ ଶାଶ୍ୱତୀର ମତିଗତି ନେଇ ଅନେକ ଖବର ହାସଲ କରି ପାରିଥିଲି । ସାର୍‌ଙ୍କ ପ୍ରତିବେଶୀର ପୁଅର ସାଙ୍ଗଠାରୁ । ସାର୍‌ଙ୍କ ଡ଼ାକ୍ତରଙ୍କ କମ୍ପାଉଣ୍ଡରଠାରୁ ଯାହାର ଭାଇ ମଧ୍ୟ ଏଇ ସର୍ଭିସରେ ପଶିଛି । ତାଙ୍କ ସ୍ତ୍ରୀ ସାର୍‌ଙ୍କ ଗାଁଆ ଅଡ଼ର ବୋଲି ପରିଚୟ ଦେଉଥିବା ଜଣେ ଭଦ୍ରଲୋକଙ୍କଠାରୁ ଏବଂ ଖୋଦ୍ ସାରଙ୍କଠାରୁ । ସେଥିରୁ ଗୋଟିଏ କଥା ସ୍ପଷ୍ଟ ହୋଇ ଯାଇଛି ଯେ ଶାଶ୍ୱତୀ ଲଣ୍ଡନରେ ତା' ବାପାଙ୍କ ଉପରେ ଯେଉଁ ମନ୍ତବ୍ୟଟି କଲା, ତାକୁ ସାମାନ୍ୟ ପ୍ରଗଲ୍‌ଭତା ଅଥବା ଅସାମାନ୍ୟ ଚପଳତା' ବୋଲି କହିହେବ ନାହିଁ । ସେ ତା'ର ବାପାଙ୍କୁ ଘୃଣା କରେ । ଦୁଇ ପୁଅରେ ଗୋଟିଏ ଝିଅ, ତଥାପି ଘୃଣା କରେ । ଅବଶ୍ୟ ଭାଇମାନେ ଯେ ବାପାଙ୍କୁ ବିଶେଷ ଭଲ ପାଆନ୍ତି, ତାର ପରିଚୟ କେହି ପାଇନାହାନ୍ତି । ବୋଧହୁଏ ସାର୍ ଇତର ଭାବପ୍ରବଣତାକୁ ପସନ୍ଦ କରନ୍ତି ନାହିଁ, ସେଇଥିପାଇଁ; କିନ୍ତୁ ଏ ଝିଅ ବାପାଙ୍କୁ ଫୋପାଡ଼ିଲା ପରି କଥା କହେ, କେବଳ ତାଙ୍କ ମୁହଁର ଚେହେରା ନୁହେଁ, ତାଙ୍କ ବିଦ୍ୟା, ବୁଦ୍ଧି, ଏପରିକି ତାଙ୍କ ବ୍ଲଡ଼ପ୍ରେସର ବେମାରିକୁ ମଧ୍ୟ ଛିଗୁଲେଇଲା । ପରି କହେ । ଥରେ କହିଲା ଯେ ଆମ ବାପା ନାମୀ ନାମୀ ବଡ଼ମାନଙ୍କର ଡଷ୍ଟ ଜ୍ୟାକେଟରେ ଯାହା' ଲେଖା ଥାଏ, ଖାଲି ସେଇଆକୁ ମନ ଦେଇ ପଢ଼ନ୍ତି, ହେଲେ ବାହାର ଲୋକମାନଙ୍କୁ ସବ୍‌ଜାନ୍‌ତା ପରିରେ ଉପେଇ ଦିଅନ୍ତି । ପୁଣି କହେ ଯେ ତାଙ୍କ ବେମାରି ଫେମାସ ମିଛ । ଘରୁ ପଳେଇ ଆସି କ୍ଲବରେ କି ଆଉ କେଉଁଠି ବସିବାର ବାହାନା । ମାଆ ପାଇଁ କିଛି ନ କରି ପାରିବାର ବାହାନା । ଭୂକାବାକ୍ସରେ

ଜଣେଇ ଦିଏ ଯେ ମାଆ କେବଳ ସୁନ୍ଦରୀ ନୁହେଁ, ଦୁଃଖିନୀ ଏବଂ ବାପା କେବଳ ମାଙ୍କଡ଼ମୁହାଁ ନୁହନ୍ତି, ପଶୁ । ମାଆ କେଉଁଥିପାଇଁ ଦୁଃଖିନୀ, କଉକି ପଶୁତ୍ୱରେ ଧର୍ଷିତା ତା'ର ରୂପରେଖ ବାରି ହୁଏ ନାହିଁ । ତା ଛଡ଼ା ଯେ କନେ ବହୁତ ବହି ପଢ଼େ, ତାର ବିଶେଷ କେହି ଯାଙ୍ଗ ସାଥୀ ନାହାନ୍ତି, ପୁରୁଷବନ୍ଧୁ ମୋଟେ ନାହାନ୍ତି ଏବଂ ପୁରୁଷ ମହଲରେ ସେ ଅସ୍ପୃଶ୍ୟା ନାମରେ ଅଭିହିତା, ଏଭଳି ଖବର ମଧ୍ୟ ପରେଶନାଥ ପାଖରେ ପହଞ୍ଚିଥିଲି । ପରେଶନାଥ ବାରମ୍ବାର ନିଜକୁ ସାବାସ୍ ଦେଇ ପାରିଥିଲି ଯେ ପ୍ରଥମ ଦେଖାରେ ସେ ସେଇ ଝିଅଟାର ଚରିତ୍ର ଉପରେ ଯାହା ଧାରଣା କରିଥିଲି, ସେଥିରେ ଆଞ୍ଚ ଲାଗିବା ଦୂରର କଥା, ତା'ର ଫୁଲ ଫଳ ମାଡ଼ି ଯାଉଛି ।

ଶେଷକୁ ସାର୍‌ଙ୍କଠାରୁ ଯେଉଁ ତଥ୍ୟଟି ମିଳିଲି, ତାକୁ ପରେଶନାଥ ମୁଠେଇ ଧରିଲି, ମନେ ହେଲି ଭିଏ ଗୋଟିଏ ଅମୂଲ୍ୟ ନିଧି । ଅର୍ଥ ବୁଝି ହେଲି ନାହିଁ, କିନ୍ତୁ ତାର ରହସ୍ୟ ଦିନେ କାଳେ ଫିଟିଯିବ ବୋଲି ସେ ଭାବିନେଲି । ସାର୍ ବିଶେଷ ପ୍ରସନ୍ନ ମୁଦ୍ରାରେ ସିଗାର ଫୁଙ୍କୁଥିଲେ ଏବଂ ଅଫିସ ଛୁଟି ବେଳର କଅଁଳିଆ ଶୂନ୍ୟତାକୁ ଗ୍ରହି ରହିଥିଲେ । ତାଙ୍କ କମରାର ପରଦା ପାଟରେ ଉଙ୍କି ମାରିଲି ଛଣି 'ଆସ ପରେଶନାଥ' ବୋଲି ବସେଇ ବସେଇ କହିଲେ, ବୋଧହୁଏ ସବୁ ଥରଠାରୁ ଅନ୍ତର ନଠେଇ ମାଠେଇ ଓ ଲମ୍ବା ହସର ସ୍ୱାଗତ ଜଣେଇଲେ । ଗଣିତ ଜ୍ୟୋତିଷର ନୂତନ ଅବିଷ୍କାର, ତାସମାନେ କେମିତି ମଲେ ମଧ୍ୟ ମରନ୍ତି ନାହିଁ, ତାଙ୍କ କାହ୍ନାର କଳା ମଞ୍ଜିଟି ବଞ୍ଚି ରହେ, ସେଇଥିରୁ ହିଁ ଜଣା ପଡ଼ୁଛି ଆତ୍ମାର ଚେତେହେବା କଳା, ଇତ୍ୟାଦି ଅଭିନବ ତଥ୍ୟ ଚମତ୍କାର ଟୀପ୍ପଣୀ, ମଝିରେ ମଝିରେ ଜବର ଫୁଙ୍କ ଓ ଇଷତ୍ ଶବ୍ଦକରି ହସ । ପରେଶନାଥ ମୁଗ୍ଧ ହେଲି ଓ ଭାବିଲି ଏଭଳି ଜନ୍ମସୂତ୍ରୀ ନୌକରଣୀ ସା ଚଉକିରେ ପଡ଼ି ନଷ୍ଟ ହୋଇ ଯାଉଛି ପିନା । କଥା କଥା ସାର୍ କହିଲେ ଯେ ତାଙ୍କର ଦୁଇ ପୁଅ ପିଲାଦିନୁ ନାଲି ନେଳି ଚାଲ୍‌ବାଗ ଚନ୍ଦ୍ର ସୂର୍ଯ୍ୟ ଖେଳ ଖେଳୁଥିଲେ । କହିଲେ ମୁଁ ଇ ତାଙ୍କୁ ଶିଖଉଥିଲି, ଉସ୍‌କେଉଥିଲି; କିନ୍ତୁ ଶାଶ୍ୱତୀ । ସେ ଶିଖିଲି ନାହିଁ । କଣ୍ଢେଇ ଧରି ଖେଳିଲି । ସାଧାରଣ କଣ୍ଢେଇ ନୁହେଁ, କେବଳ ଜନ୍ତୁ । ଗଧ, ଘୋଡ଼ା, ମେଣ୍ଢା, ଘୁଷୁରି, କୁକୁର, ବିଲୁଆ ଇତ୍ୟାଦି । ମଣିଷ-ଫଣିଷ ଗାଡ଼ି-ମୋଟର କିଛି ଦରକାର ନାହିଁ ତା'ର । ଖାଲି ଜନ୍ତୁ ! କହି ମୁଣ୍ଡ ହଲେଇ ହସିବାକୁ ଲାଗିଲେ । ସତେ କି ତାଙ୍କର ସେଇ ବିଚିତ୍ର ଦୃଶ୍ୟ ମନେ ପଡ଼ୁଯାଉଛି । ପାଗିଳୀ ଝିଅ ଜନ୍ତୁମାନଙ୍କୁ ଧରି ଖେଳୁଛି !

ପରେଶନାଥ ପଚାରିବାକୁ ଯାଇ ରହିଗଲା,—ସେଥିରେ ମାଙ୍କଡ଼ ଥିଲା କି ନାହିଁ ?

ପ୍ରକୃତରେ ପରେଶନାଥର ପାଟି କେତେଥର ଝଜବଜ ହୋଇଛି ସେ ସାର୍‌ଙ୍କ ଆଗରେ ମାଙ୍କଡ଼ର ଅବତାରଣା କରିବ । ସିଧା ସଳଖ କହିଦେବ ତାଙ୍କ ସୁନାର କାଠିଟି ଅତି ତାଙ୍କୁ କେଉଁ ଦୃଷ୍ଟିରେ ଦେଖେ; କିନ୍ତୁ ତା'ର ଭୟ ହୁଏ ଯେ ସାର୍ ସବଜ୍ଞ, କହିବେ ମୁଁ ଜାଣିଛି ଏବଂ ତାଙ୍କ ଜ୍ୟୋତିର୍ମୟ ପ୍ରକାଶ ମଉଳି ଯିବ, ଅନ୍ତତଃ କ୍ଷଣକ ପାଇଁ । ନା, ମୁଁ ତାଙ୍କ ମନରେ କଷ୍ଟ ଦେବି ନାହିଁ । ହୋଇପାରେ ସେ ଟୋକା ତା'ର ପିଲାଦିନେ କିଛି ଗୋଟାଏ ଦୁଃସ୍ୱପ୍ନ ଦେଖିଛି, ତା' ବାପାଙ୍କୁ ନେଇ । ହୁଏତ ଗୋଟାଏ ଶାରୀରିକ ପ୍ରତିସ୍ଥାର ଛବି, ଯାହା ତା' ଅବଚେତନର ଗଭୀର ଦାଗ ରଖିଯାଇଛି । ହୋଇପାରେ ସେ ସାର୍ ମାଆର ମାଇପି କଥାରେ କାନ ଦେଇ ନାହାନ୍ତି । ଧରିନିଅ ସେ ଆଉ କେଉଁ ସ୍ତ୍ରୀ ସାଙ୍ଗରେ··· । ଯାଏ ଅସେ ନାହିଁ । ସାର୍ ପ୍ରବୀଣ ପରିଚ୍ଛନ୍ନ ପୁରୁଷ । କଦାପି କୌଣସି କାମରେ କୁତ୍ସିତ ଭାବ ଦେଖାଇବେ ବୋଲି ମୁଁ ବିଶ୍ୱାସ କରିବି ନାହିଁ । ତାଙ୍କୁ ସେଇ ମେଷିଡ଼ ଟୋକା କ ମାଆ ଚିଠି ମିଶି କୁତ୍ସିତ କରି ପାରିବେ ନାହିଁ । ଅସମ୍ଭବ । ପରେଶନାଥର ମନେ ହୁଏ ଯେ ସେ ଗୋଟିଏ ନରନାରୀ ମହାଯୁଦ୍ଧରେ ପଶି ଯାଇଛି । ସେ ଆପଣା ଧର୍ମ ପାଳନ କରିବ । ନରପୁଙ୍ଗବଙ୍କ ହାତ ଛାଡ଼ିବ ନାହିଁ ।

ଯଥାକ୍ରମେ ପରେଶନାଥ ସ୍କେଲ ସିଡ଼ିରେ ଉପରକୁ ଉଠିଲା ଓ ଦିଲ୍ଲୀ ଛାଡ଼ି କଲିକତା, କଲିକତାରୁ ପାଟଣା, ଏମିତି ବିଭିନ୍ନ ଜାଗାରେ ଭାରତ ସରକାରଙ୍କ କାମ ତୁଲାଇଲା । ସାର୍‌ଙ୍କ ଖବର ତା' କାନରେ ପହଞ୍ଚୁଥାଏ । ସାର୍ ଡ଼ିପାର୍ଟମେଣ୍ଟର ସେକ୍ରେଟାରୀ ହେବେ । ନା, ହୋଇ ପାରିଲେ ନାହିଁ । ସାର୍ ନିର୍ଭୀକ, ସ୍ପଷ୍ଟବାଦୀ, ତେଣୁ ମନ୍ତ୍ରୀମାନେ ତାଙ୍କୁ ପାଖରେ ପୂରେଇବାକୁ ସାହସ କଲେ ନାହିଁ । ପରୁଆ ନାହିଁ । ସୁନାମ ଖଣ୍ଡିକ ରହିଗଲା ତ ! ସାର୍‌ଙ୍କ ସ୍ତ୍ରୀ ଅକାଳରେ ମରିଗଲେ । ଆହା ! ପରେଶନାଥ ସାରଙ୍କ ପାଖକୁ ଗଭୀର ସମବେଦନା ଜଣେଇ ଖଣ୍ଡେ ଚିଠି ଲେଖିଥିଲା । ହେଲେ ଦମ୍ଭ ଦେବାର ଧୃଷ୍ଟତାରୁ ନିଜକୁ ବଞ୍ଚେଇ ରଖିଲା । ସାର୍ ବଟବୃକ୍ଷ । ଉହୁଁ, ବରଗଛ ସେଯେକା, ସାର୍ ହେଉଛନ୍ତି ପିଇନ ଗଛ । ଝଡ଼ ବତାସରେ ଭାଙ୍ଗି ପଡ଼ିବା ଲୋକ ନୁହନ୍ତି । କୋଉ ବୁଦ୍ଧିରେ ମୁଁ ତାଙ୍କୁ—? ସେଇ ସମୟରେ ଶାଶ୍ୱତୀ ମନେ ପଡ଼ିଗଲା ଓ ମନେ ପଡ଼ିବା ସ୍ୱାଭାବିକ ବୋଲି ସେ ନିଜକୁ କହିଲା ।

ପରେଶନାଥ କଳ୍ପନା କରି ପାରି ନଥିଲା ସେ ପୁଣି ଶାଶ୍ୱତୀ ସଙ୍ଗରେ ଦେଖା ହେଲାବେଳକୁ ପରିସ୍ଥିତି ଏମିତି ବଦଳି ଯାଇଥିବ ସେ ମାମୁଲି ହସଟିଏ

ହସିଲେ ମଧ୍ୟ ଦୋଷ ହେବ, କଥାବାର୍ତ୍ତା ହେବା ଦୂରର କଥା । ଦିଲ୍ଲୀକୁ ଆସିଥିଲେ କିଛି ଦିନ ପାଇଁ ଅବସରପ୍ରାପ୍ତ ସାର୍‌ଙ୍କ ସାଙ୍ଗରେ ଦେଖା କରିବ ବୋଲି । ଏନ୍‌ଗେଜ୍‌ମେଣ୍ଟ ଡାଏରୀରେ ଟିପି ରଖିଥିଲି; କିନ୍ତୁ ଦେଖା କରିବା ପୂର୍ବରୁ ଖବର ପାଇଲି ଯେ ସାର୍ ଚାଲିଗଲେ । ହଠାତ୍ ଚାଲିଗଲେ । ଆଶ୍ଚର୍ଯ୍ୟ ହେବାର କଥା ନୁହେଁ, ରକ୍ତଚାପ ରୋଗୀମାନଙ୍କର ଏମିତି ହୁଏ । ହେଲେ ତାଙ୍କର କ'ଣ ଏମିତି ବେଟାଇମ୍‌ରେ ଚାଲିଯିବାକୁ ଥିଲା ? ବର୍ତ୍ତମାନ ମୁଁ ଗଲାବେଳକୁ ଅଉ କେତେ ଅଫିସର ଭିଡ଼ ଜମେଇବେଣି । ସାର୍‌ଙ୍କ ପାଖକୁ ଏକୁଟିଆ ବଦାସ୍ତ ନେଇ ହେବ ନାହିଁ । କେହି ବୁଝିବେ ନାହିଁ ଯେ ମୁଁ ଅନ୍ୟତମ ଅଫିସର ନୁହେଁ, ମୁଁ ତାଙ୍କ ନିକଟରେ ଥିଲି । ଖାଲି ପ୍ରିୟପାତ୍ର ନୁହେଁ, ନିଜ ଲୋକ । ତା' ଛଡ଼ା ଲୋକଗହଳିରେ ଶାଶ୍ୱତୀର ଲୁହକୁ ମଧ୍ୟ ଠଉରେଇ ହେବ ନାହିଁ ।

ଶାଶ୍ୱତୀ ଭାରତକୁ ଫେରି ଆସିଲାଣି, ଏଇ ଦିଲ୍ଲୀରେ ଅଛି, ଜବାହରଲାଲ ୟୁନିଭରସିଟିରେ ଚାକିରି ପାଇଛି, ହେଲେ ବାପ ପାଖରେ ନାହିଁ, ଅଲଗା ଭଡ଼ାଘର ନେଇ ଅଛି, ଇତ୍ୟାଦି ଖବରକୁ ଅବିଶ୍ୱାସ କରିବାର କାରଣ ନ ଥିଲା । ତଥାପି ପରେଶନାଥ ନିଶ୍ଚିନ୍ତ କଲା ଯେ ଶାଶ୍ୱତୀ ଏମିତି କିଛି ଅଦ୍ଭୁତ ଚରିତ୍ର ନୁହେଁ, ରକ୍ତମାଂସରେ ଗଢ଼ା, ବାପର ଝିଅ । ସାର୍‌ଙ୍କୁ ଶେଷବେଳକୁ ସେ ଯାଇଥିବ ସେଠିକି ।

ତେଣୁ ସତକୁ ସତ ଶୋକାତୁର ଅନ୍ୟମାନଙ୍କ ସାଙ୍ଗରେ ଶାଶ୍ୱତୀକୁ ଦେଖିଲା କ୍ଷଣି ପରେଶନାଥ ଖୁସିଟାଏ ହେଲା । ମୁଁ କହୁ ନଥିଲି ? ଶାଶ୍ୱତୀ ଯେତେ ହେଲେ ମଣିଷ, ଯେତେହେଲେ ନାରୀ । ପରେ ସେ ଲକ୍ଷିତ ହେଲା ଯେ ଶାଶ୍ୱତୀ ତା'ର ଖୁସିଭାବ ଲକ୍ଷ୍ୟ କରି ପାରିଥିବ, ଭୁଲ ବୁଝିଥିବ; କିନ୍ତୁ ଉପାୟ ନାହିଁ, କୌଣସିମତେ ତା'ର ଭ୍ରମ ଦୂର କରି ହେବ ନାହିଁ । ପରେଶନାଥ ଆଉ ତା' ପାଖକୁ ଯିବାକୁ ସାହସ କଲାନାହିଁ, ଖାଲି ଦୂରରୁ ସୁବିଧା ଦେଖି ଏବଂ ମଝିରେ ମଝିରେ ଅନେଇବା'କୁ ଚେଷ୍ଟା କଲା । ମୁହଁ ଆହୁରି ପ୍ରବଳ ଦିଶୁଛି; କିନ୍ତୁ ସେଥିରେ ଶୋକ ନାହିଁ ବୋଲି କହୁଛ ? ମୁହଁ କଅଣ ଗୁହୁଁ ଗୁହୁଁ ଶୁଖିଯାଇଥାନ୍ତା ନା କଳା ପଡ଼ି ଯାଇଥାନ୍ତା ? ଅବଶ୍ୟ ଲୁହ ଝରିବ ଝରିବ ହୋଇ ଝରି ପଡ଼ୁନ୍ତା, କିନ୍ତୁ ଏତେ ଲୋକଙ୍କ ମଝିରେ ? ବରଂ ତା' ସଂଯମକୁ ପ୍ରଶଂସା କରିବା ଉଚିତ୍ । ଏହିପରି ଭାବରେ ପରେଶନାଥ ବାରମ୍ବାର ନିଜକୁ ପ୍ରମାଣିତ କରି ପାରୁଥିଲା ଯେ ଲଣ୍ଡନର ସେହି ଚପଳ୍‌ମତି ପିତୃଦ୍ରୋହିଣୀ ଟୋକୀ ବଡ଼ ହୋଇଗଲାଣି, ବଦଳି ଗଲାଣି, ବଦଳିବା ଉଚିତ, ମୋର ତା'କୁ ନିନ୍ଦା କରିବା, ମାନେ ଏବେ ବେଶି ନିନ୍ଦା କରିବାର କାରଣ ନାହିଁ ।

ପରେଶନାଥ ଅନ୍ୟମନସ୍କ ଭାବରେ ଯାʼଆସ ହେଲା, ସାରଙ୍କ ଶବ ପାଖରେ ହାତ ଛନ୍ଦ ଛିଡ଼ାହେଲା, ଅତୀତକୁ ସ୍ମରଣ କଲା ଏବଂ ଯେତେଦୂର ସମ୍ଭବ ଶାଶ୍ୱତୀର ଶୋକସିକ୍ତ ମୁଖ (ଶୋକରେ ଚେହେରା ଅଣ୍ଟା ହୋଇଯିବ ନାହିଁ, ଖାଲି ଖାଲି ପୋଡ଼ିଯିବ ବୋଲି କଅଣ ଲେଖା ହୋଇଛି ?) ମୁହଁର ଗାମ୍ଭୀର୍ଯ୍ୟକୁ ଲକ୍ଷ୍ୟ କଲା । ସେଇଠୁ ଗୋଟାଏ ଘଟଣା ଘଟିଲା ଯାହା'କୁ ସେ କଦାପି ଭୁଲି ପାରିବ ନାହିଁ ବୋଲି ସ୍ଥିର କଲା । ଜଣେ କିଏ ଡି.ଆଇ.ଜି ସାର୍‌ଙ୍କୁ ଶେଷ ଦେଖା କରିବା ପାଇଁ ଆସିଥିଲେ । ଶାଶ୍ୱତୀ ତାଙ୍କୁ ଯାଇ ପାଛୋଟି ଆଣିଲା । ଭଦ୍ରଲୋକ ସାର୍‌ଙ୍କ ଅନ୍ତିମ-ନିଦ୍ରାର ଚେହେରାକୁ ଅନେଇ ରହିଲେ, ଅନେଇ ଅନେଇ କହିଲେ—କି ସୁନ୍ଦର ! ସତେ ଗୋଲାପ ଫୁଲ ଫୁଟି ରହିଛନ୍ତି !······ସୁନ୍ଦର ? ଗୋଲାପ ଫୁଲ ?? ଆପେ ଆପେ ପରେଶନାଥର ଦୃଷ୍ଟି ଶାଶ୍ୱତୀକୁ ଲେଉଟିଲା । ତମେ କ'ଣ କହୁଛ ଶୁଣେ ? ଏବଂ ସେ ମୁଗ୍ଧ ହେଲା । ଶାଶ୍ୱତୀ ମଧ୍ୟ ମଥା ନୋଇଁ ତା' ବାପାଙ୍କ ଶାନ୍ତି ବଦନକୁ ଅନେଇଛି, ହଁ ଭରୁଛି । କେତେବେଳକେ ପରେଶନାଥ ବୁଝିଲା ସେ ଉକ୍ତିପରେ ଉକ୍ତି ଚଢ଼ୁଛି ଉଠିଛି, ମଲା ମୁହଁ ସତେଜ ଦେଖାଯାଉଛି, ଏମିତି ହୁଏ; କିନ୍ତୁ ସେ ଶାଶ୍ୱତୀର ସକରୁଣ ସ୍ନେହକୁ ହେଜେଇ ଦେଇ ପାରିଲା ନାହିଁ । ଏଇ ମୋର ମାଙ୍କଡ଼ମୁହଁ । ବାପ ! ସୁନ୍ଦର !

···ଏହାପରେ ପୁଣି କାଳନଦୀ ବହି ଯାଇଛି ଅନେକ ଦୂରଯାଏଁ । ପରେଶନାଥ ବାହାସାହା ହୋଇ ପିଲାଛୁଆଙ୍କ ବାପ ହେଲାଣି; ଯଥାକ୍ରମେ ବଡ଼ ଅଫିସର ବୋଲାଇଲାଣି । ତାକୁ ମଧ୍ୟ ଅଧସ୍ତନ ଅଧିକାରୀମାନେ ସାର୍ ବୋଲି ଡାକିଲେଣି । ପରେଶନାଥ ଭାରତରେ ତଥା ବିଦେଶରେ ବିଭିନ୍ନ ପଦରେ ଅଧିଷ୍ଠିତ ହୋଇ ପୃଥିବୀଟାକୁ ଦେଖିନେଲାଣି ବୋଲି କହିଲେ ଚଳେ । ଅନ୍ତତଃ ତା'ର ବିଶ୍ୱାସ ଯେ ସେ ମଣିଷମାନଙ୍କର ଅର୍ଥାତ୍ ମଣିଷଜାତିର ସମସ୍ତ ଗୁଣ ଅବଗୁଣ ସବୁ ବୁଝିନେଲାଣି । ଏବେ କୈଉଁ ଗୋଟାଏ ଚରିତ୍ରର ଚେହେରା ଦେଖି ତେଉଁ ଚମକିବାର ପ୍ରଶ୍ନ ଉଠୁନାହିଁ । ହ୍ୟାପ ସବୁ ସମାନ । ଭେକ ଆଉ ଭେକ । ପ୍ରଭେଦ ହେଉଛି କିଏ କାହା ପାଇଁ କ'ଣ । ତୁମେ ମୋ କ୍ଷେତ୍ରେ ନା ହାକିମ ? ନେତା ନା ଗ୍ରାହକ ? ରୁକ୍ମଣୀ ନା ରାଧା ? ସେହି ଅନୁପାତରେ ମନର ମଙ୍ଗକୁ ମୋଡ଼ିବାକୁ ହେବ, ନହେଲେ ଅସୁବିଧା । ତାଙ୍କ ଭିତରେ କିଏ ଭଲ କିଏ ମନ୍ଦ, ମାମୁଲି କି ମହାନ୍ ବିଚାର କରିବା ଅବାନ୍ତର । ବାକି ରହିଲେ ଯେଉଁମାନେ, ସମ୍ପର୍କର ବାହାରେ—ଥାଆନ୍ତୁ ସେମିତି ।

କଦବା କ୍ୱଚିତ୍ ଶାଶ୍ୱତୀ ମନେ ପଡ଼େ, ସାର୍‌ଙ୍କ ଶା-ଶ୍ୱ-ତୀ ଉଚ୍ଚାରଣ ମନେ ପଡ଼େ ଏବଂ ପରେଶନାଥ ସେମାନଙ୍କୁ ଇଣ୍ଟରେଷ୍ଟିଙ୍ଗ୍ ବୋଲି ଭାବେ ।

ଆମୋଦର ସାମାନ୍ୟ ଅନୁଭବରେ ସ୍ମୃତିକୁ ଖଳସ କରନ୍ତବ । ଆପଣା କାମରେ ଲଗିପଡ଼େ ।

ତେବେ ପରେଶନାଥର ମନେ ହୁଏ (ବୟସ ବଢ଼ିଲାରୁ ବେଶି ବେଶି ମନେ ହେଉଛୁ) ଯେ ଶାଶୂଡ଼ୀର କିଛୁ ଅଂଶ ସ୍ମୃତିରେ ମାଖେଇବାକୁ ଚାହୁଁଛୁ । ସେଇଠୁଁ ପରେଶନାଥ ଦିଲ୍ଲୀରେ ସାସୁଙ୍କ ମୃତ୍ୟୁଶଯ୍ୟାର ସେଇ ଦୃଶ୍ୟଟିକୁ ସ୍ମରଣ କରେ । ଆରେ, ମୁଁ ତୋତେ କ୍ଷମା କରି ଦେଇଛୁ ପରି – ପୁଣି ମୋତେ ବିଇବର୍ଣ କରୁଛୁ କାହିଁକି ? ଶେଷକୁ ପରେଶନାଥ ଭାବିଲ ଯେ ସେ କଷ୍ଟସ୍ଥ ଏହା ଭିତରେ ବାହାପାହା ହୋଇ ଘର କରିବଣି । ଗୁଡ଼ାଏ ପିଲାଛୁଆ ହେବେଣି । ଗୃହିଣୀ ଶାଶୂଡ଼ୀକୁ ଗଡ଼ି ସାରିଲା ପରେ ତା'କୁ ଉଶ୍ୱାସ ଲାଗେ । ହେଲେ ଟିକିଏ ଖାଲି ଖାଲି ଲାଗେ । ଯେମିତିକି ତା' ପୃଥିବୀର ସରଳ ସମାନ ସାଧାରଣରେ ସେଇ ଜଣକ "ଚରିତ" ହୋଇ ବଞ୍ଚି ରହିଲେ ଭଲ ହୁଅନ୍ତା ପରି ! ପରେଶନାଥ ଆପଣା ଭାବନାର ଧାରକୁ ଇଣ୍ଟରେଷ୍ଟିଙ୍ଗ୍ ବୋଲି କହି ବଦା କରନ୍ତବ ।

ଗୌହାଟୀକୁ ବଦଳି ହୋଇ ଆସିଲା ପରେ କାମାକ୍ଷାଦର୍ଶନ ପ୍ରଧାନ ପ୍ରଧାନ ଆଇଟମ, ଯଥା ଷ୍ଟାନ୍ ସଫର, ଟି.ଏ. ବିଲ, ଫର୍ଣ୍ଣିଚର ଯୋଗାଣ ଇତ୍ୟାଦିର ପଛକୁ ଯୋଡ଼ା ହୋଇ ରହିଛି । ଟିଣ୍ଟା ବାରମ୍ବାର କହୁଛି, ମୋ ପାଇଁ ଅପେକ୍ଷା କରିବନାହିଁ, ଏକୁଟିଆ ଦର୍ଶନ କରି ଆସିବ । ଅବଶ୍ୟ ଟିଣ୍ଟାର ପରାମର୍ଶ ମାନିବାକୁ ପଡ଼ିବ, ତା' ଲୁହେଁ, ଗୋଟାଏ ଭଲ କାରଣ ଦର୍ଶାଇ ହେବ ଯେ କାମାକ୍ଷା ଯୁଗଳ ଦରନାଙ୍କୁ ପସନ୍ଦ କରନ୍ତି, କାହିଁକି ନା ସେ ନିଗୂଢ଼ତମ ପ୍ରେମର କାମନାର ଦେବୀ । ପିଲାମାନେ କାଳେ ଶୁଣି ନେବେ ବୋଲି ସ୍ୱର କମେଇ କହି ହେବ — ସେ ହେଉଛନ୍ତି ଯୋନି-ରୂପିଣୀ, ଜାଣିଛ ତ ? ତଥାପି ପରେଶନାଥ ଟିଣ୍ଟାର ଆସିବା ଯାଏ ଅପେକ୍ଷା କଲା-ନାହିଁ । କାମ ସାରିଦେଲେ ଯାଏ । ଖାଲି ସେଇଥିପାଇଁ ? ନା ଏଇ ଅପରୂପା ଦେବୀଟି କେମିତି ଜାଣିବା ପାଇଁ ତର ସହୁନି ନାହିଁ ?

ଯାହାହେଉ ଗୋଟିଏ ଶ୍ରାବଣ ମାସର ପୂର୍ବାହ୍ଣରେ ପରେଶନାଥ କାମାକ୍ଷା ଦେବୀଙ୍କ ପାଖକୁ ଗଲା । ପାହାଡ଼ ଉପରେ ମନ୍ଦିର । ଉତ୍ତମ, କିନ୍ତୁ ଦେବୀଙ୍କୁ ଦେଖିବା ପାଇଁ ଏତେ ଗହ୍ୱରକୁ ଏତେ ଅନ୍ଧାରକୁ ଯିବା ଦରକାର ? ଅନ୍ଧ-ଓସାରିଆ ସିଡ଼ି-ର ସୁଡ଼ଙ୍ଗ ଭିତରେ ଠେଲାପେଲା ହୋଇ ଝାଳନାଳ ହୋଇ ··ପରେଶନାଥ ବ୍ୟତିବ୍ୟସ୍ତ ହୋଇପଡ଼ିଲା । ପାଖରେ ଦ'ଜଣ କୁହାକୁହି ହେଉଥିଲେ—ଏଇ ଏକମାତ୍ର ଦେବୀ, ଯାହାଙ୍କର ମୂର୍ତ୍ତି ନାହିଁ, କାସ୍ଥା ନ ହିଁ । କେବଳ ମନ୍ତ୍ର । ଅତଳ ତଳର ପାଣି ଟିକିଏ । ପରେଶନାଥ ବୁଝିପାରିଲା ପରି ମୁଣ୍ଡ ଟୁଙ୍ଗାରିଲା । ସ୍ୱୀକାର କଲା ।

ସର୍ପପୃଷ୍ଠ ଧାଡ଼ିର ମୁଣ୍ଡକୁ ଆସି ପହଞ୍ଚିଲା ପରେ ଅଭ୍ୟନ୍ତରର ପାଣିକୁ ଠାବରେଇଲା ପରେ ପରେଶନାଥ ନିଃଶ୍ୱାସ ମାରିଲା; କିନ୍ତୁ ଏଠି ମଧ୍ୟ ମୁହୂର୍ତ୍ତିକୁ ମୁହୂର୍ତ୍ତି ଲମ୍ବିବାକୁ ଲାଗିଲା । କଅଣ ହେଲା ? ଦେଖାଗଲା, ଆଗରେ ଗୋଟିଏ ଯୁଗଳମୂର୍ତ୍ତି । ସହଜେ ଚଙ୍କିବାକୁ ନାହାନ୍ତି । ପାଣି ଟିକିଏ ଓଣ୍ଡରେ ମାରି ଆଚେଇ-ଦିବା ମତଲବରେ ନାହାନ୍ତି, ପଣ୍ଡା ଯାହା ପାଠ ପଢ଼ାଉଛି, ତାକୁ ଧୀରେ ସୁସ୍ଥେ ସମ୍ପନ୍ନ କରୁଛନ୍ତି । ଆଣ୍ଠେଇ କରି ପାଣିକୁ ଛୁଉଁଛନ୍ତି, ଛୁଆଁଛୁଇଁ ହେଉଛନ୍ତି ମନ୍ତ୍ର ପଢ଼ୁଛନ୍ତି, ପୁଣି ଆଣ୍ଠଉଛନ୍ତି । ଚାଲିଛି ଏମିତି । ଆଉ କ'ଣ ଏଇ ଏକା ନୂଆ ବାହା ହୋଇଛନ୍ତି ? କାମାକ୍ଷା ଦେବୀ ଖାଲି ଏହାଙ୍କର କଥା ଶୁଣିବେ ?

ଶେଷକୁ ସେମାନେ ଉଠିଲେ । ମୁହଁ ଫେରାଇଲେ । ପରେଶନାଥ ଆଗକୁ ପାଦ ବଢ଼େଇଲା । ଆଣ୍ଠେଇବା ଦରକାର ନାହିଁ । କୌଣସିମତେ ନଇଁ ପଡ଼ି ପାଣିକୁ ଛୁଇଁଦେଲେ କାମ ସରିଲା; କିନ୍ତୁ ତା' ପୂର୍ବରୁ ସେ ସ୍ତ୍ରୀ ଲୋକଟିର ମୁହଁକୁ ଦେଖି ପାରିଲା, ଚହ୍ନା ଚହ୍ନା ମନେହେଲା, ନିରେଖି ଦେଖିଲା । ଏଁ—ଶାଶ୍ୱତୀ ! ନା, ହୋଇପାରେ ନାହିଁ । ଅସମ୍ଭବ !

ଆବସାର୍ଡ଼' ¡¡

ହୁଏତ ସମ୍ଭବ ହୋଇପାରେ, କିନ୍ତୁ ଆବ୍‌ସର୍ଡ, ଅଳୀକ, ଉଦ୍ଭଟ । ଯେମିତିକି ରୂପକ ବାସ୍ତବ ହୋଇଯାଇଛି । ଚନ୍ଦ୍ରକୁ ମୂଷା ଟୁକୁରୁ ଟୁକୁରୁ କରି ଖାଉଛି । ସୂର୍ଯ୍ୟ ତାର ପରେ ତାର ବନ୍ଧ ବୁଲୁଛି । ଶାଶ୍ୱତୀ ତାର ଅସାଧାରଣ ଚରିତ୍ରର ପ୍ରମାଣ ଦେଉଛି । ହଁ, ସେ ଦାନ୍ତ ନିକୁଟୁଛି, ମୋତେ ଚିହ୍ନି ପାରି ପ୍ରଭୂତ ହସ ହସୁଛି । ପରେଶନାଥ ନମସ୍କାର କଲା, ହେଲେ ପାଟିରୁ କଥା ବାହାରିଲା ନାହିଁ । ବାହାରକୁ ଚାଲନ୍ତୁ ବୋଲି ହାତ ଠାରିଲା । ସେଇଠି କଥାବାର୍ତ୍ତା ହେବ, ଭାବନାକୁ ସଜାଡ଼ିବା ପାଇଁ ସମୟ ମିଳିବ ।

ବିଚିତ୍ର, ହେବାର କାରଣ ନାହିଁ । ମୁଁ ତା'କୁ ତ ଗୃହିଣୀ କରି ପାରିଥିଲି । ତାକୁ ସର୍ବସାଧାରଣ ନାରୀଜଗତରେ ମିଶିଯା' ବୋଲି କହିଥିଲି । ହେଲା ଏବେ ସେ ଦରବୁଢ଼ୀ ହୋଇ ବାହା ହେଉଛି, ବୟସ ଚାଳିଶି ପାଖାପାଖି ହେବ, କିଣ ହେଲା ସେଇଟୁ ? ଏ ବୟସରେ କ'ଣ କେହି କେବେ ବାହା ହୋଇ ନାହାନ୍ତି ? କାମାକ୍ଷାଙ୍କ ପାଖରେ ବାରମ୍ବାର ଆଣ୍ଠଉଥିଲା, ଅଗଡ଼ମ ବଗଡ଼ମ୍ ମନ୍ତ୍ର ପଢ଼ୁଥିଲା, ମୋ କାଚ ସିନ୍ଦୂର ବଜାୟ ହେଉ ବୋଲି ବର ମାଗୁଥିଲା,—ଏଥିରେ ଆଶ୍ଚର୍ଯ୍ୟ ହେବାର କିଣ ଅଛି ? କୋଉ ଆଧୁନିକା ପତ୍ନୀ ଅଲଟ୍ରସ୍ମାର୍ଟ କ୍ଲେଶ ବିକଳମସ୍ତରେ ସାବିତ୍ରୀ ହେବାକୁ ମନା କରିବ ? ତା'ର ନାରଙ୍ଗୀ ସିଲ୍‌କ ଶାଢ଼ୀ ହୁଏତ ଆଣ୍ଠୁ ପାଖରେ ଟିକିଏ କାଦୁଅ ହୋଇଯାଇଛି । କିଛି କ୍ଷତି ନାହିଁ, ଡ୍ରାଏକ୍ଲିନିଙ୍ଗର ସାମାନ୍ୟ

କାମ । ତା'ଛଡ଼ା ସେ କ'ଣ ମନଫୁଲଣିଆ ଖୋଲା ହସ ହସନ୍ତି ନାହିଁ ? ସବୁବେଳେ ମୁହଁ ଭାର କରି ରହୁଥାଆନ୍ତି ନା ଦୁଃଖ କରୁଥାଆନ୍ତି ? ସେ ତ, ଏ ଚିବୁକ ବାହାରିଲାଣି, ଚମ ସନ୍ଧିରେ ଝାଳ ଦିଶୁଛି, ଦିବ୍ୟ ମାଇକିନିଆ ହୋଇଗଲାଣି, ତା' ବୋଲି କ'ଣ ସେ ନାରୀ ନୁହେଁ ? ନା ସେ ସୁନ୍ଦରୀ ନୁହେଁ ?

ଅବଶ୍ୟ ନାରୀ । ଧରିନିଅ ଆହୁରି ସୁନ୍ଦରୀ । ପାଚିଗଲାଣି, ପଚିବାକୁ ଅନେକ ଡେରି ଅଛି; କିନ୍ତୁ ଏମିତି ହେବ ବୋଲି ଭାବି ହେଉ ନଥିଲା । କେଉଁଠି କିଛି ଗଣ୍ଡଗୋଳ ରହିଯାଇଛି, ଅଘଟଣ, ପୋକ, ସାଇକୋଲଜି, ଫ୍ରଏଡ୍, କଣ ବୋଲି ପରେଶନାଥ ସ୍ଥିର କରିପାରିଲା ନାହିଁ; କିନ୍ତୁ ନିଶ୍ଚୟ ଅଛି ବୋଲି ନିଜକୁ କହିଲା ।

ଶାଶ୍ୱତୀ ବାହାରେ ଆସି ଅପେକ୍ଷା କରିଥିଲା । କାଲିକାର ଭଦ୍ରମହିଳା, ହୋଇ ଏତେ ବିନୟ ଏତେ ଭଦ୍ରତା ଶିଖିଗଲାଣି ? ଦେଖା ହେଲାକ୍ଷଣି ଚିହ୍ନେଇ ଦେଲା—"ମିଟ୍ ମାଇଁ ହଜବ୍ୟାଣ୍ଡ...।"

ପରେଶନାଥ ଯେଉଁ ବ୍ୟକ୍ତିଙ୍କୁ ଦେଖିଲା, ତାଙ୍କୁ ଅସୁନ୍ଦର କହିଲେ ଯଥେଷ୍ଟ ନୁହେଁ ବୋଲି ତା'ର ମନେ ହେଲା । ଦେଖୁ ଦେଖୁ ତାର ଏକ ବିରାଟ ହସ ହସିବାକୁ ଇଚ୍ଛା ହେଲା । ଅସୁନ୍ଦର ବୋଲି କ'ଣ କହୁଛି ମ, ଇଏତ ସତ ମାଙ୍କଡ଼ ! ଟିକିଲି ନ ହେଲେ ସିମ୍ପାଞ୍ଜି ! ସିଏ ସାର୍‌ଙ୍କୁ, ତା'ର ନିଜ ବାପଙ୍କୁ ଖୁଣୁଥିଲା, ସେଇ ପୁଣି...ରକ୍ଷା କର !

ଶାଶ୍ୱତୀ କହି ଚାଲିଥିଲା ଯେ ଇଏ ହେଉଛନ୍ତି ନରୋତ୍ତମ ବରୁଆ । କ'ଣ କାମ କରୁଛନ୍ତି କହିଲା ନାହିଁ । ଦି'ମାସ ହେଲା ବାହା ହୋଇଛି, ଦିଲ୍ଲୀରେ ୟୁନିଭର୍ସିଟି ଚାକିରି ଛାଡ଼ି ଦେଇ ଆସିଛି । ଏଇଠି କାମ କରିବ, ଏଇଠି ରହିବ, ଖାସା ସୁନ୍ଦର ଜାଗା, ଅନେକଟା ଆୟାରଲ୍ୟାଣ୍ଡ ପରି—ନୁହେଁ ? ପରେଶନାଥ କହିବାକୁ ଚାହିଁଲା ଯେ ମୁଁ ଆୟାରଲ୍ୟାଣ୍ଡ ଦେଖିନାହିଁ ଧନ୍ୟବାଦ; କିନ୍ତୁ ତମ ଆଖିରେ ଏଇ ରାଜ୍ୟ ତ ଏଇକ୍ଷଣି ନନ୍ଦନକାନନ ପରି ମନେ ହେଉଥିବ । ତେବେ ସେ ନୀରବ ରହିଲା । ଏଣେ ନରୋତ୍ତମ ବାବୁଙ୍କୁ ଭଦ୍ରତା ବଶେଇ ଦେଖି ଯାଉଥିଲା, ଗୋଡ଼ରୁ ମୁଣ୍ଡଯାଏଁ । ଅବିଳମ୍ବେ ସେ ଏକ ଅଭିନବ ଆବିଷ୍କାର କଲା ଯେ ନରୋତ୍ତମ ବାବୁ ନିର୍ବୋଧ । ତାଙ୍କ ପାଟିରୁ କଥା ବାହାରୁ ନାହିଁ, ତାଙ୍କ ହସ ଲେପି ହୋଇଗଲା ପରି ଦିଶୁଛି, ତାଙ୍କ ନାକ ପାତାଳକୁ ପଶି ଯାଇଛି, କେବଳ ସେତିକି ନୁହେଁ ତାଙ୍କ ଚାହାଣିକୁ ଦେଖ । ଚାହାଣିରେ ବୁଦ୍ଧିର, ଚହଟ ଚେତନାର ନାଆଁ ଗାଁଆ ନାହିଁ । ବିଚରାଟି ବୋକା । ଅସୁନ୍ଦର ହେଲେ ହେଉ ବୋକା ବୋଲି ଇଏ ତାଙ୍କୁ ବାହା ହୋଇଛି । କିନ୍ତୁ ଟିଏ ଧରି ଖେଳେଇବ । ମୁଁ କହୁ

ନ ଥିଲି ? ସେ ପୁରୁଷମାନଙ୍କୁ ସେଇ ରୂପରେ ଦେଖିବାକୁ ଚାହେଁ, ପାଇବାକୁ ଚାହେଁ । ବାପାଙ୍କ ବୁଦ୍ଧିର ତେଜକୁ ସହି ପାରିଲି ନାହିଁ, ସେଇଲାଗି ମାଙ୍କଡ଼ ବୋଲି ଛିଗୁଲେଇଲି, ମଶଗଲରୁ ଯାଇଁ ଦୟା ଦେଖାଇଲି···ମୁଁ କହୁ ନଥିଲି ? ପରେଶନାଥ ଉତ୍ତର ପାଇଯିବାର ଇଉରେକାରେ ଝଲଉଠିଲା ।

କ'ଣ କହୁଥିଲୁ ଶୁଣେ ? ଯେ ସେ ଅପଲ ଜଣେ ? ଲଣ୍ଡନରେ ଦେଖିଥିବା ସେଇ ଝିଅ (ସୋହୋ ସ୍କୋୟାରର ନାରୀ) ଯାହାକୁ ସବୁଦିନେ ଘୃଣା କରିବା ଦରକାର ? କିନ୍ତୁ ଘୃଣାରେ ଉଲୁସି ଉଠୁ ନାହୁଁ ତ ?

ହଁ ଉଲୁସି ଉଠୁଛୁ । ହ୍ୟାପ ସବୁ ସମାନ ହୋଇ ପାରନ୍ତି, କିନ୍ତୁ ଏଇ ଜଣକ ଅପମାନ ହେବ ନାହିଁ କାହିଁକି ? ମୁଇଁ ତା'କୁ ବାଛି ନେଇଛି, ଆଜକି କୋଡ଼ିଏ ବର୍ଷ ହେଲା । ମୋର ଅନନ୍ୟା, ହେଲେ ଚିରନ୍ତନୀ, ଯେ ପୁରୁଷକୁ ଅଧିକାର କଲେ ଯାଇଁ ଖୁସି ହୁଏ, ଯାହାକୁ ଅଧିକାର କଲେ ଯାଇଁ ଖୁସି ଲାଗିବ, ମୋର ଅନ୍ତରତମ କାମନା, ଘୃଣା···ସେଥିରେ କାହାର କ'ଣ ଯାଉଛି ?

ସେ ପ୍ରକୃତରେ ସାଧାରଣ ବୋଲି କହୁ ନାହିଁ । ମୁଁ ଆସେପିବି । ତାକୁଇ ଦାନବୀ କରିବି, ଦେବୀ କରିବି । ନହେଲେ ଏମିତି ବର୍ଷ ବର୍ଷ ମରିଯିବ, ଉଲୁସି ପାରିବ ନାହିଁ । ଦେବୀ କରିବ ମ ! ଶରଣ ପଶିବ । ଠାକୁରାଣୀଙ୍କ ପରି ସେ ମଧ୍ୟ ବଡ଼ ଲୋକ, ବିଦ୍ୟାବୁଦ୍ଧି ମଣ୍ଡିତା, ସୁନ୍ଦରୀ, ଉନ୍ନତ, ଉତ୍ଫୁଲ୍ଲ, ଉଜ୍ଜ୍ୱଳ···

ଆପଣ ଆସିବେ ନିଶ୍ଚୟ । ଦୁହେଁଯାକ ନମସ୍କାର କରୁଛନ୍ତି, ହସୁଛନ୍ତି । ନାରୀ ଓ ନିର୍ବୋଧ । ପରେଶନାଥ ବିନା ଦ୍ୱିଧାରେ ଓ ବାରମ୍ବାର ମୁଣ୍ଡ ଟୁଙ୍ଗାରିଲା ।

ମୁଁ ଯିବି ସେଠିକି । ଅବଶ୍ୟ ତା'କୁ ପାରି ପାରିବି ନାହିଁ, କିନ୍ତୁ ବଶକୁ ଶାଶ୍ୱତ କରିଦେବି । ପ୍ରଥମେ···ତା' ଦେହର ବିଭିନ୍ନ ଅଂଶରେ ଚର୍ବି ଲାଗିବା ଦରକାର, ଅଳ୍ପ ବହୁତ, ଯେମିତିକି ସେ ଗୃହିଣୀର ପାଖ ହୋଇ ଆସିଲା ପରି ମନେ ହେବ ।

*

# ବାସି ଲହୁଣି

ସ୍ୱର୍ଗତ ଲୋକନାଥ ଜେନାଙ୍କ ସ୍ତ୍ରୀ ସୁରବାଳା ( ବାପଘର ଡ଼ାକ ନାଆଁ ଝୁମ୍ପୁରି) ସ୍କୁଲ୍‌ରୁ ଫେରି ଆସି ଘରକୁ ମାନେ ତାଙ୍କ ପାଖକୁ ଆସୁଥିବା ଆଠବର୍ଷ ବୟସର ସପଦ ଓ ତା' ପଛରେ ଲେଙ୍ଗଡ଼େଇ ଲେଙ୍ଗଡ଼େଇ ଅସୁଥିବା ଚାରିପାଞ୍ଚ-ବର୍ଷର ଶିପ୍ରାକୁ ଅନେଇ ରହିଥିଲେ । କେଡ଼େ ଅବାଗିଆ ପିଲାଟାମ ! ସାନ ଭଉଣୀର ଗୋଡ଼ ମକଚି ହୋଇ ଯାଇଛି କି କଅଣ, ଚାଲି ପାରୁ ନାହିଁ ବରାବର, ଆଉ ଇଏ ଧପ୍ ଧପ୍ କରି ମାଡ଼ି ଆସୁଛି । ଥରେ ହେଲେ ପଛକୁ ଅନଉ ନାହିଁ । ଝିଅକୁ କହିଲେ ମାନିବ ନାହିଁ, ମୋ ସାଙ୍ଗରେ ଘଣ୍ଟାଏ ଯୁକ୍ତି କରି ବସିବ; କିନ୍ତୁ ସେ ପ୍ରକୃତରେ ବଡ଼କୁ ମୁହଁ ଦେଇଛି । ଶିପ୍ରା ଯେତେହେଲେ ସାନ, ପୂରା ଚାରି ବର୍ଷ କେତେ ମାସ ସାନ, ତା'କୁ ଟିକିଏ ବେଶି ଗେହ୍ଲା କରିବା କଥା ନୁହେଁ ? ବଡ଼ ଚଡ଼େଇଲାରୁ ଇଏ ଯଦି ତା ମୁହଁକୁ ଆମ୍ପୁଡ଼ି ଦେଲା, ତେଲ ଏବେ ଟିକିଏ ରକ୍ତ ବାହାରିଲା, ତା'ବୋଲି ପିଲାଟାକୁ ଦି ହାତିଆ ପିଟିବା ଦରକାର ? ଅଗରୁ କେଡ଼େ ସୁନ୍ଦର ଗୁଲୁଗୁଲିଆ ଦିଶୁଥିଲା, ଆଖି ଦି'ଟା ଚମକୁ ଥିଲା, କଥା କଥାକେ ହସି ପକେଇବ, ହସିଲାରୁ ନାକ କୁଞ୍ଚେଇବ ତା' ମାଆ ପରି (ତାଙ୍କ ପରି) ଆଉ ଆଜି କାଲି କାନ୍ଦୁଛି । ଚୁଲି ନିଆଁ ପାଠ ତା'ଦେହରେ ଯାଉ ନାହିଁ । ଝିଅ ମୋତେ ହସି ଉଡ଼େଇ ଦେବ, କହିବ—ତୁ କଣ ସେ କାଳର ଆଈମାନଙ୍କପରି କଥା କହୁଛୁ ମା ? ସେ କଅଣ ସତରେ ପାଠ ପଢ଼ୁଛି ? ମଣ୍ଟେସରି ସିଷ୍ଟମର କାରବାର ଜାଣନାହିଁ ତୋତେ ? ଝିଅକୁ ଅହୁର ଗଣ୍ଡାଏ ଖଡ଼ ବଡ଼ ଗିଲାସରେ ଦୁଧ ଧଇଲୁ କାହିଁକି ବୋଲି କହିଲେ ଝିଅ ମୋ ଆଡ଼କୁ କାବା ହେଲା ପରି ଚାହିଁବ, ମୋତେ ଚେତେଇ ଦେବ,—ସୁଷମ ଖାଦ୍ୟ ଉପରେ ଯେତେଜ ଲେକ୍‌ଚର ଦେଉଥିଲୁ, ରେଡ଼ିଓବାଲା ଥରେ ଅଧେ ଡାକିଥିଲେ ବୋଲି ମନେ ହେଉଛି, ସବୁ ଭୁଲିଗଲୁଣି ? ମୋରି କଥା ମୋତେ ଓଲଟେଇ କରି କହିବ, ଖୁଂଚ୍ଚ ମାରିବ, ଯେ ମୁଁ ହେଉଛି ଶିକ୍ଷିତା ଆଧୁନିକା ଆଈ, ମୋ ତୁଣ୍ଡରେ ମାଇପି ଯୋଗ ଶୋଭା ପାଏ ନାହିଁ । ବେଳେ ବେଳେ ମନେ ହୁଏ ସେ ମୋ ଉପରେ ବାଦ ସାଧୁଛି, ମୋର ପାଠୁଆ-ପଣକୁ ଛିଗୁଲଉଛି, ଯେମିତିକି ମୁଁ ଦୁର୍ବଳଆ ନିର୍ବୁଦ୍ଧିଆ ବୋଉଟିଏ ହୋଇଥିଲେ

ଭଲ ହୋଇଥାଆନ୍ତା । ତା'ହେଲେ ତା' ବାପା ଘର ନନ ଯାଇଥାନ୍ତେ ! ମୁଁ ଜାଣିଛୁ........

କିନ୍ତୁ ସନ୍ଦେହ ନାହିଁ ଯେ ଏଇ ଟୋକା ଖାସ୍ ମୋର ପାଇଁ ଏଇ ବାଟରେ ଆସୁଛି, ଲେଙ୍ଗଡ଼େଇ ଲେଙ୍ଗଡ଼େଇ ହୋଇ, ଭାଇ ସାଙ୍ଗରେ ଜିଦ କରି ଆସୁଛି । ଦେଖୁନା' ପାଖ ହେଲାରୁ କେମିତି ତା' ମୁହଁରେ ହସ ଖେଳିଗଲାଣି ? ଏଣେ ଆରକ ଅଛଣ୍ଡା ଅଙ୍କ କଷିଲା ପରି ମୁହଁ କରିଛି କାହିଁକି ?

ହଁ, ମୁଁ ଶିକ୍ଷିତା ଆଧୁନିକା ଅଢ଼ । ଶିକ୍ଷିତା ଆଧୁନିକା ବିଧବା । ମୋ ସୁନ୍ଥାରେ ସିନ୍ଦୂର ନାହିଁ ସିନା (ସେତକ ମୁଁ ଜାଣିଶୁଣି ଲିଭେଇ ଦେଲି, ସନ୍ତକଟି ଗଲେ ଯାଉ ବୋଲି କହିଲି), ଅଢ଼ କିଛି ସରିଯାଇ ନାହିଁ । ମୋତେ ଆସମାନ ରଙ୍ଗର ସିଲ୍କଶାଢ଼ୀ ପିନ୍ଧିବାକୁ ଭଲ ଲାଗେ, ହେଇ ପିନ୍ଧିଛି । ଭାବନା ମଝିରେ ହାତର ସୁନ ଚୁଡ଼ି ଦ'ପଟ ହଲେଇବାକୁ ବଜାଡ଼ି ଦେବାକୁ ଭଲ ଲାଗେ, କରୁଛି । ନବେଲା ମୁହୂର୍ତ୍ତରେ ଏକୁଟିଆ ଭାବିବାକୁ ଭଲଲାଗେ, ସ୍ବା' ତା' କଥା ନୁହେଁ, ଆପଣାର ଗହୀରଆ କଥା, ନିଜ ସାଙ୍ଗରେ ସଂସାରକୁ ଥାପି ଦେଖିବାର, ତର୍ଦ୍ଧି ଚେଢିବାର ପ୍ରଗଲ୍ଭତା । କିଏ ମନା କରିବ ମୋତେ ?

ହେଲେ ଏଇ ଶିପୁଲିଟା ଲେଙ୍ଗଡ଼େଇ ଲେଙ୍ଗଡ଼େଇ ମୋ ପାଖକୁ ଆସିବ, କ୍ରମଶଃ ଧାଇଁଲା ପରି ହେବ, ଗୋଡ଼କୁ ଆହୁରି ବାଧିଲେ ବାଧୁ ମୁଁ ମୋ ଆଈ ପାଖକୁ ଆସିଛି ବୋଲି ବାହାଦୂରି ଦେଖେଇବ, ଚନ୍ଦନ ଗ୍ରବଟ୍ ପରି ଦ'ଟା ବଡ଼ ଦାନ୍ତ ଦେଖେଇ ହସିବ, ନାକ କୁଞ୍ଚେଇବ, ଅଢ଼ ମୁଁ ତା'କୁ ଏକା ନିଃଶ୍ୱସରେ ଟାଣି ନେଇ ଆସନ୍ତି ନାହିଁ ? ମୋର ବିପୁଳ କୋଳରେ ହଜେଇ ଦିଅନ୍ତି ନାହିଁ ? ସେଇଠୁଁ ଏ ଗାଲରୁ ସେ ଗାଲ, ସେ ଗାଲରୁ ଏ ଗାଲ ଚୁମାପରେ ଚୁମା, ଆହୁରି ଚୁମା । ତା'ପରେ ଯାଇଁ ସଂପୂର୍ଣ ପାଳି । ଘରୁ କହିବ ବୋଧେ ସେ କାଳର ଆଈ-ମାନଙ୍କ ପରି ହଉଛି, ପକ୍ଷପାତ କରୁଛି, ବୁଝୁନାହିଁ ଯେ ଏଥିରେ ଆଉ ପିଲାଟି ଉପରେ ମନୋବୈଜ୍ଞାନିକ ଚାପ ପଡ଼ିବ, ଭିତରିଆ କ୍ଷତ ହେବ । ମୋତେ ପାଠ ପଢ଼େଇବ । ଜାଣିଛି ଲୋ ଝିଅ ଜାଣିଛି, ତୋ ପାଠର ପୃଷ୍ଠାତକ ମୁଁ ମଧ୍ୟ ପଢ଼ିଛି, କିନ୍ତୁ ମୋର ଏଇ ଭଲ ପାଇବା ଜିନିଷଟାକୁ ବୁଝିବୁ କେମିତି ? ଯେଉଁ ଆନନ୍ଦରୁ ଜନ୍ମ ହେଇଛୁ ତୁ, ସେଥିରେ ଭଲ ପାଇବାର ପରସେଣ୍ଟେଜ୍ କେତେ ମୋ ଛଡ଼ା କିଏ କହି ପାରିବ ତୋତେ ?

ସୂର୍ଯ୍ୟାସ୍ତ ପୂର୍ବର ଚେନାଏ ନାଲି ଆଲୁଅ ଶିପ୍ରାର କହରା କେଶରେ ଚହଟି ଉଠିଲା, ଠିକ୍ ଯେତେବେଳେ ସୁରବାଳା ତା'ର ମଥା ଉପରେ ଶେଷ ଚୁମାଟିଏ

ଦେଇଥିଲେ, ଆଶୀର୍ବାଦ କଲାପରି । ମନେ ହେଲା ସେ ସେଇ କରଣର ରେଖା ଟିକୁ
ଧି...ମନେ ପଡ଼ିଲା । ସୁରବାଳା ତାଙ୍କ ଗୁଢ଼ ଭିତରେ ଗୋଟାଏ ବଚନ ଉଲ୍ଲାସର
ଆର୍ତ୍ତନାଦ ଶୁଣି ପାରିଲେ । ସତେ ଯା କେବେକାର ଅଶାନ୍ତ ହଠାତ୍ ଚେଇଁ ଉଠିଛି,
ବୋକା ବାଳୁଙ୍ଗପରି ଅଥାନ ଥାନରେ ମୁଣ୍ଡିଆ ମାରୁଛି । ଆଃ, କାଟୁଛ ମ ! ଏଇକ୍ଷଣି
ଏଇସ୍ବା ମନେ ପଡ଼ିବାକୁ ଥିଲା ? ପିଲାଦିନର "ସିକ୍ରେଟ" । ଯେତେବେଳେ ଆମେ
କେତେଜଣ ସାଙ୍ଗ, ମୀରା, ହେମ, ତରୁ ଇତ୍ୟାଦି ପରସ୍ପରକୁ ତଥାକଥିତ ଗୋପନ
କଥା ଶୁଣାଉଥିଲୁ । ସ୍ଥିର ହୋଇଥିଲା ଯେ ସପ୍ତାହକୁ ଥରେ ଖଣ୍ଡେ ଠିକଣା ଜାଗାରେ
ଏକାଠି ହେବା (ମାନେ ଯେଉଁଠି ସିଏ ସବୁ ପରିଚର, ଛେଳି କି ମାଳୀ ଛଡ଼ା ଆଉ
କେହି ଶୁଣିବାକୁ ନ ଥିବେ ) ଏବଂ ଜଣେ ତା'ର ମୁହଁରୁ ଗୋଟିଏ ନିଜସ୍ବ ଓ ନୂତନ-
ତମ ରହସ୍ୟ ବାହାର କରି ଅନ୍ୟମାନଙ୍କୁ ବଢ଼େଇ ଦେବ, ଯେମିତିକି ସମସ୍ତେ ତାର
ସ୍ୱାଦୁ ପାଇ ପାରିବେ, ଆମେ ହେଉଛୁ ସାଙ୍ଗ ବୋଲି ଫୁଲି ଉଠିବେ । ସେଇଠୁଁ
ଯାଇ ଅନ୍ୟ କଥା । ଯଥା ମୀରା କହିଲା ଯେ ସେ ଜାଣିଛି ଦେଖିଛି, ତାର ନାନୀ
ଲୁଚେଇ ଲୁଚେଇ ଆପଣା ଅଙ୍ଗ ପ୍ରତ୍ୟଙ୍ଗର ରୂମ ଛିଅର ହୁଏ, ମର୍ଦ୍ଦଙ୍କ ପରି । ହେମ
କହିଲା ସେ ଜାଣିଛି ଦେଖିଛି ତା' ବୋଉ ମଧ୍ୟ ତା ବାପାଙ୍କୁ ଚୁମା ଦିଏ । ସେଇଠୁଁ
ଜଣେ କିଏ ଆପତ୍ତି ଉଠେଇଲା ମେ ଇଏ ସିକ୍ରେଟ ନୁହଁ, ଏମିତି ହୁଏ, ଖାଲି
ପୁରୁଷମାନେ ଚୁମା ଦେବେ ବୋଲି କୋଉଠି ଲେଖା ହୋଇନାହିଁ, ହେଲେ
ଅନ୍ୟମାନେ ମାନି ଗଲେ । ତରୁ କହିଲା ମେ ଜାଣିଛି (ଦେଖିଛି) ଯେ ତା' ସାନଭାଇ
ରାଜନର ଗୁଡ଼ ମଧ୍ୟ ଫୁଲି ଉଠିଲାଣି ଝିଅଙ୍କ ପରି । ଅନ୍ୟମାନେ ହସିଲେ ସିନା
ଘୋର ପ୍ରତିବାଦ କଲେ, କହିଲେ ଇଏ ସିକ୍ରେଟ ନୁହେଁ ମିଛକଥା । ଏଭଳି ଏକାଧିକ
ବାଦ ବିବାଦ ପରେ ବ୍ୟବସ୍ଥା ହେଲା ମେ ପ୍ରତ୍ୟେକେ କେବଳ ନିଜ ବିଷୟରେ କହି
କହିବେ, ନିଜକୁ ନେଇ କେହି ନ ଜାଣିଥିବା ତଥ୍ୟ, ସ୍ୱପ୍ନ, ଆବିଷ୍କାର । ସେହି
କ୍ରମରେ କିଏ କେତେ କଥା କହିଲା, ଅଙ୍ଗ ଅଙ୍ଗ ହୋଇ, କହିସାରିଲା ପରେ ମୁଁ
ସେମିତି କିଛି ନ ଥିଲା ବୋଲି କାଟିକୁଟି ଦେଇ, ଲାଜରେ ଲାଲ ହୋଇ ଯାଇ ।
ମୁଁ ପଛରେ ପଡ଼ିଲି ନାହିଁ; କିନ୍ତୁ ଗୋଟିଏ ରହସ୍ୟ ଲୁଚେଇ ରଖିଲି । କହିବା କହିବା
ହୋଇ କହି ପାରିଲି ନାହିଁ ଯେ ମୁଁ ସୂର୍ଯ୍ୟାସ୍ତକୁ କିସ୍ କରେ । ଝାନ୍ତୁ ବାଡ଼ରେ
ହେଉ କେଜେ ବାପାଙ୍କ ଫଟୋ ଉପରେ ହେଉ କି ଚଳନ୍ତା ଗାଡ଼ିର ବେଞ୍ଚ
ଉପରେ । ଯେଉଁଠି ଆଖିରେ ପଡ଼ିଲା ଆଉ ସୁବିଧା ମିଳିଲା । ପଢ଼ିଲେ ପଢ଼ିଲେ
ସବୁଦିନେ କିସ୍ କରୁଥିଲି । ପରେ ଯେଉଁ ଦିନଟି ଭଲରେ କଟିଗଲା, ସେଇ ଦିନର
ଶେଷରେ ତା'କୁ ଧନ୍ୟବାଦ ଦେଲି ପରି: କିନ୍ତୁ କିସ୍‌ଟା କଣ ଖାଲି ଧନ୍ୟବାଦ
ପରି ଲାଗୁଥିଲା ? ନା; ତାଠୁଁ ଅଧିକ, ଧୀରେ ଧୀରେ ଅନେକ ଅଧିକ । ସତେ ନ

ମୋ ଓଠକୁ ଲାଗି ଆତୁର ଯୋଡ଼ାଏ ଓଠ ଅଛି, ତମ ଆଖିରେ ଦଣ୍ଡ ନାହିଁ ସିନା, ମୁଁ ତା'ର ଓଦା ଆଉ ଉଷୁମକୁ ପାଉଛି, ନେଉଛି । ଅନ୍ୟମାନଙ୍କୁ ଜଣେଇବା ଦରକାର ନାହିଁ ।

ଯେତେକ ରୋମାଣ୍ଟିକ୍ ନନ୍‌ସେନ୍‌ସ୍ ! ସିଲି !

ହେଲେ ସୁରବାଳା ଶିପ୍ରାର ମୁଣ୍ଡ ଉପରେ ଏତେ ସମୟ ଯାଏଁ ଲେପ୍‌ଟେଇ ପଡ଼ିଥିଲେ ଯେ ମନେ ହେଉଥିଲା ସେ ସେଠୁଁ ସହଜରେ ଉଠି ଆସିବାକୁ ଚାହାନ୍ତି ନାହିଁ । ପିଲାଦିନର ନନ୍‌ସେନ୍‌ସକୁ ଫେରାଇ ଆଣିବା ପାଇଁ, ପୁଣି ଥରେ ତା'ର ସ୍ୱାଦୁ ଚାଖିବା ପାଇଁ ଲୋଭ କରୁଛନ୍ତି ।

ଏଣେ ସମ୍ପଦ ଠିଆ ହୋଇ ରହି ଓଠ ନେଫଡ଼େଉଥିଲା । ଆଈ ନାତୁଣୀଙ୍କ ପେରେମ । କିଛି ନୂଆ କଥା ନୁହେଁ । ହେଲେ ଆଜି ଏତେ ବଢ଼ି ଯାଉଛି କାହିଁକି ? ତା'ର ଇଚ୍ଛା ହେଲା କହନ୍ତା, ହନ ହେଲା ସେତିକି ଥାଉ; କିନ୍ତୁ ଆଈ ହେଉଛନ୍ତି ଗୁରୁଜନ, ତାଙ୍କୁ ଥଟ୍ଟା କରିବା କଥା ନୁହେଁ ବୋଲି ମମ୍‌ମୀ ବାରମ୍ବାର କହୁଛି । କହୁଛି ସେ ପୁରୁଣାକାଳିଆ ମଫସଲିଆ ଆଈ ନୁହନ୍ତି, ଆଉ ଆମେ ଆଜି କାଲିକାର ଭଦ୍ରଘର ପିଲା । ତେଣୁ ସମ୍ପଦ କେବଳ ଓଠ ନେଫଡ଼େଉଥିଲା । ସେଥିକୁ ମନା ନାହିଁ । ଅପେକ୍ଷା କରିଥିଲା । ଶିପୁଲି ପରେ ତା'ର ପାଳି ଆସିବ, ଆଈଙ୍କୁ ଗାଲ ଦେଖେଇବାକୁ ପଡ଼ିବ, ଗୋଟାଏ ଦୁଇଟା ଚୁମା ଖାଇବାକୁ ପଡ଼ିବ । ଖାଲି ସେତିକି ନୁହେଁ, ଶିପୁଲି ହୁଏତ ଭୁଲିଯାଇପାରେ; କିନ୍ତୁ ମୁଁ ବଡ଼ ବୋଲି ମୋର ଗୋଟାଏ ଦାୟିତ୍ୱ ଅଛି । ମମ୍‌ମୀ କହୁଛି ମୋତେ ମଧ୍ୟ ଆଈଙ୍କୁ ଗେଲ କରିବାକୁ ହେବ । କିଛି କ୍ଷତି ନାହିଁ । ଆଈଙ୍କ ଗାଲ ମମ୍‌ମୀର ଗାଲ ପରି ପାଲିସ୍ ନୁହେଁ ସିନା, ତାଙ୍କ ଦେହରୁ ବି ଗୋଟାଏ ରକମର ବାସ୍ନା ଆସେ । ମନ୍ଦ ନୁହେଁ ।

ଶିପ୍ରାର ଚୁମା ଖାଉଥିବା ଏବଂ ସମ୍ପଦର ଚୁମା ପାଇଁ ଅପେକ୍ଷା କରିଥିବା ବ୍ୟବଧାନରେ ସହରର ସୂର୍ଯ୍ୟ କ୍ରମଶଃ ବୁଡ଼ିଗଲେ ଏବଂ ନାଲିରଙ୍ଗ ଲିଭିଲିଭି ଆସିଲା । ବାତ୍ସଲ୍ୟର ଉପରୋକ୍ତ ଦୃଶ୍ୟଟି ଅସାଧାରଣ ନୁହେଁ, ଏହି ସମୟରେ ସ୍କୁଲ ଫେରନ୍ତା ଆଉ କେତେ ପୁଅ ଝିଅ ବିଭିନ୍ନ ଘରରେ ଗେହ୍ଲା ହେଉଥିବେ, ହୁଏତ ସ୍ନେହରଞ୍ଜିତ ଗାଲ ମାଡ଼ ଖାଉଥିବେ । ପ୍ରଭେଦ କେବଳ ଏତିକି ଯେ ଏ ଦି'ପିଲାଏ ଏଠି ରହିବେ ନାହିଁ । ଅଳ୍ପ ସମୟ ପରେ ନିଜ ଘରକୁ ଫେରିଯିବେ । ବଲିଆ ଗୁଳର ଟୋକା ତାଙ୍କୁ ଡାକି ନେଇଯିବ । ସ୍କୁଲ ପାଖ ବୋଲି ସେମାନେ ବେଳେ ବେଳେ ଛୁଟି ହେଲା ପରେ ଅଈଙ୍କ ପାଖକୁ ଆସନ୍ତି । ମମ୍‌ମୀ ସାଙ୍ଗରେ ଆଗରୁ କଥା ହୋଇଥାଏ ଯେ ହପ୍ତାଏ ଟଣ୍ଡେ ହୋଇଗଲଣି, ଅଜା ଅଈଙ୍କ ଘର ହୋଇ ଫେରିଲେ ଭଲ ହେବ;

କିନ୍ତୁ ସେମାନଙ୍କୁ ଚେତେଇ ଦିଆ ହୋଇଥାଏ ଯେ ବେଶି ସମୟ ରହିବ ନାହିଁ, ଆଈଙ୍କୁ ହଇରାଣ କରିବ ନାହିଁ । ବଳିଆ ଆସି ପଡ଼ୋଶୀମାନେ ତା'କୁ ସାଙ୍ଗରେ ନେଇ ସ୍କୁଲ ଆସିବ । ଘରେ ହୋମ୍ ୱାର୍କ ଅଛି । ତା ଛଡ଼ା ଆଈଙ୍କର ମଧ୍ୟ ଅନ୍ୟ କାମ ଅଛି ।

ଏକୁଟିଆ ଘରେ ଆଈଙ୍କର ଅନ୍ୟ କାମ କଅଣ ବୋଲି ସଂପଦର କୌତୂହଳ ହୁଏ; କିନ୍ତୁ ତା'ର ଧାବମାନ ସଂସାରରେ କୌତୂହଳ ଜଗାଇବାର ମେଣ୍ଟାଇବାର ଏତେ ଜିନିଷ ଅଛି ଏବଂ ସେଥିପାଇଁ ସମୟ ଏତେ କମ୍ ଯେ ସେ ମାମୀର ମାଆକୁ ନେଇ ମୁଣ୍ଡ ଘୂରାଇବାର ଆବଶ୍ୟକତା ମନେ କରେନାହିଁ । କେବଳ ସେ ଏତିକି ଶୁଣିଛି ଯେ ଆଈ ସବୁବେଳେ ତାଙ୍କ ଘରେ ବସି ରହନ୍ତି ନାହିଁ, ସହରରେ ଗୋଟାଏ କେଉଁ ଜାଗା ଅଛି, ସ୍କୁଲ୍ ଭଳିଆ, ହେଲେ ସ୍କୁଲ ନୁହେଁ, ସେଇଠିକି ଯାଆନ୍ତି । ସେଠି ବହୁତ ପିଲା । ବୋକା ପିଲା ।

ସ୍ୱାମୀଙ୍କ ମୃତ୍ୟୁ ପରେ ଏକୁଟିଆ ଘରେ ଦିନ କାଟିବା ଅନିବାର୍ଯ୍ୟ ନ ଥିଲା । କେହି କେହି କରୁଣସୂଚକ କାରଣ ଦେଖାଇଥିଲେ ଯେ, ଘରଖଣ୍ଡିକ ସ୍ୱାମୀ ତାଙ୍କର ଝାଳବୁହା ଧନରେ ତୋଳିଛନ୍ତି । ତାଙ୍କର ସ୍ମୃତି ଏଠି କଥା କହୁଛି । ଏଭଳି କଥାର ଶୁଣିଲାବେଳେ ସୁରବାଳା ଓଠ ଚାପି ଯଥେଷ୍ଟ ଗମ୍ଭୀର ହେବାପାଇଁ ଚେଷ୍ଟା କରୁଥିଲେ । କାଳେ ପ୍ରତିକ୍ରିୟାମାନ ପଦାରେ ପଡ଼ିଯିବ । ହଁ, ମୁଁ ତାଙ୍କୁ ଧଇଁସଇଁ ହେବାର ଝାଳ ବୁହାଇବାର ଅବଶ୍ୟ ଦେଖିଛି, ଯେତେବେଳେ ପୁରୁଷଟିକୁ ପଚାଶ ଟପି ଯାଇଥିଲା ଓ ପେଟର ଗୋଳେଇ ବେଲ୍ଟ ଉପରକୁ ମାଡ଼ି ଆସିଥିଲା । ତେବେ ତା'ର କାରଣ ଭିନ୍ନ ଏବଂ ହାସ୍ୟାସ୍ପଦ । ପୁଣି—ସ୍ମୃତି କଥା କହିବ ? ଧନ୍ୟବାଦ, ତା ହେଲେ ମୋର ଏ ଘରେ ରହିବା ଦରକାର ନାହିଁ, ମୁଁ ପଛେ ମଠକୁ ଯିବି । ଏଥିରେ ମୋର ତାଙ୍କୁ ଭଲ ପାଇବା ନ ପାଇବାର ପ୍ରଶ୍ନ ଉଠୁନାହିଁ । କଥା ହେଉଛି ଯେ ଆଉ କେତେଟା ବର୍ଷ ବଞ୍ଚିବାକୁ ଅଛି, ନିଜ ନିବିଡ଼ ମରବତକୁ ନେଇ ସୁଖୀ କରିବାର ଏଇ ପ୍ରଥମ ଓ ଶେଷ ସୁଯୋଗଟି ଛାଡ଼ିବି କାହିଁକି ? ଝିଅ କହିଥିଲା—ବୋଉ, ମୋ ପାଖରେ ରହ । ବାହାହେଲା ଝିଅ ବୋଲି ମୁଁ କଣ ପର ହୋଇଗଲି ? ବଡ଼ପୁଅ ଚଗଲ୍ ସାବନ ବାନ୍ଧା ହୋଇନାହିଁ, କଲିକତାରେ କଣ ଆର୍ଟ ବ୍ୟବସାୟ କରୁଛି, କହିଲା—ବୋଉ, ମୋ ପାଖକୁ ଆସ । ମୁଁ ତମ ପାଇଁ ସ୍ପେଶାଲ ଘର, ନଈ, ପାହାଡ଼, ସବୁ ଯୋଗେଇ ଦେବି । ତମେ କେବଳ ଆଖି ଖୋଲି ଦେଖୁଥିବ, ଆଖି ବୁଜି ଧ୍ୟାନ କରୁଥିବ; କିନ୍ତୁ ମୁଁ ଆମ ପୁରୁଣା ପୁଝାରୀର ପୁଅ ଗଣେଶ ଓ ବାସନ ମାଜିବା ପାଇଁ ଆମୁଦୁର ଦକର ଦକର ତଥା ଦୁର୍ବୋଧ କଲିକତିଆ

ଶୁଣିବା ପାଇଁ ବାଧ୍ୟ ହୋଇ ଏଇଠି ରହିବା ପାଇଁ ସ୍ଥିର କଲି । ଭଲ କଲି । ଘରର ନାଆଁ ଦିଆ ହେବାକୁ ଥିଲା "ସୁରଲୋକ" ସ୍ୱାମୀ ସ୍ତ୍ରୀଙ୍କ ନାଆଁ ସାଙ୍ଗକୁ ଖାପ ଖାଇଲା ପରି । ତା' ପୂର୍ବରୁ ସ୍ୱାମୀ ଚାଲିଗଲେ । ମୁଁ ନାମକରଣକୁ ମନାକଲି । ଏଥିରୁ ମଧ୍ୟ ଯେ କେ ଭାବୁଥିବେ ଯେ ସ୍ମୃତି କଥା କହୁଛି । ଆଉ କେତେକ ତ୍ୟାଗ ଭଳିତ ଆଧୁନିକତାର ଆଉ ଗୋଟିଏ ନମୁନା ମିଳିଗଲା ବୋଲି ଭାବିଥିବେ । ଦୁଇ କୁଳର ମଙ୍ଗଳ ହେଉ । ସୁରବାଳା ସୁଖରେ ଅଛି !

ଏବଂ ପ୍ରକାରେ ସୁନେଲି ପରି ମୁଁ ମୋ ସ୍ୱାଧୀନତାର କଡ଼େ କଡ଼େ ସବୁଠାରୁ ସାର, କଅଁଳିଆ କୁନୁମୁନିଆ ଭଲପାଇବା ବର୍ତ୍ତି ଦେଇଛି । ପଂପୁ ଶିପୁଲି (ଶିପ୍ରାଲି ଟିକିଏ ଅଧିକା) ଏବଂ "ସ୍ନେହସଦନ"ର ପନ୍ଦର ଜଣ ଭାଗ୍ୟହୀନ ପିଲା । ସୁରବାଳା ପରମ ସୁଖରେ ଅଛି ।

ମୂର୍ଚ୍ଛାସ୍ତ୍ରଚୁମ୍ବନ ମନେପଡ଼ିଲା ବେଳେ ତାଙ୍କର ଧାରଣା ହୋଇଥିଲା, ମାତ୍ର କ୍ଷଣକ ପାଇଁ, ଯେ ଯାହା ଚାଲିଯାଇଛି ତାହା ମୋତେ ଫେରିବ ନାହିଁ । ସିଲ୍‌କ୍ ହେଉ କି ନନ୍‌ସେନ୍‌ସ ହେଉ ତାକୁ ବଞ୍ଚେଇ ରଖି ହେଲାନାହିଁ···ମୋ ଦୋଷ ନୁହେଁ, ମୋ ଦୋଷ ନୁହେଁ । ସେଇଥିପାଇଁ ସେ ଶିପ୍ରାର ମଥା ଉପରେ ଟିକିଏ ଅଧିକ ସମୟ ଲେପ୍‌ଟେଇ ପଡ଼ିଥିଲେ; କିନ୍ତୁ ମୁଣ୍ଡ ଟେକିଲାକ୍ଷଣି ପରମ ସୁଖର ସଚେତନତା ଫେରି ଆସିଥିଲା । ସୁରବାଳା ନିଜକୁ କହିଲେ ଯେ ମୋ'ର ଶେଷ ଜୀବନର ଭଲ ପାଇବାରେ ଖାଲି ପିଲା ଆଉ ପିଲା । ସେଥିରେ ଅଶାନ୍ତର ସୁରବାଳା ସୁରୁ ଅଥବା ଝୁଂପୁସି ରହିବ ନାହିଁ କାହିଁକି ? ସେ କଣ ପିଲା ନଥିଲା ?

ଚୁମ୍ବନପର୍ବ ସରିଲା ପରେ ସିଲ୍ ଦିହେଁ ଆଇକ୍ରି ନିଜ ପାଇଁ ଛାଡ଼ିଦେଇ ତରତର ହୋଇ ଘର ଭିତରକୁ ପଶିଗଲେ । ଶିପୁଲର ଗୋଡ଼ କଣ ହୋଇଛି ପଚାରିଲାରୁ ଠିକ୍ ଉତ୍ତର ମିଳିଲା ନାହିଁ । ଜରୁରି କାମ ହେଲା ପଂପୁ କମିକ୍ ପଢ଼ିବ । ଶିପୁଲି କିଛି ନ ବୁଝିଲେ ମଧ୍ୟ ଆଉ ଗୋଟାଏ ମୋଟା ବନ୍ଧେଇ ବହି ଧରି ବସିବ, ଯେଉଁଥିରେ ଗୁଡ଼ାଏ ଛବି ଥିବ । ଆଈ ଖାସ୍ ତାଙ୍କର ପାଇଁ ମା'ଆ ମାମୁଁମାନଙ୍କର ପିଲାଦିନର କମିକ୍ ଓ ଛବି ବର୍ତ୍ତମାନ ବନ୍ଧେଇ କରି ସାଇତିଛନ୍ତି । ଶିପୁଲି ଅଳ୍ପକରେ ବୋର୍ ହୋଇଯିବ । ଏଣେତେଣେ ବୁଲିବ, ଆଈ ପାଖରେ ଆସି ଛିଡ଼ା ହେବ । ଅବୁଝା ପ୍ରଶ୍ନ—ଲଜେନ୍‌ସ କେତେବେଳେ ମିଳିବ ? ସେଇ ଯେଉଁ ଛଅ-କୋଣିଆ ଲଜେନ୍‌ସ କଳା ଦେହରେ ପଟା ପଟା ଧଳା ଗାର ··ସୁରବାଳା ପିଲା ଦି'ଜଣଙ୍କ ଆସନ୍ନା କାର୍ଯ୍ୟକଲାପ ଅନୁମାନ କରିଗଲେ ଓ ମୃଦୁ ମୃଦୁ ହସିବାକୁ ଲାଗିଲେ । ପିଲାମାନଙ୍କୁ ଭଲପାଇବା କେତେ ସହଜ, ସରଳ, ସୁନ୍ଦର ! ମା'ଆମାନଙ୍କ

ପାରି ନୁହେଁ, ସେମାନେ ମହତ୍ୱରେ ଘାଣ୍ଟି ହୁଅନ୍ତି, ଦାୟିତ୍ୱରେ କଷ୍ଟ ପାଆନ୍ତି । ଆୟାମାନଙ୍କ ପାଇଁ ଏବଂ 'ମାମା'ମାନଙ୍କ ପାଇଁ ।

ସୁରବାଳା ପଛକୁ ମୁହଁ ଫେରାଇ କାନ୍ଥ ଘଣ୍ଟାରେ କେତେଟା ବାଜିଛି ଦେଖିଲେ । ନା, ଏମାନେ ଆସିଛନ୍ତି ବୋଲି ମୁଁ ତମମାନଙ୍କୁ ଭୁଲିଯାଇ ନାହିଁ । ମୋର ମନେ ଅଛି ଆଜି ଗୁରୁବାର । ସ୍ନେହସଦନ ! ଆଜି ସଞ୍ଜରେ ମାମା ଯିବେ ତମ ପାଖକୁ । ତମ ପାଇଁ ଲଜେନ୍‌ସ ନୁହେଁ ଆଖିଦୁରୁଶିଆ ଲଡୁ, ଗଜା, ଛୀରଗଜା ଇତ୍ୟାଦି ଆଣିବେ । ପ୍ରତିଥର ନୂଆ ମିଠେଇ ଆଣିବାକୁ ହେବ, ନହେଲେ ମୁହଁ ଶୁଖିଯିବ । ସେଠି ଅବଶ୍ୟ ପାତର ଅନ୍ତର ଚଳିବ ନାହିଁ । ସମସ୍ତେ ସମାନ, ଦସ୍ୟୁଜସ୍ୟୁ । ଅଷ୍ଟବକ୍ର ମନୁ, ଯାହାର ହସଟି ହସା ମିଠା, ବଡମୁଣ୍ଡିଆ ସୀତାରାମ ଯେ ସବୁବେଳେ ଆଖି ମିଟିମିଟି କରେ, କଥାକହିବାକୁ ଯାଇ ଲାଜି ଲାଜ ହୁଏ, ଗୋଷା ସବୁନାଖା ସଙ୍ଗୀତା ଯେ ପାଟି ଫିଟାଏ ନାହିଁ, ଆଉ ତା'ର ଜଣ ହୋଇଛି କେଜାଣି ଶୁଖି ଶୁଖି କଣ୍ଟା ହେଲଣି । ଆଗଚଲି ଅନେକ, କାନ୍ଦୁରା ମୀନା, ଏମିତି ପନ୍ଦର ଜଣ । ବିଚରା ପ୍ରତ୍ୟେକର ଦେହ ମନ ପଛେଇ ଯାଇଛି, ଅଡୁଆ ତଡୁଆ ବିକୃତ ହୋଇଯାଇଛି । ହେଲେ କାହାରିକୁ ମୁହଁରେ ଦୟା ଦେଖାଇବାକୁ ହେବନାହିଁ ଏବଂ ଭଲ ପାଇବାରେ ଊଣା ଅଧିକ କରି ହେବନାହିଁ । ଡାକ୍ତର ବଡ଼ାଳ ମାଟ୍ରନ୍‌କୁ ବୁଝେଇ ଦେଇଛନ୍ତି, ମାଟ୍ରନ୍ ସମାଜସେବିକାମାନଙ୍କୁ ଓ ସ୍ନେହମାତୃକା ମାଉସୀମାନଙ୍କୁ ଚେତାଇ ଦେଇଛନ୍ତି । ତେବେ ମୁଁ ଗୋଟିଏ ବୋଲି ମାମା । (ମନୁ ପ୍ରଥମେ ଡାକିଲା ମାମା, କାହିଁକି ଡାକିଲା ଭଗବାନ୍ ଜାଣନ୍ତି, ସେଇ ନାଆଁ ରହିଗଲା) । ମୋର ବୟସ ଓ ବିଦ୍ୟାବୁଦ୍ଧି ଦୃଷ୍ଟିରୁ କେହି ମୋତେ ପାଠ ପଢ଼େଇବାକୁ ସାହସ କରିନାହାନ୍ତି । ମୋର ଭଲ ପାଇବାର ମୂଲ୍ୟ ଓ ମାନ ମୋତେ ଜଣାଅଛି । କରିବି ନାହିଁ ସିନା, ମୁଁ ତାଙ୍କ ଚେଷ୍ଟାର ତାରତମ୍ୟ ଜାଣେ । ଲଡୁ ଅବଶ୍ୟ ସମାନ ଭାବରେ ବାଣ୍ଟିବାକୁ ହେବ ପ୍ରତ୍ୟେକର ମଥାରେ ହାତ ବୁଲେଇ ପିଠି ଥାପୁଡେଇ ଆଶ୍ୱାସନା ଦେବାକୁ ହେବ ଯେ ଭୟ ନାହିଁ, ମାମା ତମକୁ ଭଲ ପାଏ । ହେଲେ ଏଇ ଭଲ ପାଇବା-ପାଇବାରେ କିଛି କିଛି ଏକ୍‌ସଟ୍ରା ଅଧିକ ବିଶେଷର ଲୋଭ ଅଛି । ମାମା ଜାଣେ । ଯେମିତିକି ଟେଙ୍ଗ ବୋଲି ଗୋଟିଏ ଅପରିଚ୍ଛନ୍ନଆ ପିଲା ଥିଲା, ଫୁଲଟିଏ ପାଇଲେ ଖୁସି ହୋଇଯାଏ (ତା'କୁ କେଉଁ ବିଦେଶୀ କିଣି ନେଇଗଲା) ମୁଁ ତା' ହାତରେ ଫୁଲଟିଏ ଗୁଞ୍ଜି ଦେଉଥିଲି । ସୀତାରାମ ତାସ ପଣ୍ଟିବାକୁ ଭଲ ପାଏ, ମୀନା ନାକଚୁମୁଟାରେ ହସି ଦିଏ, ସଙ୍ଗୀତା ଦେହକୁ ଲାଗି ହୋଇ ରହିବାକୁ ଚାହେଁ, ଦ୍ୱନ୍ଦର ଯୋଡ଼େଇ ଦେଲେ ଅହ୍ନର ଖୁସି ହୁଏ, ସତେକି ତାକୁ ପୃଥ୍ୱୀଯ ଜର ଶୀତ ..

ସଂପୁ ଶିପ୍ରା ହୁଅନ୍ତି କି ଅନ୍ୟମାନେ ହୁଅନ୍ତି ଫିଲ୍ମମାନଙ୍କୁ ଭଲ ପାଇବା ନେଇ ମୋତେ କେହି କିଛି ବଡେଇ ପାରିବ ନାହିଁ । ବେଳ ବୁଡ଼ିଲାବେଳକୁ ଅନ୍ତତଃ ଏଇ ଭଲ ପାଇବାରେ ପାସ୍ କରି ଯାଇଛି ତ !

ଘର ଭିତରେ ପିଲାଏ ଆଲୁଅ ଜଳେଇ ଦେଇ ସାରିଲେଣି । ରାସ୍ତାର ଆଲୁଅ ଜଳି ଉଠିଲାଣି; କିନ୍ତୁ ସୁରବାଳା ଦାଣ୍ଡପିଣ୍ଡାରେ ଅନ୍ଧାରକୁ ନେଇ ବସି ରହିଲେ । ସତେକି ସେ କହିବାକୁ ଚାହାନ୍ତି ଯେ ମୋ କଥା ଭିନ୍ନ । ମୁଁ ସଂଜକୁ ଗୋଟିପଣେ ଚାହେଁ । କାରଣ ସଂଜ ଦେଲା ପରେ ଏଇ ସହରରେ ଥିବା ଜଣେ ନଣନ୍ଦ, ଲେଖାଯୋଖା ଦିଅର ଯାଆ ଦି' ମୂର୍ତ୍ତି, ବାକି କେହି ବନ୍ଧୁବାନ୍ଧବ, ଏପରିକି ସ୍ୱାମୀ ଓ ଶାନ୍ତନୁ ମଧ୍ୟ ଆସନ୍ତି ନାହିଁ । ପୁରୁଷମାନେ କାମରୁ ଫେରିଲା ପରେ ସମସ୍ତଙ୍କ ଘର ପରି ହଟେ, ଚହଳ ମହଲର ଦୀପ ସାଙ୍ଗକୁ ପୁରୁଷ ପ୍ରେମର ବାନା ଫରଫର ଉଡ଼େ, ଏଣିକି ଅନ୍ତରଙ୍ଗ କୋଳାହଳ, କନ୍ଦଳ, ଉଷ୍ମରୁ ତାତି, ତାତିରୁ ଉଷ୍ମ, ଶେଷକୁ ଅପରିହାର୍ଯ୍ୟ ଶେଯ । ଶେଯରୁ ଉଠିଲା ପରେ ଆଉ ଗୋଟାଏ ଦିନ । କିଏ ହିସାବ ରଖିଛି ଗତକାଲିର ବିଆନିଆରେ ପ୍ରେମ କେତେ ଥିଲା, ସେକ୍ସ କେତେ ଥିଲା, ଆନନ୍ଦ କେତେ, ଉତ୍ତେଜନା କେତେ ? କିଏ ଖୋଜୁଛି ଯେ ଦୁନିଆର ପରିଣତିକୁ, ଅଣ୍ଡା ଶେଯକୁ ଉତ୍ତର ନାହିଁ ? ନା, ସେମାନେ କେହି ଆସିବେ ନାହିଁ, ଧନ୍ୟବାଦ । ଗୋଠଣ୍ଟିଆ ହୋଇ ପଡ଼ିଥିବା ଆଧୁନିକା ଦରବୁଢୀ ପାଖକୁ ଆସିବାକୁ ହେଲେ ଦିନରେ ଯାଇ ବୁଲି ଆସ, ପୁଣି ଥରେ ସହାନୁଭୂତି ଦେଖେଇ ଦିଅ—ଏଠି କାହିଁକି ଏକୁଟିଆ ପଡ଼ି ରହୁଛ ମ ? ଝିଅ ଘରେ ନ ହେଲା, ଆମ ପାଖରେ ଆସି ରହୁ ନା କିଛିଦିନ ? ଯାଉ ଆସୁଛୁ ନା ମଝିରେ ମଝିରେ ? ଇତ୍ୟାଦି । ଆଜିକାଲି ସେତିକି ମଧ୍ୟ କମି ଆସିଲାଣି ! ତାଙ୍କ ମରିବା ବର୍ଷକ ଉପରେ ହେଲାଣି କି ନା, ସହାନୁଭୂତିର ପାଳି ଆଉ କେତେ ଦିନ ଚାଲିବ ?

ପଛରୁ ଖୁଡ଼ୁରୁଖାଡ଼ର ଶୁଭୁଛି । ଶିପ୍ରା ବୋଧହୁଏ ଥାକରେ ସଜା ହୋଇଥିବା ଟିଣଡ଼ବା ହେରିକା ଦରାଣ୍ଡୁଛି । ଭାଇ କମିକ୍‌ରେ ମଜ୍ଜି ଯାଇଥିବ, ସେଇ-ଲାଗି ତାକୁ ସୁବିଧା ମିଳୁଛି । ଶିଂପୁର ଆଖିରେ ପଡ଼ିଲେ ଗାଳି ଖାଇବ—ପୁଣି ଲାଗୁଛି ସେଥିରେ ? ମମ୍ମୀକୁ କହିଦେବି ? ଶିପ୍ରା ତାକୁ ହୁଏତ ଖଟେଇ ହେବ; କିନ୍ତୁ କଥା ମାନିବ । ପିଲା ଦି'ଟା ସତରେ ରତ୍ନ, ଭୋଟିକରେ ଯୋଡ଼ିଏ....ଯୋଡ଼ିଏ ନୁହନ୍ତି, ଆହୁରି ପନ୍ଦର ଜଣ ଅଛନ୍ତି, ନା, ଆହୁରି ଅନେକ ଅଛନ୍ତି, ଯେଉଁମାନେ ମୋ ବାଟ ଦେଇ ଆସି ନାହାନ୍ତି, ଆସିଲେ ମୁଁ ତାକୁ ଭଲ ପାଇବାରେ ବୁଡ଼େଇ ଦେବି ।

ଯାହା ଅପୂରଣ ରହିଗଲା, ତାହିରେ କେତେ, ଭାବିବାକୁ ଚାହେଁ ନାହିଁ, ସବୁ ଛମନ୍ତୁ ଅଯାଡ଼ ଦେବପବ ! ଶଣ୍ଡୀକୁ କଣ କମ୍ ପାଇଛ ?

ଭାବିବାକୁ ଚାହେଁ ନାହିଁ । କଣ ଅପୂରଣ, କେମିତିକା ଅପୂରଣ ? ବାପ ମାଆ କଣ ତୋର ଅଦର ଯତ୍ନ କର ନଥିଲେ ? ବାହା ଦେଇ ଶାଶୁ ଘରକୁ ପଠେଇଲାବେଳେ କାନ୍ଦ ନଥିଲେ ? ଅବଶ୍ୟ ଏତେଡ଼ନ ପାଏଁ ବରଘର ଜୁଟିଲା ନାହିଁ ବୋଲି ମଧ୍ୟ କାନ୍ଦୁଥିଲେ, ସେକଥା ଅଲଗା । ସ୍ୱାମୀ ଲୋକନାଥ ବାବୁ କଣ ତୋତେ ଭଲ ପାଉନଥିଲେ ? ତୋତେ ପଢ଼େଇ ଗ୍ରାଜୁଏଟ୍ ହେବା ପାଇଁ, ଯଥା-ସମ୍ଭବ ସମାଜସେବା କରିବା ପାଇଁ ଯଥାବଧ୍ୟ ଘର ସଜେଇବା ପାଇଁ, ବଗିଚାରେ ଫୁଲ ଲଗେଇବା ପାଇଁ ମନା କରୁଥିଲେ ? କେଜାଣି ସେ ତୋର ଜଘନକୁ କି ମନକୁ ବେଶି ଭଲ ପାଉଥିଲେ ! ଜାଣି ଭଲ କଅଣ ? ସେକ୍ସର ଗ୍ରନ୍ଥ ନ ବାଜିଲେ ତାଙ୍କ ପରି ଜଣେ ପାପନାଶନ ଡାକ୍ତିବାଲ ମରଦ ଓ ମୋ ପରି ଜଣେ (ପାଗଳୀ ନା ପାପିନୀ ?) ସ୍ତ୍ରୀ କାହିଁକି ପରସ୍ପରକୁ ଭଲ ପାଇବାକୁ ଚାହିଁବେ, ଏ ପ୍ରଶ୍ନର ଉତ୍ତର କିଏ ଦେଇ ପାରିବ ? ପସ୍ପରକୁ ପୁରୁଷ-ସ୍ତ୍ରୀ ଯୋଡ଼ା'ଙ୍କ ରୂପରେ ଭଲପାଇବା ପୁଣି କଅଣ ? ହେଲା, ସବୁ ମୋର ଦୋଷ । ଅନ୍ୟ ସ୍ତ୍ରୀମାନେ ଯାହା ପାଉନ୍ତି ମୋ ଦେଇ ହେଲା ନାହିଁ । ସେ କୋଉ ମହାକାଳ ଭଉଣୀ ମଞ୍ଜୁଳା ପାଖକୁ ଗଲେ କି ନ ଗଲେ ମୁଁ ତା'ର ଖବର ରଖିଲି ନାହିଁ । ମୁଁ ବି ଜଣେ କବି ପରି ମନେ ହେଉଥିବା ତାଙ୍କ ଜୁନିଅର୍ ଓକିଲ ସତ୍ୟାନନ୍ଦ ବାବୁଙ୍କୁ ଭଲ ପାଇବା ପରି ଲାଗିଲି, ଭଦ୍ରଲୋକଙ୍କୁ ସ୍ୱପ୍ନ ଦେଖିଲି, ତାଙ୍କୁ ମଧ୍ୟ କହିଲି, କିନ୍ତୁ ସେ ତାକୁ ହସି ଉଡ଼େଇ ଦେଲେ । ସତେକି ମୋ ମନ ସାଙ୍ଗରେ ତାଙ୍କର ସମ୍ପର୍କ ନାହିଁ ହଁ, ଯେପରି ସେକ୍ସର ପ୍ରକୋପ ବୋଧହୁଏ ଟିକିଏ ବଢ଼ି ଯାଇଥିଲା ।

ସ୍ୱାମୀଙ୍କୁ ଭଲ ପାଇବା କହନ୍ତି ନାହିଁ, କହନ୍ତି ନାହିଁ ! ମୋତେ ଦୋଷ ଦିଅ ନାହିଁ, ଭଗବାନଙ୍କୁ ପଚାର ।

କହିପାରି ମୁଁ ମୋର ପୁଅଝିଅମାନଙ୍କୁ ଅତି ଭଲ ପାଉଥିଲି; କିନ୍ତୁ ସେଥିରେ ମଧ୍ୟ ମହାମିଛ ଦଶିଯାଉଛି । ପାପୁ ଯେତେବେଳେ ଟାଇଫଏଡ଼ରେ ପଡ଼ିଥିଲା, ମରୁ ମରୁ ବଞ୍ଚିଲା, ମୁଁ ଭୂଇଁରେ ଗୋଡ଼ ଘଷୁଡ଼ୁଥିଲି । କାହିଁକି ମୋ ପାପୁ ବଞ୍ଚିବ ନାହିଁ, ଆଉ ଏଇ ବସ୍ତାଘାଟର ଅଗାବଗା ଅପରମାନେ ବଞ୍ଚିବେ, ସିନେମା ଗୀତ ବୋଲିବେ ? ବଢ଼େଇ ଲଙ୍ଗୁଡ଼ ହଲେଇବ, କାଉଟା ଛାତ ଉପରେ ନାଚିବ ? ମୁଁ ଭଗବାନଙ୍କୁ ଡାକିଲି ମୋତେ ନେଇଯାଅ, ମୋ ପୁଅକୁ ବଞ୍ଚେଇ ଦିଅ; କିନ୍ତୁ ଆଜି ସେଇଲ ବଗିମାଗି ପଣ କରିବାର ତ୍ୟାଗ କରିବାର ଅର୍ଥ ନାହିଁ । ପାପୁ ଦୂରେଇ ଯାଇଛି । ପାରୁନି ସବୁ, ସମସ୍ତେ ଦୂରେଇ ଯାଇଛନ୍ତି । ଦୁଃଖ କରିବାର

ନୁହେଁ, ସେମାନେ ବଡ଼ ହୋଇ ଯାଇଛନ୍ତି । ହେଲେ ଭଲପାଇବା କେଉଁ ଗାତରେ ପଶିଛି ? ଅଛି ବୋଲି ଜାଣିବ କେମିତି ?

କଅଣ ଗୁଡ଼ାଏ ଏଣୁ ତେଣୁ ଭାବୁଛି ! ପିଲା ଦ'ଜ ବୋର୍ ହୋଇ ଯିବେଣି ! ଯାଏ ଭିତରକୁ ଯାଏ । ଶିପ୍ରାଙ୍କ ପାଇଁ ଛଅକୋଣିଆ ଲକେଟ୍‌ଟିଏ ରଖିଛି, ନିଜ ହାତରେ ଦେବ ବୋଲି ଲୁଚେଇ କରି ରଖିଛି । ନ ହେଲେ ଟୋକୀ ଆଉଥରେ ନେଇ ପଳେଇବ, ଆରଥର ଯେମିତି ହେଲା । ତା'ଛଡ଼ା ହଂସ୍ମକୁ ମଧ୍ୟ ଚମକେଇ ଦେବ, ଦେଖେଇ ଦେବ ଯେ ଅଈ ତା'ଙ୍କୁ ମଧ୍ୟ ଭଲପାଏ, ତା' ମନକଥା ଜାଣେ । ତା' ପାଇଁ ପିତା ଚକୋଲେଟ୍ ଆଣି ରଖିଛି । ଅବଶ୍ୟ ଦହିଙ୍କୁ ବାଣ୍ଟି କରି ଦେବ, ଭଲ ନ ଲାଗିଲେ ବ' ଆଉକ ବାଦ କରିବ ।

ଘର ଭିତରେ ପଶିଗଲାରୁ ସୁରବାଲା ଯେଉଁ ଦୃଶ୍ୟ ଦେଖିଲେ, ସେଥିରେ ତାଙ୍କର ଅନ୍ତର ଉଦ୍‌ଭାସିତ ହୋଇ ଉଠିଲା । ହେବାର କଥା । ବଙ୍କାପନର ଛବି ପରି ଭାଇଭଉଣୀ ମୁହଁକୁ ମୁହଁ ଯୋଡ଼ି କମିକ୍ ପଢ଼ୁଛନ୍ତି, ଶିପ୍ରାଙ୍କ ଯାହା ବୁଝୁଛି ଭଗବାନଙ୍କୁ ଜଣା ଓ ଦୁହିଁଙ୍କ ମୁହଁରେ ଆଲୁଅ ସବୁତକ ଜ୍ୟୋତି ଢାଳି ଦେଲା ପରି ଦିଶୁଛି । ଦୁହିଁଙ୍କ ଓଠରେ ଯେଉଁ ସ୍ମିତ ହାସଟି ଲାଖି ରହିଛି, ତା'ର ତୁଳନା ନାହିଁ । ସତେକି ଦିନସାରା ଯାବତୀୟ କାରବାର ଭିତରେ ଆଇଙ୍କ ଘରେ ଏଇ କେତୋଟି ମୁହୂର୍ତ୍ତ ସବୁଠାରୁ ସାର । ଚନ୍ଦ୍ରା ନାହିଁ, ଦୀପ ନାହିଁ, ଆଈ ହୁଏତ ପାଖରେ ବସି ନାହାନ୍ତି; କିନ୍ତୁ ତାଙ୍କର ଭଲ ପାଇବା ଅଛି, ଯେଉଁଥିରେ ମମତ୍ୱର ମଳିଧୂଳି ନାହିଁ, ଖାଲି ଗୋଟାଏ ଆବେଶ, ସୁନ୍ଦର ଜୀବନର ପିଠି ଅଭିସା······

ଆଲୁଅ ଜଳୁଛି ଦେଖ । ତମମାନଙ୍କ ଘର ଠାରୁ ଆହୁରି ଝଲ ଦିଶୁଛି । କୋଉ ଦରକଣାରର ଛବି ଦେଖେଇବ ମୋତେ ? ସୁରବାଲା ଦୁଆର ବନ୍ଧରେ ଠିଆ ହୋଇ ପଡ଼ିକୁ ଅନେଇଲେ, ସହରର ଅନ୍ୟମାନଙ୍କ ଘର ଆଲୁଅକୁ ଚ୍ୟାଲେଞ୍ଜ୍ କଲା ପରି ।

ଅନ୍ତର ଉଦ୍‌ଭାସିତ ହୋଇ ଉଠୁଛି । ପୋଡ଼ାକଲା କରୁ ନାହିଁ ତ ? ନା, କିନ୍ତୁ ମନ ହେଉଛି ବ୍ରହ୍ମକୁ ଗୋଟିଏ ବନ୍ଦରୁର ଶ୍ରାବଣରେ ସାଉଦଅନ୍ତି, ଉଦଗମ କରି ଦଅନ୍ତି, ସୂର୍ଯ୍ୟାସ୍ତକୁ କିପ୍‌ କଲା ପରି । ହୁଏତ ଶିପ୍ରାଙ୍କୁ ଟାଣି ଆଣି—। ସେମିତି ହେବ ନାହିଁ । ଧର ମୁଁ ତାଙ୍କୁ କହିବ ଆଜି ରାତିରେ ମୋ ପାଖରେ ରହିଯାଅ । ଝାଉଁକୁ ଫୋନ୍ କରି ଦେବ, କାଲିଆକୁ ପଠେଇବ ନାହିଁ । ବୋଧହୁଏ ବାହାର ଆସିବାର ନାହିଁ, ସେମାନେ ମନକୁ ମନ ବୁଲି ଆସିଛନ୍ତି ଏଠିକି, ସାନ ଜାତି କରିଛି । ସ୍ନେହ ସଦନକୁ ମଧ୍ୟ ଫୋନ୍ କରିଦେବ, ମୁଁ ଅଜି ଯାଇପାରୁ ନାହିଁ ।

ଖିଆପିଆ ସରିଲା ପରେ ମୁଁ ତା'ଙ୍କୁ ମୋର ତା'ପାଖରେ ଶୁଆଇବି । ସ୍ୱାତୁ ମନା କରିବ ନାହିଁ । ପିଲାମାନେ ମନା କରିବେ ନାହିଁ । ସେଇଠୁଁ··· ।

ସେଇଠୁଁ ? ଶିପ୍ରାଙ୍କୁ ଅନ୍ତତଃ ବେଶି ନାହିଁ ନ ଥିବା ଗେହ୍ଲା କରିବି । ବିରାମ ନେଲା ପରି ସମ୍ଭବୁ ଟିକିଏ, ତା'ପରେ ଅବିରାମ ସେଇ ଚୋକାଟାକୁ । ସେଇଠୁଁ କଣ ହେବ ?

ଅଥଚ ଏବେ ସମସ୍ତ ଯାଏଁ ପାଖରେ କାହିଁକି ଛଡ଼ା ହୋଇ ରହିଛନ୍ତି, ସେଥିରେ ପିଲାଏ ବିଚଳିତ ହେଲାପରି ଦିଶୁ ନ ଥିଲେ । ଅନ୍ୟମାନେ ମମ୍‌ମୀ ପରି କୁହନ୍ତି ସେ ଚେଷ୍ଟା ଉଠିବାକୁ ପଡ଼ିବ ! ସେମାନେ ପୂର୍ବପରି କମିକ୍‌ସରେ ମୁହଁ ମାଡ଼ି ପଢୁଥାଆନ୍ତି, ଆଉ ଶିପ୍ରା ମଝିରେ ମଝିରେ ତା'ର ମୁଣ୍ଡବାଳ ଉଡ଼ିଯାଉଛି ବୋଲି (ଉଡ଼ିବ କାହିଁକି ମ) ସଜାଡ଼ି ଦେଉଥାଏ । ଶିପ୍ରା ଗୋଟାଏ ଢଙ୍ଗ କରୁଛି, ପ୍ରକୃତରେ ତା'ର ଧ୍ୟାନ ଭଙ୍ଗ ଯାଇଛି, ଆଉ ଆଡ଼କୁ ମନ ପଳଉଛି, ସେ ମୋ ଆଡ଼କୁ କଣେଇ କଣେଇ ଅନଉଛି···

ତଥାପି ସ୍ୱରବାଳା କିଛି ପଚାରି ପାରିଲେ ନାହିଁ । କାହିଁକିନା ଧୀରେ ଧୀରେ ତାଙ୍କ ପ୍ରଶ୍ନର ଉତ୍ତର ମିଳିଗଲା ପରି ମନେ ହେଲା । ସେମାନେ ମନା କରିବେ ନାହିଁ । ପ୍ରଥମେ ଟିକିଏ ଆଶ୍ଚର୍ଯ୍ୟ ହେଲାପରି ଅନେଇବେ, ତା ପରେ ସ୍ୱୀକାର କରି ନେବେ । ସଂପୁ ହୁଏତ ହୋମ୍‌ୱାର୍କ କଥା ଉଠେଇବ, ମମ୍‌ମୀଠାରୁ ବୁଝିନିଅ ବୋଲି କହିବ । ତା'ପରେ ମାନି ନେବ । 'ବାସ୍ ସେଆଡ଼ୁ ଆଉ କିଛି ମିଳିବ ନାହିଁ । ଆଗ୍ରହର ସାମାନ୍ୟତମ ସ୍ଫୁଲିଙ୍ଗ, ଟ୍ରେଟିଆ ମୋଟିଆ ଭାଗଟିଏ, ଭଲ ପାଇବାର ଅଙ୍ଗୀକାର ··

ଶିପ୍ରାଙ୍କୁ ଗୋଡସାରି ବସି ଚୁମା ଦେଲେ ମଧ୍ୟ ସେଆଡ଼ୁ କିଛି ମିଳିବ ନାହିଁ ।

ମୁଁ ଜାଣେ । ମୁଁ ଜାଣେ ଯେ, ତମେ ସବୁ ଗୋଟିଏ ଗୋଟିଏ ଭଗବାନ୍ । ନୈସର୍ଗିକ, ନିଷ୍ଠୁର । ଶେଷ ବ୍ୟାକୁଳତାଟିକୁ ଟାଣି ଆଣିବ, ହେଲେ ଧରିବାକୁ ଦେବନାହିଁ । ମୁଁ କଣ ଜାଣେ ନାହିଁ ? ମୁଁ କ'ଣ ପିଲା ନ ଥିଲି ?··· ହିଂସ୍ର ଲୋ, ଆଲୋ ମୋ ସୁନାଟା, ଶୁଣିଯା'ମ ଟିକିଏ ? ଆଲୋ ମୋ ମାଳିଆଟା— । ମାଗୁଣିଆ ମାଆର ଡାକ ଶୁଭିଯାଉଛି । ସେ କେବେଠୁଁ ଆମ ଘରେ ଆସି ରହିଥିଲା, ତା'ର ମାଗୁଣିଆ କିଏ, କୁଆଡ଼େ ମଲାଣି ଗଲାଣି, ସେ ବୟସରେ କାହାଠୁଁ ବୁଝିବାର କାରଣ ନଥିଲା । କେବଳ ଏତିକି ଜାଣିଥିଲି ଯେ ତା ନାଆଁ ମାଗୁଣିଆ ମାଆ, ସବୁଦିନେ ଏଇଠି ଅଛି । ତାର କାମ ହେଉଛି ଦହି ମୁହଁବ, ଆଉ ଲହୁଣି ଟିକିଏ ବାହାରିଲେ ଚେଲା ବାନ୍ଧିଲେ ମୋତେ ଡାକ ପଡ଼ିବ । କାହିଁକିନା ମୁଁ ସଜ

ଲହୁଣିକୁ ରଙ୍ଗ ବୋଲି ତା'ର ଧାରଣା । ଖାଇ ମାଗିଲେ ତାକୁ ଦିଅ ନାହିଁ, ମୋର ଗୁଣ୍ଡି ଦେବାପାଇଁ ଶୁଣ୍ଢି ବସିଥିବ । ଅକାଳେ ସକାଳେ ଡ଼ାକ ଛାଡ଼ୁଥିବ, ମୋର ସାଙ୍ଗସିଲ ଥାଆନ୍ତି, ସ୍କୁଲବେଲ ହୋଇଯାଉ, ଏଣେ ବାପା ପଛରୁ ଥାଆନ୍ତି, ବୋଉ ପାଟି କରୁ ଥାଉ, ତା'ର କିଛି ଯାଏ ଆସେ ନାହିଁ । ଯେହେତୁ ସେ ମାଗୁଣିଆ ମାଆ, ସମସ୍ତେ ଜାଣନ୍ତି ତା'ର କେହି ନାହାନ୍ତି, ମୁଁ ତାର ସବୁ, ଖାଲି ମୋର ପାଟିରେ ଲହୁଣି ଟିକିଏ ଟିକିଏ ଭରି ଦେଉଥିଲେ ସ୍ୱର୍ଗକୁ ଯିବ, କିନ୍ତୁ ତା'ର ଡ଼ାକ ଶୁଣିବାକୁ ମୋର ସମୟ ନ ଥିଲା । ହୁଏତ ଥରେ ଅଧେ ଶୁଣି ତା'କୁ ଆହୁରି ହନ୍ତସନ୍ତ କରିଛୁ, "ଏଗୁଡ଼ା ବାସି ଲହୁଣି ବୋଲି ତା' ଉପରକୁ ଫିଙ୍ଗି ଦେଇଛୁ; କିନ୍ତୁ ତା' ମୁହଁକୁ ଲାଜ ନାହିଁ, ଆର ଥରକୁ ପୁଣି ମୋତେ ଖୋଜୁଛି, ଇଏ ସଜ ଲହୁଣି ମ, ତୋତେ ମୋ ରାଣ ବୋଲି ନେହୁରା ହୋଇଛି । ମଲା ଯାଏଁ ଖୋଜୁଛି··

କେତେ ଆଶା କରିଥିଲି ମୋ ବାହାଘର ଦେଖିବ ବୋଲି । ହେଲେ ଦେଖି ପାରିଲା ନାହିଁ ବୁଢ଼ୀ, ତନକ ଜରରେ ମରିଗଲା । କିଏ କାନ୍ଦିଥିଲେ ମୋର ମନେ ନାହିଁ; କିନ୍ତୁ ମୋ ଆଖିରୁ ଲୁହ ବାହାରି ନଥିଲା ।

ସୁରବାଳା ଆଲୁଅଘରୁ ଲେଉଟି ଆସିଲେ । ଯଥା ସମୟରେ ବଳିଆ ଆସି ପିଲାଙ୍କୁ ନେଇଗଲା । ତା'ର କିଛି ସମୟ ପରେ ବର୍ଦ୍ଧନର ଟେକ୍ସି ଟଂର୍ ଟଙ୍ଗ୍ କରି ପହଞ୍ଚିଗଲା, "ମାମା" ବାବୁଆଣୀ ସ୍ନେହସଦନକୁ ଯିବେ ।

ଅଜାକାର ଭିକାଟ୍‌ରେ କିଞ୍ଚିତ ପ୍ରଭେଦ ଥିଲା । ସୁରବାଳା ଶାଢ଼ୀ ତଳେ ଘୋଡ଼େଇ ଗୋଟିଏ ପୁରୁଣା ପୋକଖିଆ ଶାଲ ନେଇ ଯାଉଥିଲେ । ମାଗୁଣିଆ ମାଆର ଶାଲ ତା'ର ଇଚ୍ଛା ପୂରଣ କରିବା ପାଇଁ ବାପା ବୋଉ ବାହାଘର ବେଳେ ବାକ୍ସରେ ଗୁଣ୍ଡି ଦେଇ ଥିଲେ । ଆଜି ସୁରବାଳା ତାକୁ ଉଦ୍ଧାର କରି ଆଣିଲେ; କହିଲେ ଭଗବାନଙ୍କ ସାଙ୍ଗରେ କଂପିଟିସନ୍ କରିବା ମୋର ଅଭ୍ୟାସ ନୁହେଁ । ମୁଁ ସ୍ୱା'କୁ ସଙ୍ଗୀତାକୁ ଦେଇ ଆସିବି, ହିଁ ଅଳୁ ଆଉ ମୋତେ ଶୀତ କରିବ ନାହିଁ ।



# ପ୍ରଥମ ପୁରୁଷ

ଇଏ ପୁରୁଷମାନଙ୍କ ଗପ । ନାରୀମାନଙ୍କର ଏଥିରେ ଦଖଲ ଦେବା ଉଚିତ ନୁହେଁ । ଆମ ଜୀବନକୁ ଆଇନ୍ ଅନୁଯାୟୀ ଅଥବା ବେଆଇନ୍‌ରେ ଦଖଲ କରିବାକୁ ଯା'ଇ ଯେଉଁ ଯଶ ଲଭିଲ ସେଇ କଣ ଯଥେଷ୍ଟ ନୁହେଁ ଯେ ଆମ ଗପଗୀତକୁ ହାତ ବଢ଼େଇବ ? ଆମର ନିଜର ବୋଲି କଣ କିଛି ନାହିଁ ?

ଯାହାହେଉ ମୁଁ ପରୁଆ କରେ ନାହିଁ । ଠିକେ ଠିକେ ଲେଖୁଛି । ସେ ଅଦୂର ଅତୀତରେ ଆମେ ତିନିଜଣ ଦରବୁଢ଼ା ପୁରୁଷ ଗୋଟିଏ ରୁମ୍‌ରେ ପାଖାପାଖି ହୋଇ ଶୋଇଥିଲୁ । ସମସ୍ତ ସନ୍ଧ୍ୟା, କିନ୍ତୁ ଅଧରାତି ପରି ମନେ ହେଉଥାଏ । କାରଣ ଦିନ ସାରା ମେଘ ଘୋଡ଼େଇ ବର୍ଷା ହେଉଥିଲା, ରାତି ହେବାରୁ ଅନ୍ଧାର ଘନେଇ ଯାଇଛି । ପବନର ସୁଁ ସାଁ ବଢ଼ି ଚାଲିଛି । ସ୍ଥାନ ଗୌହାଟୀର ଏକତମ ପାହାଡ଼ ଉପରେ ଗୋଟିଏ ବଙ୍ଗଳା, ଚିକନ ହଜାରିକାର ଘର । ହଜାରିକା ସ୍ମୃତିକୁ ଅନେଇ ମନକୁ ମନ ହସୁଥାଏ, ବେଳେବେଳେ ଭୁରୁ କୁଂଚଉଥାଏ । ସତେକି ସେ ବୁଢ଼ୀଆଣୀର ଅସତ୍ ଉଦ୍ୟମକୁ, ହ୍ୟା'ଲୁଡ଼େଶି ହେଲା ନାହିଁ, ପା'ରିବ ନାହିଁ ବୋଲି ହସୁଛି ଅଥଚ ବିସ୍ମିତ (ବିଚଳିତ ହୋଇ ନ ଥିବ ବୋଲି ମୋର ବିଶ୍ୱାସ) ସଫଳକାମ ହୋଇ ପୋଲିକୁ ମାଡ଼ି ବସିଲାରୁ ତା' ଦେହରେ ଯାଉ ନାହିଁ । କଥାରେ କହିଲି ସିନା, ତାର ସ୍ୱଗତପଣିଆର ମତଲବ ଭିନ୍ନ । ମୁଁ ଜାଣିଛି, ପାଖରେ ଶୋଇଥିବା ଆରକ ବନ୍ଧୁ ଧରଣୀ ପଟ୍ଟନାଏକ ଜାଣିଛି, ହୁଏତ ଆସାମ ସରକାର, ଅନ୍ତତଃ ସରକାରଙ୍କ ଗୋଇନ୍ଦା ବିଭାଗ ଜାଣିଥିବ । ସେ ଚିଟିକା ମୁହଁା ହଜାରିକା, ମୁଣ୍ଡ ବାଳ ଅଧେ ପାଚିଗଲାଣି, ଗୋଲେଇ ବ୍ରହ୍ମାଣୀରେ ଗେ'ଳିଆ ପାଣି ଏବଂ ସରକାରଙ୍କ ଜଣେକି ବଡ଼ ମହିଆ ଅଫିସର୍, ସେ ଭିତରେ ଭିତରେ ଆଉ ଜଣେ । ମୁଭ୍‌ମେଣ୍ଟ ବା'ଲା । ସେ ଅବଶ୍ୟ ପ୍ରକାଶ୍ୟରେ ପତାକା ଧରି ନାହିଁ; କିନ୍ତୁ ଅଡ଼ୁଆଲରେ ପାଟି କରିଛି । କେବଳ ସେତିକି ନୁହେଁ, ସେ କହିଥିଲା ଯେ ସେ ଦିନେ ଲୁଚି ଲୁଚି ରାସ୍ତାର ବିଦ-ସ୍ତମ୍ଭ ଉପରକୁ ଢେଲା ଫିଙ୍ଗିଥିଲା, ଯେତେବେଳେ ସରକାର ଆନ୍ଦୋଳନକାରୀଙ୍କ ବ୍ଲାକ୍ ଆଉଟ୍ ଆହ୍ୱାନକୁ ହେୟଜ୍ଞାନ କରି ଆଲୁଅ ଜଳେଇଲେ ଓ ଜଳେଇ

ରଖିଲେ । କହିଲି—ମୁଁ ଦେଖିଲି ଦେଖିଲି, ଶେଷକୁ ବରଦାସ୍ତ କରି ପାରିଲି ନାହିଁ । ସ୍ତ୍ରୀଜାତି ଗୋଟାଏ ବାଣ । ମଣିଷ ଏଥିରେ ହସିବ ନା କାନ୍ଦିବ ! ତେବେ ତା'ର ଚରିତ୍ରର ଏକ ଦିଗଟା । ଆମ ବନ୍ଧୁତା ସାଙ୍ଗରେ, ମାନେ କଲିକତାରେ ପାଠ ପଢ଼ିବା ବେଳେ ଶାରଦାମଣି ମେସ୍‌ରୁ ଗଢ଼ି ଉଠିଥିବା ବ୍ୟକ୍ତିଗତ ସ୍ୱରୂପାପ୍ତିତ ଘନିଷ୍ଠତା ସାଙ୍ଗରେ ମୋଟେ ଖାପ୍ ଖାଉ ନଥିଲା । ତେଣୁ ଆମେ ତାକୁ ରାଜନୀତି ବିଷୟରେ କିଛି ପଚାରି ଉତ୍ତକ୍ତ ନ କରିବା ପାଇଁ ଚେଷ୍ଟା କରୁଥିଲୁ । ତା'ର ଏମିତିକା ଢଙ୍ଗ ଦେଖିଲାବେଳେ ଭାବିବାକୁ ଇଚ୍ଛା ହେଉଥିଲା ଯେ ସେ ମୁଭ୍‌ମେଣ୍ଟ ନୁହେଁ, ଖାଲି ବୁଢ଼ୀଆଣିର କାରବାରକୁ ନେଇ ହସୁଛି, ଭଲକି ଭଲ ମୁହଁ କରୁଛି ।

ଧରଣୀ ପଚାଶକୁ ଡିଙ୍ଗି ମାରୁଥିଲା । ତା'ବୋଲି ସେ ନିଘୋଡ଼ ନିଦରେ ଶୋଇ ଯାଉଥିଲା, ତା' ନୁହେଁ । ଦରକାର ହେଲେ ସେ ଚଟ୍‌କିନି ଉଠି ପଡ଼ିବ, ପୁଣି ଶୋଇ ଯିବ । ସେ କହେ ଯେ ଇଏ ହେଉଛି ତା'ର ସଯତ୍ନ ରକ୍ଷିତ ସ୍ୱାସ୍ଥ୍ୟର ଲକ୍ଷଣ । ଅବଶ୍ୟ ତାର ମୁଣ୍ଡ ବାଳ ଗୋଟାଏ ହେଲେ ପାଚି ନାହିଁ । ମଧ୍ୟମ ସାଇଜ୍‌ର ଦାନ୍ତ ଦି'ପାଟି ମୁକ୍ତା ପରି ଝଟକୁଛି । ଦାବି କରେ ଯେ ତା'ର ପଢ଼ିଲା ବେଳେ ଚଷମା ଅନାବଶ୍ୟକ । ତେବେ ସେ ବେଳେବେଳେ ପିନ୍ଧିବା ପାଇଁ ପିନ୍ଧେ, ପ୍ରବୀଣତାର ଫେସନ କରେ । ମୋଟ ଉପରେ କେହି କହିବ ନାହିଁ ଯେ ତାକୁ ଅଣୀ ପଞ୍ଚାଶୀ ଧରିଲଣି । ସେମିତି କଥାକୁ କିଏ କହିବ ଯେ ସେ ତିନତିନଟା ବାହା ହେଇଛି, ପ୍ରତି ସ୍ତ୍ରୀର ମଲା ବେଳେ କାନ୍ଦିଛି ପିଲାଙ୍କ ପରି ? ଦେବଦାସ ପରି ମଦ ବୋତଲ ଖୋଲିଛି, ମୋତେ ଗୀତା ପଢ଼ିବାକୁ ବାଧ୍ୟ କରିଛି ( ଦ୍ୱିତୀୟ ଥର କହିଲା ମୁଁ ହିମାଳୟ ଯିବି, ମୋ ସାଙ୍ଗରେ ଚାଲ୍ ), ଏମିତି ଉନସ୍ୱରମାସ ବନ୍ଧୁମାନଙ୍କୁ ହକ୍‌ଦାର କରିଛି ? କିଏ କହିବ ଯେ ତାର ଚଉଡ଼ା ଗ୍ରୀବାଟା ଖାଲୁଆ, ମଝିରୁ ଯୁକାଏ ଚର୍ଚ୍ଚା ହେଲା ପରି ଦିଶେ ? ସ୍ୱାସ୍ଥ୍ୟବାନ୍‌ର ଯେତେକ ମାନସିକ ଓ ଶାରୀରିକ ଅବଗୁଣ ପୁରୁଷ ବନ୍ଧୁମାନଙ୍କ ଛଡ଼ା ଆଉ କିଏ ଜାଣି ପାରିବ ? ତେବେ ଏମିତିକା ଜନ୍ମଟଣା ପାଗ, ତିନି ବନ୍ଧୁଙ୍କ ମେଳ, ପରଦା ପଛକୁ ନାଷ୍ଟି ପରିବାର ନାହାନ୍ତି, ଯେହେତୁ ହଜାରିକାର ପିଲାପିଲି ଗାଆଁରେ·· ତଥାପି ଲୋକଟା ଦିବ୍ୟ ଶୋଇ ଯାଉଛି, କିଛି ରସରସିଆ ଗପ ଯୋଡ଼ିବାର ତାଡ଼ନା ଅନୁଭବ କରୁନାହିଁ ? ଭାବିଲି ଯେ ଅସଲ କଥା ହେଉଛି ସେ ପ୍ରକୃତରେ ବୁଢ଼ା ହୋଇ ଆସିଲଣି । ଆଉ ତା'ର ଆମ ଉପରୁ ମଧ୍ୟ ଆସ୍ଥା ତୁଲିଗଲଣି । ଭାବୁଛି ଆମେ ବି ସେମିତିକା, ରସ ନେବାର ଦେବାର ଉପାଦାନ ଆମ ପାଖରେ ନାହିଁ । ହଜାରିକାକୁ ତ ସହଜେ ଆସାମ ପ୍ରେମ ମଡ଼ାଉଛି । ଆଉ ମୁଁ ହେଉଛି ଲୁହା ସିମେଣ୍ଟର ମଣିଷ । ମୂର୍ଖ ! ଆମର ବନ୍ଧୁତ୍ୱ କଣ ଗୋଟାଏ ସାରସତ୍ତ୍ୱହୀନ ସୂତ୍ର, ଆମର ପୁରୁଷ ପଣ ଗୋଟାଏ ଲିଙ୍ଗବାଚକ ସଂଜ୍ଞା, ଆମର··· ?

ମୁଁ କାମିକା ଲୋକ । ସୁଯୋଗ ପାଇଲେ ଛାଡ଼ିବାର ନୁହେଁ, ଏଇ ହେଉଛି ମୋର ନୀତି । ମୋର ସଫଳତାର ଗୁପ୍ତକାଠି । ଏତେଦିନ ପରେ ଆମେ ତିନିବନ୍ଧୁ ଏକାଠି ହୋଇଛୁ, ଏଇ ଚମତ୍କାର ଘଟଣାକୁ ନେଇ କିଛି ଗୋଟାଏ କରିହିବ ନାହିଁ ? ଧରଣୀ ସାଙ୍ଗରେ ଅବଶ୍ୟ ମୋର ପ୍ରାୟ ଦେଖା ହୁଏ, କିନ୍ତୁ ଏଇ ଆସାମିଆ ସାଙ୍ଗରେ ଦେଖା ହେବାର ଚାନ୍ସ କମ୍ । ସେଇଠୁଁ ମନକୁ ଆସିଲା ଯେ କଣ୍ଟ୍ରାକ୍ଟଟା ମିଳିଗଲେ ଚାନ୍ସ ବଢ଼ିଯିବ, କାମ ତଦାରଖ କରିବା ପାଇଁ ପ୍ରାୟ ଆସିବାକୁ ପଡ଼ିବ ଏଠିକି; କିନ୍ତୁ ବୋକା'ର ଧରଣୀ କଣ ସବୁବେଳେ ମୋ ସାଙ୍ଗରେ ଆସିବାକୁ ମାଗିବ ? ପୁଅର ରୋଜଗାରରେ ଚଳୁଛି, ହେଲେ ଢଙ୍ଗ କରିବ ଯେ ତା'ର ବହୁତ କାମ, ସମ୍ପାଦକମାନେ ରଖେଇ ଥୋଇ ଦେଉ ନାହାନ୍ତି । କାରଣ ଭିନ୍ନ, ସେ ତା'ର ଦୁଃସ୍ଥ ସ୍ତ୍ରୀକୁ କୁଣ୍ଢେଇ ଧରି ଶୋଇବାକୁ ଚାହେଁ, ମାଇଚିଆ କୋଉଠିକାର ।

ହଜାରିକା ସେମିତି ଗ୍ଲାସକୁ ଅନେଇଛି, କଣ ସାଉଁଳଉଛି ।

ଧରଣୀ ସେମିତି ଘୁଙ୍ଗୁଡ଼ି ମାରୁଛି, ମୁହୂର୍ତ୍ତେ ରହିଗଲା ପରେ ପୁଣି ଆରମ୍ଭ କରୁଛି ।

କ୍ରମଶଃ, କ୍ରମଶଃ ନୁହେଁ ହଠାତ୍, ମୋର ସେମାନଙ୍କ ପ୍ରତି ହିଂସା ହେଲା । ବନ୍ଧୁମାନଙ୍କ ପ୍ରତି ଏଭଳି ମନେ ଭାବ ଗଢ଼ି ଉଠେ ନାହିଁ, ହଠାତ୍ ଆସେ । ଆସେ ଚାଲିଯାଏ; କିନ୍ତୁ ଆସିଲାକ୍ଷଣି ତାକୁ ମୁଠେଇ ଧରିବାକୁ ଇଚ୍ଛା ହୁଏ । ସତେକି ଏଇ ହେଉଛି ବନ୍ଧୁଭାବର ତଥା ପୁରୁଷ ପଣର ଏକ ଦୁର୍ଲଭ ଅଭିନବ ତେଜ, ତ ଠ । ଏବଂ ବୁଢ଼ା ହେବାକୁ ଡେରି ଅଛି, ତା'ର ପ୍ରମାଣ ।

ହିଂସା ହେଲା । ଭଲ ଲାଗିଲା । ଭାବିଲି ଆହୁରି ଭଲ ଲାଗିବ ଯଦି ଏଇ ବର୍ଷାପବନ ଆହୁରି ବଢ଼ିଯିବ, ସାତମତ ଝଡ଼ ଆସିବ । ପବନ ମାଡ଼ ଛୁଟିବ, ଘଣ୍ଟାକୁ ଶହେ କିଲୋମିଟର । ଗଛମାନ କଡ଼ କଡ଼ ହୋଇ ଭାଙ୍ଗି ପଡ଼ିବ । ବିଜୁଳି ଘର ଭିତରକୁ ପଶି ଆସିବ । ମୋଟ ଉପରେ ଗୌହାଟୀର ଏଇ ବଙ୍ଗଳା ଖଣ୍ଡିକ ଦୋଳୁକି ଉଠିବ, ଆଉ ମୁଁ ବି ତା ସାଙ୍ଗରେ ନାଚି ଉଠିବି । ପୁରୁଷର ତାଣ୍ଡବ ଏବଂ ସୁଖ କରୁଥିବା ଏଇ ଦି'ଟା ମଡ଼ାମାନଙ୍କୁ ଆଙ୍ଗୁଳି ଦେଖେଇ ହସିବି — ମର ହ୍ୟାପ, ସ୍ୱପ୍ନ ଦେଖ, ଘୁଙ୍ଗୁଡ଼ି ମାର···

ବିଜନ ହଜାରିକା, ତୋର ସୁଖସ୍ୱପ୍ନକୁ ଧିକ୍ । ମନେ ମନେ ଆନ୍ଦୋଳନରେ ମିଶିଯାଇଛୁ, କେବେ ଅରେ ବଡଖୁଣ୍ଟ ଉପରକୁ ଗୋଟାଏ ଟେକା ଫିଙ୍ଗିଥିଲୁ ବୋଲି ବୀର ବନିଯାଇଛୁ ନା କଅଣ ? ଯେତେହେଲେ ତୁ ସାମାନ୍ୟ ସରକାରୀ

ଚାକିରିଟା, ଚାକିରିର ମୋହ ଛାଡ଼ି ପାରିବୁ ନାହିଁ, ଦରମା ଗଣ୍ଡାଏ ଘରକୁ ନ ଆସିଲେ ତୋ ପିଲାଛୁଆ ଉପାସରେ ରହିବେ । ତୋର ତ ଗୁଡ଼ାଏ ପିଲା—ଯିବୁ କୁଆଡ଼େ ? ଛେଳୁ, ଅସଲ ଛେଳୁ । ମୁଁ କଣ ଜାଣିନାହିଁ ତୋତେ ? କଲିକତା ମେସ୍ ବେଳୁ ଜାଣିଛି । ଆମ ସାଙ୍ଗରେ ସୋନାଗାଛି ଯିବା ପାଇଁ ହମହମ ହେଉ, ଅଥଚ ମାଈକିନିଆଟିଏ ପାଖରେ ପାଇଲେ ତଣ୍ଟି ଶୁଖିଯିବ, ପାଟିରୁ କଥା ବାହାରିବ ନାହିଁ । ଏଣେ ଝିଅବେଳକଟାରେ କବାଟ ବନ୍ଦକରି ଏକୁଟିଆ କଣ କରୁଥାଉ, ଥରେ ଧରା ପଡ଼ି ଗଲାରୁ ତୁ କହେ କହୁଛୁ, ମୋ'ର କଣ ମନେ ନାହିଁ ? ଯାଉ, ପୁରୁଷ ହୋଇ ପାରିଲୁ ନାହିଁ, ତୁ ପୁଣି ସୁଖ କରିବୁ ? କେଉଁ ସାହସରେ ?

ଧରଣୀ ପଟ୍ଟନାୟକ, ତୋର ସୁଖ କଳ୍ପନାକୁ ଧିକ୍ । ଭାବୁଛୁ ତୁ ସବୁଦିନେ ଟୋକା ହୋଇଥିବୁ, ଚେହେରା ଦେଖେଇ ବୁଲିବୁ ? ଭାବୁଛୁ ତୁ ତୋର ପ୍ରତ୍ୟେକ ସ୍ତ୍ରୀ ସାଙ୍ଗରେ ଯାହା କିଛି କରିଛୁ, ସେଇ ହେଉଛି ପ୍ରେମ । ଆଉ କେଉଁ ଖବର-କାଗଜ ପାଇଁ ବସେଇ ଛନ୍ଦେଇ ଦି'ପଦ ଲେଖିଦେଲେ ସେଇ ହେଉଛି ସାହିତ୍ୟ । ଅବଶ୍ୟ ଗୋଟାଏ ସ୍ମରଣ ଶକ୍ତି ପାଇଛୁ, କଲିକତା ବେଳୁ ନୁହେଁ ତା' ପୂର୍ବରୁ ଜାଣିଛି ତୁ କେମିତି କିଛି ନ ବୁଝି ବହିପଢ଼ା ପାଠ ଗଡ଼ ଗଡ଼ କରି ଗାଇଯାଉ । ସେଇଥିପାଇଁ ତୋ ଲେଖାରେ ଗଦାଗଦା ଗୀତ, ଶ୍ଲୋକ, ସଂସ୍କୃତର କୋଟେସନ୍ । ସ୍ୱଳ୍ପବୁଦ୍ଧି ସମ୍ପାଦକମାନେ ସେଇସବୁକୁ ଛାପିଦିଅନ୍ତି । କେହି ଭାବିପାରନ୍ତି ନାହିଁ ଯେ ତୁ ଥାର୍ଡ୍ କ୍ଲାସ ଏମ୍. ଏ, ନିହାତି ଗଧ, ନିହାତି ଅଳସୁଆ, ମାଇଚିଆ । ତଥାପି ତୁ ସବୁ ପାଇଗଲା ପରି ଆରାମରେ ଶୋଇଯିବୁ ? ସୁଖ କରିବୁ ? କେଉଁ ଅଧିକାରରେ ?

ସାହାହେଉ ଧରଣୀ ପଟ୍ଟନାୟକ ଓ ବିଜନ ହଜାରିକା ମୋର ଦି'ପାଖରେ ଶୋଇ ରହି ଆପଣା ହିସାବରେ ସୁଖ କରୁଥିଲେ । ନିଷ୍କ୍ରିୟ ଅଣସୁଖ । ଏହି ସମୟରେ ଭୂମିକମ୍ପ ହେଲା ।

ଭୂମିକମ୍ପ ହେଲା ଭଲ ହେଲା । ମୁଁ ଚାହୁଁଥିଲି ଝଡ଼, ହେଲା ଏବେ ଭୂମିକମ୍ପ ଆସାମ ଉପତ୍ୟକାର ମାମୁଲି ଘଟଣା; କିନ୍ତୁ ମୋତେ ଚଢ଼ମାଡ଼ିଲା ଯେ ସେଥିରେ ଟିକିଏ ବୋଲି ଶକ୍ତି ନ ଥିଲା । ନା ପ୍ରଭୁତ୍ୱ ନା ଆତ୍ମବିଶ୍ୱାସ । ମନେ ହେଲା କେଉଁ ଗୋଟାଏ ବଗୁଲିଆ ଟୋକା ଖଟତଳେ ପଶିଛି, ଆମକୁ ଅଣେଇ ଖସେଇ ଦେବାକୁ ଚାହୁଁଛି । ଏଥିରେ କାହାରିକି କିଛି ହେବ ? ଧରଣୀର ଘୁଂଘୁଡ଼ି ସାମାନ୍ୟ ସ୍ୱର ବଦଳେଇଲା । ହଜାରିକାର ପାଟିରୁ କିଛି ଗୋଟାଏ ଶବ୍ଦ ବାହାରିଲା, ହୁରୁଡ଼େଇ ଦେଲା ପରି, ଯାହାକୁ ବୁଝିହେଲା ନାହିଁ । ଅନୁମାନ କରାଯାଇ ପାରେ ଯେ ସେ ଏଭଳି ସାମାନ୍ୟ ପ୍ରତିରୋଧ ( ଗୁଳିମାଡ଼ ବଦଳରେ ଲାଠିଉଞ୍ଚା ) ବୋଲି

କହୁଛୁ; କିନ୍ତୁ ଆମ ଶସ୍ତ୍ନ ଅବସ୍ଥାରେ ଗୋଟାଏ ପରିବର୍ତ୍ତନ ଘଟିଲି, ଯାହାକୁ ଅସ୍ୱୀକାର କରି ହେବ ନାହିଁ । ସେତିକ ନ ହୋଇଥିଲେ ମୋ ଗପ ସିଧା ବାଟରେ ଯାଇଥାନ୍ତା, ମୁଁ ଏତେ ହଇରାଣରେ ପଡ଼ନ୍ତି ନାହିଁ ।

କଥା ହେଲି କଅଣ କି ଧରଣୀ ତାହାର ଡାହାଣ ହାତ ମୋ ଉପରେ ଆଣି ପକେଇଲି । ପକେଇ ରଖିଲି । ସତେ କି ଭୂମିକମ୍ପ ହେଉ କି ପୃଥ୍ୱୀ କାମୁଡ଼ୁ, ଏଥର ଆଉ କିଛି ଅସୁବିଧା ନାହିଁ, ସୁଖ ନିଦ୍ରାରେ ଆଉ ଲାଗିବ ନାହିଁ ଏବଂ ଆପଣା ଛାଏଁ ମାନେ ମୋର ଇଚ୍ଛା କିମ୍ବା ଉଦ୍ଦେଶ୍ୟର ବାହାରେ, ମୋର ଡାହାଣ ହାତ ମଧ୍ୟ ହଜାରିକାର ଦେହକୁ ଖୋଜିଲି । ତା'ର ହାତ ପାପୁଲିକୁ ପାଇଲାକ୍ଷୁ ମୁଠେଇ ଧରିଲି ।

ହଁ, ଆପଣ ଠିକ୍ ଅନୁମାନ କରିଛନ୍ତି । ମୋର ସ୍ୱଭାବ ଚରିତ୍ର କାହାରିକୁ ଅଜଣା ନୁହେଁ । ମୁଠେଇ ଧରିଲି ପରେ ମୋ ହାତ କୋହଳ ହୋଇଗଲା, ମୁଁ ନିଜକୁ ସଜାଡ଼ି ନେଲି; କିନ୍ତୁ ଧରଣୀର ହାତ ସେମିତି ପଡ଼ିରହିଲା । ମୁହୂର୍ତ୍ତକୁ ମୁହୂର୍ତ୍ତ ବଢ଼ିବାକୁ ଲାଗିଲା ।

ବାହାରେ ପବନ ବର୍ଷା ଲାଗି ରହିଥିଲା । ଯେମିତିକି ତା'ର ଏ ସବୁଥିରେ କିଛି ଯାଏ ଆସେ ନାହିଁ । ଘର ଭାଙ୍ଗୁ, ଛୁଡ଼ା ହୋଇଯାଉ, ଅବା ଦିନଟା ପୁରୁଷ ଅକାରଣରେ ପରସ୍ପର ଦେହକୁ ଛୁଅଁନ୍ତୁ, ସେ ତାର ହୋମ୍ ଓ୍ୱାର୍କ କରି ଚାଲିଥିବ । ଆଜିକାଲିର ସନ୍ଧ୍ୟାରେ ଗୌହାଟୀରେ ତାକୁ ଏଇଆ କରିବା ପାଇଁ କୁହା ହୋଇଛି ।

ଆପତ୍ତି ନାହିଁ, କିନ୍ତୁ ମୋର ବିଶ୍ୱାସ ହେଲା ନାହିଁ । ମୋର ମନେ ହେଲା ଯେ ସେ ପ୍ରିୟପାତ୍ର ନିର୍ବିକାର ନୁହେଁ । କାହିଁକିନା ମୋର ସାମ୍ନାରେ ଥିବ କାଚ ଝରକାର ପରଦା ପବନ ଅପେକ୍ଷା ବେଶି ଉଡ଼ିଚାଲିଛି । ଉଡ଼ୁଛି ଓ ବନ୍ଦ କାଚ ପଛକୁ ଥିବା ପୃଥିବୀକୁ, ପୃଥିବୀର ଚଳନ୍ତା ଜୀଅନ୍ତା ଆଲୁଅମାନଙ୍କୁ ଦେଖେଇ ଦେଉଛି । କଅଣ ଦେଖଉଛି ମୋତେ ? କାହିଁକି ଦେଖଉଛି ? ସେ ଯାହାହେଉ ପଛେ, ମୁଁ ଧରଣୀର ହାତ ମୋ ଦେହ ଉପରୁ ଉଠେଇବି ନାହିଁ । ମୋର ତା ଉପରେ ଦୟା ହେଲା । ଆଉ ଯେ ପାଗଳା ହଜାରିକା ଉପରେ ମଧ୍ୟ ଦୟା ଆସିଲା, ଭାବିଲି ତା ହାତକୁ ପୁଣି ଥରେ ଛୁଇଁବି, ମୁଠେଇ ଧରିବି । ଆଶ୍ୱାସନା ଦେବି । ସେମାନେ ମୋ ପରି ନୁହନ୍ତି, ସମ୍ପୂର୍ଣ୍ଣ ପୁରୁଷ ହେବାର ସାହାସ କରି ନାହାନ୍ତି । ସେଇଥିପାଇଁ ଏମିତି ଅବସ୍ଥା ଭୋଗୁଛନ୍ତି । ନା', ସେମାନଙ୍କ ପ୍ରତି ମୋଟେ ହିଂସା କରିବାର ନୁହେଁ । ସୁଖନିଦ୍ରା, ସୁଖ ସ୍ୱପ୍ନ, ସବୁ ବାଜେ କଥା । ଜଣେ ହାଲିଆ ହୋଇପଡ଼ିଛି, ଆରକି ଅସ୍ଥିର ହେଉଛି । ମୁଁ ତାଙ୍କ ବନ୍ଧୁ ପରି, ମୁଁ ଦମ୍ଭ ନ ଦେଲେ ଆଉ କିଏ ଦେଇ

ପାରିବ ? ତେଣୁ ମୋର ଇଚ୍ଛା ହେଲା, ଇଚ୍ଛା ପ୍ରବଳହେଲା ଯେ ଆମେ ତିନି ପୁରୁଷ ବନ୍ଧୁ ଅନ୍ତତଃ ନିବିଡ଼ରେ ଭଲ ଭାବରେ ପରସ୍ପର ଦେହକୁ ଛୁଆଁ ଛୁଇଁ ହେବୁ । ସେଥିକରେ ସେମାନେ ମୋଠାରୁ ଯଥେଷ୍ଟ ପାଇବେ ଏବଂ ମୁଁ ମଧ୍ୟ ପ୍ରଦାନର ଆନନ୍ଦରେ ଖୁସି ହେବ । ଏମିତିଆ ସୁଯୋଗ ପୁଣି ସହଜେ ଆସିବ ନାହିଁ ।

କିନ୍ତୁ ଏହା ପରେ କଣ କରାଯିବ ? ଆମ ଭିତରୁ ଜଣେ କେହି ସ୍ତ୍ରୀ ହୋଇ-ଥିଲେ କଥାଟା ଭିନ୍ନ ହୋଇଥାଆନ୍ତା । ସ୍ତ୍ରୀ ପୁରୁଷ ଅନ୍ତରଙ୍ଗତାରେ ବାଧା ନାହିଁ କି ଲାଜ ନାହିଁ । ଥିଲେ ଥାଉ ସାମାନ୍ୟ କିଛି, ହେଲେ ସେଥିରୁ ଟିକିଏ ଆଗୁଆ ଅଗୁଣୁ ଦେହ ତାଙ୍କୁ ଗିଳି ଦିଏ, ଉଡ଼େଇ ବୁଡ଼େଇ ସତ୍ୟାନାଶ କରିଦିଏ । ପୁରୁଷର ବନ୍ଧୁତା ଭିନ୍ନ ଧାତୁରେ ଗଢ଼ା, ଦେହ ଛୁଆଁ ଛୁଇଁ ଗୋଟାଏ ସଙ୍କେତ ମାତ୍ର.... ଏଥର ମନ ଭିତରୁ କଥା ବାହାରିବ, କଲିକତା ବେଳଠାରୁ ଆଜଯାଏଁ ଏଇ ତିନିଟା ଜୀବନରେ ଯାହା କିଛି ଘଟିଯାଇଛି, ଢଙ୍ଗେ ନଭେଇବା ସୁଖଦୁଃଖର କାହାଣୀ । ମାନେ କାହାଣୀର ନିର୍ଯ୍ୟାସ, ନିଗିଡ଼ା ଝାଳ, ଲୁହ, ରକ୍ତ, ବୀର୍ଯ୍ୟର ବୁନ୍ଦାଏ ଯେମିତିକି ନୂଆ ଚେତନା ଜାଳି ହୋଇଯିବ, ମୁଁ କହିବ, ଧରଣୀ କହିବ, ହଜାରକା କହିବ, କଥା ସରିଯିବ, କଳାଦାଗ ଲିଭିଯିବ, ହେଲେ ସ୍ମୃତି ହାଲୁକା ହୋଇଯିବ....

କୁହ, କୁହ, କୁହ ! କେହି ଭଲ କିଛି କହୁନାହଁ କାହିଁକି ? ଧରଣୀ, ତୁ ଓଡ଼ିଆ ପୁଅ, ଏକା ସହରରେ ଥାଉ; କିନ୍ତୁ ଯେତେବେଳେ ଦେଖା ହୋଇଛୁ, ଆମେ ଖାଲି ଉପରଓଳିଆ କଥାବାର୍ତ୍ତା ହୋଇଛୁ । ତୁ କହିଛୁ ତୋର ଆର୍କିଟେକ୍ଟ୍ ପୁଅ କେମିତି ହଜାର ଟଙ୍କା କମଉଛି, ମୁଁ କହିଛି ମୋ ଝିଅ କେମିତି ଚାଇନିଜ୍ ରନ୍ଧାରେ କଲିକତାର ରେସ୍ତୋରାଁମାନଙ୍କୁ ଟପି ଗଲାଣି । ମୁଁ କହିଛି ମୋ ସ୍ତ୍ରୀଙ୍କର ବ୍ଲଡ୍-ପ୍ରେସର୍ ଆଜିକାଲି କମିଗଲାଣି, ତୁ କହିଛୁ · କହିଛୁ ଗ୍ରେପା ! ତୋର ଏଇ ଜୁଖସ୍ୱା ଦରବୁଢ଼ୀ, ଆନନ୍ଦମୟୀ ବନମ ଆଜ କଥା ତୁ କିଛି କହୁନାହୁଁ । ତାକୁ ନେଇ ସାମାନ୍ୟ ଥଟ୍ଟା ପରିହାସ କଲେ ତୁ ଲାଜେଇ ଗଲାପରି ହେଉ, ସତେକି ତୁ କାଲି ସକାଳେ ବାହା ହୋଇଛୁ କିମ୍ବା ଯେ ତୋର ପ୍ରେମିକା । ଖାଲି ତୋର ପତ୍ର-ପତ୍ରିକାରେ ବାହାରିଥିବା ଗାଳୁଆ ନିବନ୍ଧ ଗୁଡ଼ାକ ବିଷୟରେ କହୁ । କେମିତି ଆମ ମୁଖ୍ୟମନ୍ତ୍ରୀଙ୍କୁ ଏକାଧାରରେ ବ୍ୟାସ ଓ ବଙ୍କିମଚନ୍ଦ୍ରଙ୍କ ସାଙ୍ଗରେ ତୁଳନା କରି ପାରିଛୁ, ଏବଂ ବିପକ୍ଷ ନେତାଙ୍କ ଅକାବ୍ୟ "ଶତାବ୍ଦୀ ! ଶତାବ୍ଦୀ" ବହିର ମୁଖବନ୍ଧ ଲେଖି ତାଙ୍କୁ ଖୁସ୍ କରି ଦେଇଛୁ । ଧରଣୀ ପଟ୍ଟନାୟକ ! ଇଏ ନୁହେଁ ତୋର ପୁରୁଷପଣିଆ କିମ୍ବା ପୁରୁଷ ନ ହୋଇ ପାରିବାର ହାର୍‌ଜିତ୍‌ର କୁହାଟ ନୁହେଁ, କାନ୍ଦଣା ନୁହେଁ । ଶାନ୍ତିରେ ଶୋଇ ଯାଇଥିବାର ଢଙ୍ଗ ଦେଖନା

ମୋତେ ଟିକିଏ ଭୂମିକମ୍ପ ହେଲାରୁ ତୁ ହାତ ଆଣି ପଞ୍ଜରାରୁ ମୋ ଦେହରେ, ଆଶ୍ୱାସନା ମାଗୁଛୁ । ଦେବି ଯେ ଦେବ; କିନ୍ତୁ କିଛି ନ କହିଲେ ମୁଁ କଣ କରି ପାରିବି ।

ବାବୁ ହରିଶଙ୍କା ! ମୁହଁ ସ୍ନୋ ପେଣ୍ଟ ହଜିଲା ହରିଶଙ୍କା ! ଇତିହାସ ପଢ଼ା ଉରବୁଲା ହରିଶଙ୍କା ! ତୋର ସେଇ ଗ୍ରୁତକୁ ଅନେଇବା ଢଙ୍ଗ ଗ୍ରହେ । ତୋ ବୁଢ଼ିଆଣି ତା' ପ୍ରେମିକକୁ ଭୋଗ କରି ଗିଳି ସାରିଲାଣି । ତୋ ସାଙ୍ଗରେ ଦଶ ବାର ବର୍ଷ ପରେ ଦେଖା ହେଉଛି । ତୁ ଖାଲି ଏତିକି କହୁଛୁ ଯେ ତୋ ପିଲା ତିନିଟାରୁ ପାଞ୍ଚଟା ହେଲେଣି, ଲଗେ ଲଗେ ଯୋଡ଼ାଏ ଝିଅ, ତୋ ସ୍ତ୍ରୀ ଅପରେସନ୍ କରିବାକୁ ରାଜି ନୁହେଁ (ବେହିଆଟା, ତୁ ବସିଛୁ କାହିଁକି ?), ତୋ ସ୍ତ୍ରୀ ଗାଆଁ ଗ୍ରୁଡ଼ି ସହରକୁ ଆସିବାକୁ ଚାହେଁ ଯେ ତୁ ତା'କୁ ଆଣିବାକୁ ଚାହୁଁ ନାହୁଁ, କାହିଁକିନା ଏଇ ଆନ୍ଦୋଳନ···ମୁଁ ତା'କୁ ହେଣିକି କହିବାକୁ ଦେଲି ନାହିଁ, ନ ହେଲେ ସେ ହୁଏତ ଅହମିଆ ଜାତିର ଇତିହାସ ଗାଇଆନ୍ତା, ତାଙ୍କ ପ୍ରତି ଯେଉଁ ଅନ୍ୟାୟ ଅତ୍ୟାଚାର କରାଯାଉଛି ତା'ର ହିସାବ ଦେଇଆନ୍ତା । ଥାଉ । ହରିଶଙ୍କା, ଇଏ ତୋର ନିଜ କଥା ନୁହେଁ । ତୋର ଦେହର ଶୋଷର କଥା, ବଡ଼ ରସଗୋଲା ଦେଖିଲେ କିମ୍ବା ସୁନ୍ଦରୀ ସ୍ତ୍ରୀର ବଡ଼ ଗ୍ରୁତ ଦେଖିଲେ ତୋ ଆଖି ଦିଟା କେମିତି ଉଜ୍ଜ୍ୱଳ ହୋଇ ଉଠେ ଅଥଚ ତୁ ଶର୍ଙ୍କି ଯାଉ, ତା'ର ଜମରେ ତୁ କୋଉଠୁ କୋଉ ଯାଏ ଆସିଲୁଣି, କଅଣ ପାଇଛୁ ପାଇନାହୁଁ, ତୋର ପୁରୁଷପଣିଆରେ କେଉଁଟା ପତାକା ପୋତିଛୁ, କେଉଁଟା କଟାଘାକୁ ମଲମ ଦେଇ ଲୁଚେଇ ପକେଇଛୁ—କହ, କହ ମୁଁ ବି କହିବ । ମୁଁ ଯାହା ସବୁ ବଖାଣିଛୁ, ଆସାମ ସରକାରଙ୍କଠାରୁ କଣ୍ଟ୍ରାକ୍ଟ ନେବା ପାଇଁ ମୁଁ କଣ ସବୁ କାରସାଦି କରିଛୁ, ତମ ନେତା ଓ ଆମ ନେତାଙ୍କ ଭିତରେ ପ୍ରଭେଦ କଅଣ, ଇତ୍ୟାଦି, ସେଗୁଡ଼ା ମୋର ଅନ୍ତରର ସାହିତ୍ୟ କି ଇତିହାସ ନୁହେଁ (ଆମ ସାହିତ୍ୟ ବଡ଼ ତୋ ଇତିହାସ ଶ୍ରେଷ୍ଠ ଇଏ ହାକିମ ହେଲେ ସିଏ କିରାଣୀ ବୋଲି ଆମେ କେତେ ଚଢ଼େଇଛୁ ତୋତେ) ମୁଁ ଭିନ୍ନ କଥା କହିବ, କହିବ, ତୋତେ ହୁଏତ ଅଧିକ କହି ପାରିବ, କାହିଁକିନା ତୁ ବିଦେଶିଆ, ମୁଁ ତୋ ହାତକୁ ପୁଣି ମୁଠେଇ ଧରିବ, ତୋତେ ଆଶ୍ୱାସନା ଦେବ; କିନ୍ତୁ ତୁ ପାଟି ନ ଫିଟେଇଲେ ମୁଁ କଣ କରିପାରିବ ?

ନାଁ, ନାଁ, ମୁଁ ରସରସିଆ ଫୁସୁଫୁସିଆ କଥା ମାଗୁନାହିଁ । ସେ ତ ଉପ୍ରଶ୍ରଅ । ଦେହକୁ ଦେହ ଛୁଇଁ ସାରିଲୁଣି ଆମେ, ପୁରୁଷକୁ ପୁରୁଷ, ଦରକାର ମନ ଚିହ୍ନିବାର ମନଚକ୍ଷୁରର······

ଝରକା ପଛର ପରଦା ନିହାତି ବିରକ୍ତ କରୁଥାଏ । ଝୁଲିଲା ତ ଝୁଲିଲା, କଅଣ ଦେଖୁଛୁ ଟିକିଏ ଭଲ କରି ଦେଖିବି ନାହିଁ କାହିଁକି ? ଦୂର ଗୁଡ଼ ଉପରେ ଲମ୍ବା ହୋଇ କ'ଣଟା ଛିଡ଼ା ହୋଇଛି, ସେ ପ୍ରକୃତରେ ଚମ୍‌କ, କାଳଜୟୀ ଅସୁର ନୁହେଁ, ଏ କଥା କଣ ମୁଁ ଜାଣେ ନାହିଁ ? ଏବଂ ତା' ଦରବାରରେ ଖେଳ ଦେଖେଇଲା ପରି ଗୁଇମାନେ ଲଢ଼େଇ କରୁଛନ୍ତି, ଶୀତରେ ଥରୁଛନ୍ତି ହେଲେ ମରମର ହେଉଛନ୍ତି, ଏ ଦୃଶ୍ୟ ଦେଖାରୁ କଣ ମିଳିବ ମୋତେ ?

ହଠାତ୍ ହଜାରିକା ଉଠିପଡ଼ି ଟିକା ମାଡ଼ି ବସିଲା । ମୁହଁକୁ ଦୁଇହାତରେ ପୋଛି ଅଣିଲା ଓ ମୋ ଆଡ଼କୁ ଅନେଇ କହିଲା—"କେତେ ରାତି ହେଲାଣି କି ?"

"ମୁଁ କେମିତି ଜାଣିବି ? 'ସେ ଅଉ କିଛି ନ ପରୁଣିଲରୁ) ତୁ କଣ ଖବୁକୁ ଶୋଇବା ବେଳ ହୋଇଗଲାଣି ? ଅମକୁ ଖାଇବାକୁ ଦେବୁ ନାହିଁ ? କଇ ଶାଗ, କଦଳୀ ବଡ଼ା···ତୋ ରାନ୍ଧୁଣିଆ ଆସିବ ନାହିଁ କି ଆଜି ?"

ଲଦୁ ପରିହାସରୁ ଆରମ୍ଭ କରି ଗହନ ଗମ୍ଭୀରର ଅବତାରଣା କରି ଆଥାନ୍ତି; କିନ୍ତୁ ଦେଖିଲି ତା'ର ପ୍ରତିକ୍ରିୟା ପରେ ଶୂନ୍ । କହିଲା –"ରାନ୍ଧୁଣିଆ ଛୁଟିରେ ଯାଇଛି, ଆଉ କାଲେ ଆସିବ । ଟିଫିନ୍‌କ୍ୟାରିଅର୍‌ରେ ଖାଇବା ଆଣିଛି··· ତା'ଛଡ଼ା ଅଉ କିଛି ଆଣିବ....ମୋ ପାଇଁ ।"

ସେଇଠି ମୋର ମୂଢ଼ତା ତାର ନଜରରେ ପଡ଼ିଲା କି କଅଣ, ସଦସ୍ତ କଣ୍ଠରେ କହିଲା, ବସେଇ ବସେଇ—"ତୁ ବୁଝି ପାରିବୁ ନାହିଁ । ତୋ ଦୋଷ ନୁହେଁ । ଆନ୍ଦୋଳନକୁ ବୁଝି ହେବ, ବିପ୍ଳବକୁ ବୁଝି ହେବ; କିନ୍ତୁ ପିଲାକୁ ମା'ଅଠାରୁ ଛଡ଼େଇ ନେବାର ଦୁଃଖ···ନା, ନା, ଭୁଲ୍ କହିଲି, ମା'ଙ୍କୁ ପିଲାଠାରୁ ଛଡ଼େଇ ନେବାର ଯନ୍ତ୍ରଣା, ତମେ ସବୁ ବୁଝିବ ନାହିଁ ।

ମୋର ଇଚ୍ଛା ହେଲା ମୁଁ ତା'ର ଆବେଗର ବଡ଼ପଣକୁ ଯାନ କରିଦେବି । ସେ କଣ ଭୁଲି ଗଲେଣି ଯେ ମୁଁ ତାକୁ ପିଲାଦିନୁ ଜାଣିଛି, ତା'ର ବଡ଼ ରସଗୋଲା ବଡ଼ ଗୁଡ଼ର ଲୋଭକୁ ଉତ୍ତମ ରୂପେ ଜାଣିଛି ? ଇଚ୍ଛା ହେଲା ଚିଗଲେଇ କହିବି 'ଜୟ ଆଇ ଅହମ୍' (ଜୟ ମାଆ ଆସାମ), ଆଉ ତା'ର ଦେଶପ୍ରେମ ମାନେ ଅଞ୍ଚଳ ପ୍ରେମକୁ ଅଣ୍ଡା କରିଦେବି । ବଚନକୁ ବାଟକୁ ଆଣିବି; କିନ୍ତୁ ଦେଖି ଦେଖୁ ତା'ର ଚଟକା ମୁହଁର ବଡ଼ ଜଣ ଏମିତି ଥରି ଉଠିଲା, ତାର ସ୍ୱଭାବତଃ ଦିରଖୋଲ ଓଠ ଏମିତି ଖୋଲି ଅସିଲା, ବ୍ରହ୍ମାଣୀର ଗୋଳିଆ ପାଣି ବହିଲା ହୋଇ ଗଲା, ତା'ର ଶ୍ରେଷ୍ଠ କପାଳ···ମୋର ମନେ ହେଲା ସେ ମୋର ଜଣାଶୁଣା କେହି

ନୁହେଁ, କୋଉ ଅଜ୍ଞାତ ଗୁହାରୁ ବାହାରି ଆସିଛୁ; ତା' ମାଆ ତା'କୁ ଠେଲି ଦେଇଛି ପାଖରୁ । ମୋ ପାଟିରୁ କଥା ବାହାରିଲା ନାହିଁ ।

ହେଲେ ମୋର ବନ୍ଧୁଭାବ ପୁଣି ଜାଗି ଉଠିଲା । ଆରେ ସେ ବି' ତା ପିଲାଦିନର ଗୁଣ, ବାଳୁତ ପଣ, ନିପ'ଟିଲାର ଅସହାୟତା—ମୁଁ କଣ ତା'କୁ ଜାଣି-ନାହିଁ ? ତେଣୁ ମୁଁ ପ୍ରସ୍ତୁତ ହେଲି ଯେ ଆଉ ଥରେ ତା' ହାତକୁ ମୁଠେଇ ଧରେ ବା ନ ଧରେ, ତାକୁ କୌଣସି ମତେ ଦମ୍ଭ ଦେବି ।

ଏହି ସମୟରେ କବାଟରେ କିଏ ଖଟ୍ ଖଟ୍ କଲା । ମୁଁ କିଛି ପଚାରିବା ଆଗରୁ ହଜାରିକା ଖଟରୁ ଲଂଫ ଦେଇ କବାଟ ଖୋଲିବାକୁ ଗଲା । ନିଶ୍ଚୟ ଟିଫିନ୍ କ୍ୟାରିଅର୍ ବାଲା । ବିଚରା ହଜାରିକା, ଯେମିତି ଅଛି, ନିର୍ଘାତ୍ ପେଟ ବିକଳିଆ ।

ଦେଖିଲି ଟିଫିନ୍‌କ୍ୟାରିଅରବାଲା ନୁହେଁ ଟିଫିନ୍‌କ୍ୟାରିଅର୍‌ବାଲୀ । ଗାଉଁଲିଆ ନୁହେଁ, ମୋଟେ ନୁହେଁ । ଅଳ୍ପବୟସୀ, ମେଖଲା ଚାଦର ପିନ୍ଧିଛି, ଆସାମିଆ ନିଶ୍ଚୟ । ଚାଦର ବର୍ଷାପାଣିରେ ତିନ୍ତି ଯାଇଛି, ଠାଏ ଠାଏ ଉଞ୍ଚ ବ୍ଲାଉଜ୍‌ରେ ଲଖି ଯାଇଛି । ଗ୍ରେଟ ଆଲୁଅର ଜ୍ୟୋତି ଯଥେଷ୍ଟ ନ ହୋଇଥିଲେ ମଧ୍ୟ ( ତା'ଛଡ଼ା ହଜାରିକା ପ୍ରାୟ ସବୁବେଳେ ତ' ମୁହଁ ସାମନାରେ ଛିଡ଼ା ହୋଇ ଥା'ଏ, ତା' ରୂପଲାବଣ୍ୟକୁ ଆଢୁଆଳ କରି ଦେଇ) ବେଶ୍ ବୁଝା ପଡ଼ୁଥାଏ ଯେ ସୁନ୍ଦରୀ ତାଲିକାରେ ନ ଥିଲେ ନାହିଁ, ସେ ଗୋଟିଏ ଲୋଭନୀୟ ବସ୍ତୁ ହୋଇଥିବ । ପୁଣି ଦେଖିଲି ଯେ ହାତକୁ ଟିଫିନ୍‌କ୍ୟାରିଅର୍ ଓହ୍ଲେଇ ଦେଲା ପରେ ସେ ତା'ର ବ୍ଲାଉଜ୍ ଭିତରୁ କଣ ସବୁ କାଗଜ ବାହାର କଲା । ଇଏ କି ବ୍ୟାପାର !

ସେମାନେ ଅଳ୍ପ ବହୁତ ଫୁସୁରୁଫାସର ହୋଇ ପାଖ ରୁମକୁ ଚାଲିଗଲେ, କବାଟ ଆଉଜେଇ ଦେଲେ । ରୁମ୍‌ରେ ଆଲୁଅ ଜଳିଲା ଓ ଅନେକ ସମୟ ଯାଏଁ ସେମାନଙ୍କ ଅହମିଆ ଭାଷାର କଚର ମିଚର ଶୁଣିବାକୁ ପାଇଲି । ହସ ମାଡ଼ିଲା ଯେ ହଜାରିକା ଟୋକା ବୋଲି ଧରିନିଅ, ଜାଣିଶୁଣି କବାଟକୁ ଦରବୁଜା' ଛାଡ଼ି ଦେଲା । ଯେମିତିକି ଯେ ପିଲାଦିନର କବାଟ କିଳା' ପ୍ରବୃତ୍ତିରୁ ପାରି ହୋଇଗଲାଣି, ବଡ଼ ହେଲାଣି । ବାବୁ, ମୋତେ ପୁଣି ଭଣ୍ଡେଇବାକୁ ବସିଛୁ ?

ଭାବିଲି ଧରଣୀକୁ ଉଠେଇବି । ଆମ ବାଲ୍ୟବନ୍ଧୁଙ୍କର ଏଇ ଅସମ୍ଭାଳ ଦୁଃସାହସୀ କାରବାରକୁ ଦେଖ ବୋଲି କହିବି । ସ୍ତ୍ରୀ ପିଲାଙ୍କୁ ଗାଆଁରେ ଛାଡ଼ି ଆସିବାର ମତଲବ କଅଣ ? ତୁ ସିନା ତୋ ମାଇପକୁ କୁଣ୍ଢେଇ ଧରିଥାଉ, ବୁଦ୍ଧିମାନ୍ ପୁରୁଷ ହଜାରିକା ପରି ଛେଳିଆ ପୁରୁଷ ମଧ୍ୟ ଆମ ଆଖି ସାମନାରେ କଣ କରୁଛି ଦେଖେ ବୋଲି କହିବି, କିନ୍ତୁ ଧରଣୀ ତଥାପି ମୃତପ୍ରାୟ ଏବଂ ତା' ହାତ ମୋ

ଦେହରୁ ଉଠେଇ ନେବା ପାଇଁ ନାଗଜ । ଅବେ ତୁ କଣ ସ୍ୱପ୍ନ ଦେଖୁଛୁ ଯେ ତୋ ପାଖରେ ଆଉ କଏ ଶୋଇଛୁ ?

ତେବେ ତା' ହାତକୁ କାଢି ଥୋଇ ଦେବାକୁ ସତ ବଳିଲ ନାହିଁ । ମନେ ହେଲ ତନ ବନ୍ଧୁଙ୍କର ଦେହ ଛୁଆଁ ଛୁଇଁରୁ ଏତକ ବାକୀ ଅଛୁ, ତା'କୁ ନଷ୍ଟ ହେବାକୁ ଦେବ ନାହିଁ ।

ଏଣେ ପାଖ ରୁମରୁ ଆସୁଥିବା ହଏ-ହଏ ( ଅନ୍ତମିଆ ଭାଷା'ରେ 'ହ'ର ପ୍ରାଦୁର୍ଭବ କେତେଦୂର ଜାଣିଥିବେ ନିଶ୍ଚୟ )ରୁ ବେଶ କଛୁ ଉତ୍ତେଜ... ଥାସି ଗଲଣି ବୋଲ ମୋର ଧାରଣା ହେଲ । ମନେ ହେବ ସେମାନେ ତର୍କ କରୁଛନ୍ତି ଏବଂ ତା' ସାଙ୍ଗକୁ ଇଂରଜୀ ପଦେ ପଦେ । ଆଇ ଆମ୍ ଟେଲଙ୍ଗ୍ ୟୁ······ଆଇ ଡୋ'ଣ୍ଟ କେୟାର....ଆଇ ନୋ' ଦ' ବ୍ଲଡ଼ି ଗଭର୍ଣ୍ଣମେଣ୍ଟ୍······କଣ୍ଠସ୍ୱର ହଜାରକାର ।

ମୋର କାନ ଠିଆ ହୋଇଗଲ । ତା'ମାନେ କଣ ଏଠି କଛୁ ଷଡ଼ଯନ୍ତ୍ର ଚ୍ଲଛୁ ? ଅନ୍ଦୋଳନର ଅଗାମୀ କାର୍ଯ୍ୟସୂଚୀ ଉପରେ ଆଲୋଚନା ହେଉଛୁ ? ଏ ଜିଅ ଭୂଇଁତଳିଆ କୌଣସି ଯୁବନେତାଙ୍କଠାରୁ କାଗଜପତ୍ର ଆଣିଛୁ, ଆଉ ଆମ ହଜାରକା ସାହେବ ତହିଁରେ ଟୀପପଣୀ ଦେଉଛନ୍ତି ? କନ୍ତୁ ଏତେ ତେଜ ? ? କେହ ହେଲେ ଭାବବ ଯେ ହଜାରକା ହେଉଛୁ ଅସଲ ଭୂଇଁତଳିଆ ନେତା, ଅଳ୍ପ ବୟସୀକୁ ପାଠ ପଢ଼ାଉଛୁ, ସାହସ ଦେଉଛୁ । କହୁଛୁ କ'ଣ ନା, ଆଇ ନୋ ଦ ବ୍ଲଡ଼ି ଗଭର୍ଣ୍ଣମେଣ୍ଟ....?

ବର୍ଷା ବୋଧହୁଏ ଥମି ଯାଇଛୁ । ଝରକା ପରଦାରୁ ଫାଳେ ରେଲିଙ୍ଗରେ ଗୁଡ଼େଇ ହୋଇ ରହିଛୁ । ସତେକ ଖାସ୍ ମୋର କଥା ମାନିଲ ପରି ବାହାର ପୃଥିବୀକୁ, ଆଲୁଅ ଅନ୍ଧାର ଝିଲମିଲିକୁ ଭଲ କରି ଦେଖାଉଛୁ । କହୁଛୁ ଦେଖେ, ସେଥିରେ କେଉଁଠା ପ୍ରୁଇ ଅଛୁ କ ଅସୁର ଅଛୁ, ଲଢ଼େଇ କ କଅଣ ଚ୍ଲଛୁ । ସେଇଠୁ ମୁଁ କହିବ, ନାଇଁ, ମୋର ଦେଖିବା ବୁଝିବାର ଭୂଲ ହୋଇଛୁ, ବାହାରେ ଖାଲି ଆନନ୍ଦ, ଯେତେକ ଗଣ୍ଡଗୋଳ ଏଇଠି । ମଣିଷମାନଙ୍କୁ ନେଇ । ଉଃ ବସ୍ !

କେବଳ ତା'କୁ ରଜାଜ୍ କହିଲ ନାହିଁ, ଦରଆହ୍ୱାନ କବାଟ ପଛରେ ଥିବା ପୁରୁଷ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ କହିଲ ଯେ ଆନ୍ଦୋଳନ ବାହାନାରେ ତମେ ଦୁଇଜଣ ପଶିଛ ତା' ଭିତରେ ‹ କେତେବେଳ ଯାଏଁ । ପ୍ରକୃତରେ କଅଣ କରୁଛ ଭଗବାନ ଜାଣନ୍ତି । ପ୍ରକାଶ୍ୟରେ କଛୁ ନ କରୁଥିଲେ ମଧ୍ୟ ( ଅସମ୍ଭବ ନୁହେଁ, ପୁରୁଷଟା ଯେତେହେଲେ ପୋଡାମୁହାଁ ) ମନେ କରୁଛ, ମୁଁ ଜାଣେ । ମୁଁ ସେଥିପାଇଁ

ତମକୁ ଦୋଷ ଦେଉ ନାହିଁ । ଯେମିତ ହୁଏ, ହେବାର କଥା । ଦେଶପ୍ରେମର ଢଙ୍ଗ ଦେଖାଅ ନାହିଁ, ମୁଁ ଆସି ବୁଢ଼ା ହେଲଣି, ପ୍ରେମଫ୍ରେମ କଥା ସବୁ ମୋତେ ଜଣା, ଗୋଡ଼ରୁ ମୁଣ୍ଡ ଯାଏ, ଚୂଳରୁ ମୂଳଯାଏଁ, ଅଉ କଅଣ ପାଠିରୁ ବାହାରୁଥିଲା ମୋର······ ।

ଧରଣୀର କଣ ହେଲା କେଜାଣି ଚଟ୍‌କନା ତା' ହାତ ମୋ ଦେହରୁ ଉଠେଇ ନେଲା ଓ ନିଜ ଗୁଡଲୁ ମଣ୍ଡି ଦେଲା, ଧନ ଖୋଜିଲା ପରି ।

ମୁଁ ପୂର୍ବରୁ ଧରଣୀର ଖାଲୁଆ ଗୁଡ ବିଷୟରେ କହିଛି ଏବଂ ସେ କେମିତି ନିଜକୁ ଟୋକା ବୋଲି ଚଳେଇବାକୁ ଚାହେଁ ତାର ସୂଚନା ଦେଇଛି; କିନ୍ତୁ ତା'ର ବପୁର ଗଢ଼ଣ ତଥା ଗତି ଗମନ ସମ୍ପର୍କରେ କିଛି କହିବାକୁ ସୁବିଧା ମିଳିନାହିଁ । ଯେତେ ସ୍ୱାସ୍ଥ୍ୟବାନ୍ ହେଉନା କାହିଁକି ସାଧାରଣ ଉଚ୍ଚ ମୋଟା ଲୋକଟିଏ ହଲି ହଲି ଚଲି ଚଲି ଚାଲିଲେ କେମିତି ଦେଖାଯିବ ଅନୁମାନ କରନ୍ତୁ । ଅନ୍ତତଃ ଗୋପକୃଷ୍ଣ ବଳେ କଲେ ବୋଲି କାହାର ଭ୍ରମ ହେବ ନାହିଁ ବୋଲି ମୋର ବିଶ୍ୱାସ । ପୁଣି ନାକ ସଳଖ ହେଲେ କଣ ହେବ, ମାଂସଳ ୯୦ ଗାଲକୁ ଚ୍ଚେଟ ଚ୍ଚେଟ ଆଖି । ମୋଟ ଉପରେ ତା'କୁ ଦେଖିଲେ ସ୍ଥୂଳତାରେ କୋମଳତା ଜଣାଯାଇଛି, ପୁଚୁପୁଚିଆ ପାହାଡ଼ଟିଏ ପାହୁଣ୍ଡ ପକେଇ ଚାଲିଛି, ଜନ୍ମପ୍ରାପ୍ତ ଚାଲିଲେଇ ହେଉଛି, ଆଖି ମିଟି ମିଟି କରୁଛି ବୋଲି ମନେ ହେବ । ଏଭଳି ପୁରୁଷ ଭଲ ବନ୍ଧୁ ହୋଇପାରେ, ହୁଏତ ତଥାକଥିତ ପତ୍ରିକାର ବନାମ ଗ୍ରାହକ ହୋଇପାରେ; କିନ୍ତୁ ନାରୀମାନେ ଅର୍ଥାତ୍ ସୁଦେହୀ ସଚଯୌବନା ନାରୀମାନେ ତାଙ୍କୁ ପାଇବା ପାଇଁ ଧସପଡ଼ ହେବେ, ଏହା କଳ୍ପନାତୀତ । ଅବଶ୍ୟ ସେ ପ୍ରଥମରୁ ଦ୍ୱିତୀୟା, ଦ୍ୱିତୀୟାରୁ ତୃତୀୟା ସ୍ତ୍ରୀକୁ ନେଇ ସୁଖରେ ଅଛି ମୁଁ ସେ କଥା କହୁ ନାହିଁ । ମୋର କହିବା ଉଦ୍ଦେଶ୍ୟ ହେଉଛି ଯେ ତାଙ୍କୁ ରୋମାଣ୍ଟିକ୍ ଭୂମିକାରେ ଅଂଶ ଗ୍ରହଣ କରିବା ପାଇଁ କେହି କଦାପି ପରାମର୍ଶ ଦେଇ ନଥିବ । ଦେଇ ନପାରେ ।

ଆରେ, ସେ ଉଠି ବସିଲଣି ! ତା'ର ବିପୁଳ ଦେହକୁ ଅଣ୍ଡାଳି ହେଉଛି । ଲମ୍ବା ପଞ୍ଜାବୀର ଢନଢନିଆ ପକେଟ୍‌ରେ ହାତ ପୂରେଇ କ'ଣ ଅଣ୍ଡାଳୁଛି, ପୁଣି ଖୋଜୁଛି, ଆଉ ରୁଛାଟାକୁ ତା'ର ଗୁଡ ପେଟ ମଣ୍ଡିଲା ପରି ହେଉଛି । କଣ ସ୍ୱପ୍ନ ଦେଖୁଥିଲା ଯେ ଏ ପର୍ଯ୍ୟନ୍ତ ଘାରି ହେଉଛି ସେଥିରେ ? ମୁଁ ତା'କୁ ଅସ୍ଥ କରିବାକୁ ଚାହିଁଲି । କ'ଣ ହେଲା ବୋଲି ପଚାରିଲି ।

ସେ ଓଲଟା ମୋ ଆଡ଼କୁ ଜଳ ଜଳ ହୋଇ ଚାହିଁଲା, ଆଉ ପଚାରିଲା—
"କୁଆଡ଼େ ଗଲା ?"

"କଏ କୁଆଡ଼େ ଗଲ ?" ବୁଝିବାକୁ ହେବ ନାହିଁ, ନଦବାଜିଲା ମଣିଷକୁ ଚମକେଇବାର ନୁହେଁ ।

"ଟେଠି ଝଣ୍ଡକ ।"

ତ'ହନ ହେଲ ଯାମେ ଆସିଛୁ ଏଠିକି, ଯ୍ୟା ଭିତରେ କେଉଁଠୁ ଚଠି ଆସିଲ ଅନୁମାନ କରିପାରିଲି ନାହିଁ । ପୁଣି କ'ଣ ଏମିତ କହୁଛି ଚଠି ଯେ ବାବୁଙ୍କର ସମ୍ଭାଳ ପଡ଼ୁନାହିଁ ? ଖୋଲି ତାଡ଼ି କିଛି ପଚାରିବା ଆଗରୁ ସେ ତକିଆଯାକ ଟେଲିଦେଇ ସାରିଲଣି, ରେଜେଇ ଗୁଡ଼ର ସାଙ୍କିଲଣି ବସି, ଶେଷକୁ ମୋ ଅନୁମତିର ଅପେକ୍ଷା ନ କରି ମୋ ବିଛଣାରେ ହାତ ପୂରେଇଛୁ ।

ହେଲେ ପ୍ରତିବାଦ କରିପାରିଲି ନାହିଁ । କ'ଣ ହୋଇଛି ତୋର, ସିଙ୍ଗି- ଯାଇଥିଲେ ଗଡ଼େଇ ଦେବ, ହଜି ଥିଲେ ଖୋଜେଇ ଦେବି, ମୁଁ ତୋର ବନ୍ଧୁ ପରି ବୋଲି କହିବାକୁ ସମୟ ପାଇଲି ନାହିଁ । ସେ ଗୁହୁଁ ଗୁହୁଁ ଶବ୍ଦରେ ଉଠିପଡ଼ି ଘରସାରା ଖେଳିଗଲଣି, ସଣଢରେ ଧଡ଼କା ଡ୍ରେସିଙ୍ଗ୍ ଟେବୁଲ୍ର ଡ୍ରୟର୍, ଯେତେକ ଧିଲଧିପର ଥାକ ଖୋଜି ସାରି ଆଣ୍ଠେଇ ପଡ଼ି ଖଟତଳକୁ ଅନେଇଛୁ । କରୁ କ'ଣ କରୁଛୁ, ମୋର ବୁଝିହୋଇଛୁ !

କିନ୍ତୁ ସେ ଯେତେବେଳେ ଏ ଘର କାମ ସାରି ପାଖ ଘରକୁ ମୁହେଁଇଲା, ଦରଅଉଜା କବାଟକୁ ଖୋଲିବାକୁ ବସିଲା, ମୁଁ ପାଟି ଖୋଲିବାକୁ ବାଧ୍ୟ ହେଲି । ଡାକ ଗୁଡ଼ିକ—

'·ନାଇଁ ! ନାଇଁ ! ସେଠିକି ଯାଆନା' । ଲ୍ସନ୍ !"

ସେ କାହିଁକି ଶୁଣିବ ? କମେସେ କବାଟ ଠିଆ ମେଲା ହୋଇଗଲା, ମେଞ୍ଚାଏ ଆଲୁଅ ଆମ ଶୋଇବା ଘରକୁ ପଳେଇ ଆସିଲା, ଆଉ ଧରଣୀ ଦୁଆରବନ୍ଧରେ ଛିଡ଼ା ହୋଇ ସେମାନଙ୍କ ଉଦ୍ଦେଶ୍ୟରେ ଗୋଟାଏ ଅନିର୍ଦ୍ଦିଷ୍ଟ "ହ୍ୟାଲୋ" କହିଲା । ତା'ର ସମ୍ବୋଧନରେ ଯାଳେମାନ ଆଶ୍ଚର୍ଯ୍ୟଭାବ ଥିଲା ପରି ମନେ ହେଲନାହିଁ । ସେ ଯେଉଁ ମୁଡ଼୍ରେ ଥିଲା, ମୋର ଧାରଣା ଯେ ଅନ୍ୟ ଦୁଇଜଣ ଯେ କୌଣସି କାମରେ ଲିପ୍ତ ଥିଲେ ମଧ୍ୟ ସେ ତା'ର ତାତ୍ପର୍ଯ୍ୟ ଠଉରେଇ ପାରି ନଥାଆନ୍ତେ ।

ମୋର ତା' ପଛେ ପଛେ ସେଇଠି ପହୁଞ୍ଚିବା ଛଡ଼ା ଗତି ନଥିଲା । ଯାହା ହେବାର ହେଲଣି, ଯ୍ୟା' ପରେ କିଛି ଗୋଟାଏ ଅଘଟଣ ନ ଘଟୁ । ମୋ ହିଡ଼ା ଆଉ କେହି ସୁସ୍ଥ ଅବସ୍ଥାରେ ନାହାନ୍ତି । ହୁଏତ କେବଳ ସେଇ ଅଗନ୍ତୁକା । ସିକ୍ତ- ବସନା । ଯ୍ୟା' ଭିତରେ ସେ ଓଦା ଲୁଗା ଗୁଡ଼ି ଶୁଖିଲ ପିନ୍ଧିବଣି, ହଜାରିକା ତାକୁ ନିଜ ସ୍ତ୍ରୀର ଲୁଗାପଟା ଆଣି ଦେଇଥିବ ଓ ସେ ଅନ୍ୟ ପୁରୁଷ ସାମନାରେ ମେଝଲା

କି ସୁନ୍ଦର ପାଲଟି ଥିବ ବୋଲି ମୋର ବିଶ୍ୱାସ ହେଲା ନାହିଁ । ଯେତେହେଲେ ହିରଣ୍ମୟୀ ନାରୀ ।

କିନ୍ତୁ ସେଠି ପହଞ୍ଚିଲା ପରେ ତା' ବସନ ଶୁଖିଛି କି ଓଦା ଅଛି ଲକ୍ଷ୍ୟ କରିବାର ଅବକାଶ ନଥିଲା । କାହିଁକିନା ତା'ର ଦୃପ୍ତ ଅଥଚ ଶାନ୍ତ ବୁହାଣୀ ମୋର ଜିଜ୍ଞାସାକୁ ପାଖରେ ପୂରେଇଲା ନାହିଁ । ସତେ କି ସେ କହୁଛି—ସାର୍, ମୋ ମୁହଁରୁ କଣ କିଛି ପାଉ ନାହାନ୍ତି ଯେ ଆଉ କିଛି ଜାଣିବାର ଅଛି ? ଏବଂ ବନ୍ଧୁ ହଜାରିକା ମଧ୍ୟ ତଦନୁରୂପ ବୁହାଣୀରେ ମୋ ଆଡ଼କୁ ଅନେଇଛି । ପୋଜ୍ ଦେଲା ପରି ।

ପୋଜ୍ ନୁହେଁ, ସୁଷମ, ସମାନ-ସମାନ ସଙ୍ଗୀ ସାଥୀ । କହ ନା' ଭାଇ ଭଉଣୀ !

ହଁ, ସେଇଆ । ମୋର ପୌଢ଼ାବୁଦ୍ଧି ତାଙ୍କର ଢଙ୍ଗଢରେ ମୋହିଲେ । ମନେ ହେଲା ଯେ ଖାଲି ଏକା ମାଆ ପେଟରୁ ଜନ୍ମ ହୋଇଥିଲେ ଭାଇଭଉଣୀ ହୁଅନ୍ତି ନାହିଁ । କେଉଁ ଏକ ମାହେନ୍ଦ୍ର ମୁହୂର୍ତ୍ତରେ ସଙ୍ଗୀକୁ ଏକାଠି ଗୁହିଁ ପାଇବାର ଆନନ୍ଦରେ, ନିର୍ବିକାର ବିଧାତାର ଦାନକୁ ଏକାଠି ହାତ ପାତି ନେବାର ତଥାସ୍ତୁରେ, ଆତତାୟୀର ନାଲି ଆଖିକୁ ଏକାଠି ମିଶି ଥୁ' କରିବାରେ, ହେଲେ ନାହିଁ ହେଲା ନାହିଁର ବିଫଳତାରେ ଏକାଠି କାନ୍ଦାକାଟି ରଗିମାଗି.. ହେଲା ଏବେ ସେକ୍ସ ଭରିବାରେ ଅଥବା ବିଷ ଖାଇବାରେ ଏମାନେ ଭାଇଭଉଣୀ । ପାପସାପ ଆସିବା ପୂର୍ବର ଆଦାମ୍-ଇଭ୍ ।

ହଜାରିକା ଚିହ୍ନା କରି ଦେଉଛି—"ରେଣୁକା ବଡ଼ଠାକୁର, କଟକ୍ କଲେଜରେ ଫାଇନାଲ୍ ଇଅର, ଇଂରେଜି । ଇତିହାସ ନୁହେଁ, ସାହିତ୍ୟ ।" କିନ୍ତୁ ହସଟିଏ ଦେଖେଇଲା, ଯେମିତିକି ସେ ନିଜେ ଅଜ୍ଞାତର ବିଦ୍ରୂପ ମନେ କରେଇ ଦେଉଛି, ଅମକୁ ଲଜ୍ଜା ଦେବା ପାଇଁ ନୁହେଁ, ସିଂହାସନରେ ବସି କୌତୁକ କଲା ପରି । "ଏ ଦୁଇଜଣ ହେଉଛନ୍ତି ମୋର ବିଶେଷ ବନ୍ଧୁ, କଲିକତା ପ୍ରେସି-ଡେନ୍ସି କଲେଜରେ ଏକାଠି ପଢ଼ିଥିଲୁ । ଓଡ଼ିଶାର ଲୋକ, ଇଏ ହେଉଛନ୍ତି ଧରଣୀ ପଟ୍ଟନାୟକ, ବିଖ୍ୟାତ ଜର୍ଣ୍ଣାଲିଷ୍ଟ, ଆଉ ଇଏ ହେଲେ ନରେଶ ବେହେରା, ପ୍ରଖ୍ୟାତ କଣ୍ଟ୍ରାକ୍ଟର୍, କମ୍ପାନି-ମ୍ୟାନେଜର ।"

ଏତେ ବିଖ୍ୟାତ ପ୍ରଖ୍ୟାତ ନ କହିଥିଲେ ଚଳି ନଥାଆନ୍ତା ? ତୁ କଣ ଆମକୁ ଥଟ୍ଟା କରୁଛୁ ? କିନ୍ତୁ ତା'ର ସେଇ ପ୍ରତିକୃତି ପାଲଟି ଯାଇଥିବା ଚେହେରା ଉପରେ ରାଗି ହେଲିନାହିଁ । ଯେମିତିକି ସେ ଯେଉଁ ସ୍ୱର୍ଗରେ ବା ସିଂହାସନରେ ଅଛି, ସେ ଦିଗରୁ ଯାହା ଆସୁଛି ସେଥିରେ ଆବିଳତା ନାହିଁ, ରହି ପାରିବ ନାହିଁ । ବେଶ୍,

ମୁଁ ଆଉ ଏଠି ରହିବ କାହିଁକି ? ମୋର ବନ୍ଧୁ ହୃଦୟ ଅଭିମାନରେ ଭରିଗଲା, ଓ ମୁଁ ହେଠ୍ ଶୀଘ୍ର ଫେରି ଆସିବାକୁ ବୁଝିଲି । ହେଲେ ତା' ପୂର୍ବରୁ ଯାହା ଦେଖିଲି, ତା'କୁ ପୁଣି ଦେଖି ମନ ଭିତରେ ଚିପି ରଖିବା ପାଇଁ ଇଚ୍ଛା ହେଲା । ଦି'ଜଣ ଲୋକ ଗୋଟିଏ ଗ୍ଲେଟ ଟେବୁଲର ଦି' ପାଖରେ ବସିଛନ୍ତି । ମଝିରେ ଖୋଲା ନକ୍ସା, ଆସାମର ହୋଇଥିବ ପରା । ସେଥିରେ ଏକାଧିକ ନାଲି ଶର୍କୁନ୍, ନାଲି ଛକ । ନାଲି ପେନ୍ସିଲ୍‌ଟା ନକସା ଉପରେ ଗଡ଼ୁଛି, ଅପେକ୍ଷା କରୁଛି । କାମ ସରି ନାହିଁ; କିନ୍ତୁ କର୍ମୀ ଦୁହିଁଙ୍କର ଚେହେରାରେ ଅସରନ୍ତି ଅପେକ୍ଷାରେ ଆସକ୍ତି । ଏ କାମ ତ ସରିବ ନାହିଁ । ଦୁଃଖ ନାହିଁ, ଆମେ ସେଥିରେ ଛବି ହୋଇ ଲାଗି ଚଳୁଣି ପରା !

ହଜାରିକା ପୂରାପୂରି ଆନ୍ଦୋଳନରେ ମିଶିଗଲାଣି ନା ଅଙ୍କୁର ବାକି ଅଛି, ସେ ଧୁକଧୁକଟାକୁ ରଖିବ ନା ଛାଡ଼ି ଦେବ, ଏଇ ନାଲିଦାଗର ବିସ୍ଫୋରଣରେ ମରିବ କି ବଞ୍ଚିଯିବ, ତା'ର ବିଷୟ ଅବାନ୍ତର ବୋଲି ମନେ ହେଲା । କାହିଁକନା ଦ୍ୟାପ ଅଉ ପୁରୁଷ କି ମଣିଷ ହୋଇ ନାହିଁ, ଛବି ହୋଇଗଲାଣି । ସେଇ ନିର୍ବୋଧ; କିନ୍ତୁ ନିର୍ଭୀକ, ସେଇ ହଜାରିକା । ଜୟ ଆଇ ଅହମ୍ ।

ଏଥି ମଧ୍ୟରେ ଆଉ ବନ୍ଧୁଟିର କାରବାର ଲକ୍ଷ୍ୟ କରିବାକୁ ତର ନ ଥିଲା । ତେବେ ଫେରିବା ପୂର୍ବରୁ ଆଖିରେ ପଡ଼ିଲା ସେ ଗୋଟାଏ କଣରେ ପଡ଼ିଥିବା ବେତ ମୋଡ଼ା ଉପରେ ବସିଛି ଏବଂ ନେଳିଆ କାଗଜରେ ଲେଖା ହୋଇଥିବା କୋଉ ଚିଠିକୁ ବସି ପଢୁଛି । ହଜିଲା ଧନ ମିଳି ଯାଇଛି । ସେ ଆଉ କିଛି ଦେଖିବାକୁ ଶୁଣିବାକୁ ଚାହେଁ ନାହିଁ । ଅପଦାର୍ଥ !

ଯଥାକ୍ରମେ ଭୋଜନ, ତା'ପରେ ପୁଣି ପାଖାପାଖି ଶୟନ । ରେଣୁକାକୁ ଆମ ସାଙ୍ଗରେ ଖାଇବା ପାଇଁ ଅଟକେଇ ହେଲାନାହିଁ, ତା'ର କାମ ଅଛି । ବନ୍ଧୁ ମିଳନର ଆଉ କିଛି ଆବେଗ'ର ବଖାଣିବାକୁ ନାହିଁ । କହିବାକୁ ଗଲେ ମୁଁ ସେ ଦୁହିଁଙ୍କ ସାଙ୍ଗରେ କଥାଭାଷା ହେବାର ଆବଶ୍ୟକତା ଅଛି ବୋଲି ମନେ କଲି ନାହିଁ । ଅନ୍ତତଃ ଅଜି ରାତିଟା ପାଇଁ । ଭାବିଲି ସେଢକରେ ମୋର ଅନାସ୍ଥାଭାବ ଜଣା ପଡ଼ିଯିବ ।

କହିବା ବାହୁଲ୍ୟ ଯେ ଧରଣୀ କୋଉ ଚେକିକୁ ନ ପାଇ ମରି ଯାଉଥିଲା ଓ ପାଇଗଲାରୁ ଭୋଳ ହୋଇଗଲା ମୁଁ ଅବଲମ୍ବେ ଧରି ନେଇଥିଲି । ତେଣୁ ସେ ତା'ର ଭୁଟୁଭୁଟୁକା ଆବେଗକୁ ସମ୍ଭାଳି ନ ପାରି ଯାହା କହି ପକେଇଲା, ସ୍ୱଗତ ବସିଲି ଓ ବଡ଼ବଡ଼ ହେଲା, ସେଥିରେ କଥା ଯୋଡ଼ିବାର କାରଣ ନ ଥିଲା । କହିଲା,—ମୋର ମୁଣ୍ଡ ଖରାପ । ଚିଠିଟା ବାରଣ୍ଡାରେ ପଡ଼ି ଓଦା ହୋଇ ଯାଇଥିଲା ବୋଲି ମୁଁ ତାକୁ ଭଲ ଭାବରେ ପଢ଼ି ନଥିଲି । ଶୁଖିବା ପାଇଁ ରଖି ଦେଇଥିଲି ଅର ଘରେ, ଏକଦମ୍

ଖୋଲଟାରେ, ରେଡ଼ିଓ ଉପରେ ହୁଁଃ, ମୋର ମୁଣ୍ଡ ଖରାପ ଏଣେ ଖୋଜା ହେଉଛି···। ବୋଧହୁଏ ଭାବିଥିଲ ମୁଁ ପତ୍ନୀଗତ କାହା ଛଠି ବୋଲି ଆଉ ସେ ଉତ୍ତର ନ ଦେଇ ଲଟେଇ ଯିବ, ଅପୂର୍ବ ପ୍ରେମର ପରାକାଷ୍ଠା ଦେଖେଇବ; କିନ୍ତୁ ମୁଁ ହାରିବ ରହିଲି। ମୁଁ ତୋର ସୁବଳ କି ସୁଦାମ ନୁହେଁ।

ପ୍ରେମ ! ପତ୍ନୀ ସାଙ୍ଗରେ ପ୍ରେମ ! ଦରବୁଢ଼ୀ କାଳୀ ମାଷ୍ଟରାଣୀ ସାଙ୍ଗରେ। ପ୍ରଥମା ସାଙ୍ଗରେ, ଦ୍ୱିତୀୟା ସାଙ୍ଗରେ ମଧ୍ୟ ସେମିତିକା ଭାବ ଦେଖେଇ ହେଉଥିଲୁ। ଗୋଟିକ ପରେ ଗୋଟିଏ ଏକ-ଦୁଇ ତିନି ସବୁ ପ୍ରେମ ! ଅସଲ କଥା ହେଉଛି ତୋର ପୁରୁଷତ୍ୱ ବୋଲି କିଛି ନାହିଁ, ଜିଣିବାର ଅଧିକାର କରିବାର କ୍ଷମତା ନାହିଁ। ସେକ୍ସ ଥାଇ ମଧ୍ୟ ନଥିଲା ପରା। ସେଇ ଲାଗି ଏଇ ଶରଣାପନ୍ନ ଅଭ୍ୟାସ, ମୋତେ ନିଅ, ମୋତେ ନିଅ, ତୁମେ ମୋର ସ୍ତ୍ରୀ, ମୁଁ ତୁମକୁ ଭଲପାଏ ··

ଆଃ ! ଥରେ ପଢ଼ିଲୁ, ଦି'ଥର ପଢ଼ିଲୁ, ଆଉ କେତେଥର ପଢ଼ିବୁ ? ଅଶୃଘ୍ର ହେଲା ଯେତେବେଳେ ସେ ତାକୁ ଶୋଇବା ଶେଯରେ ଶେଷଥର ପାଇଁ ପଢ଼ିଲା, ଭାଙ୍ଗିଭୁଙ୍ଗି ପକେଟରେ ରଖିଲି ଓ ଆଖି ବୁଜିଦେଲି। ଏଥର ଆଉ କଅଣ ? ପୁଣି ସୁରୁ ହୋଇଯାଉ ଘଙ୍ଗୁଡ଼ି, ସୁଖ ନିଦ୍ରାର ସଙ୍ଗୀତ !

ଅପର ବନ୍ଧୁ ପୁଣି ଗ୍ରୁପକୁ, ଅଦୃଶ୍ୟ ବୁଢ଼ିଆଣୀକୁ ଅନେଇବ, ସ୍ୱପ୍ନ ସଚରେଇବାର ବାଟ ଖୋଜିବ ବୋଲି ମଧ୍ୟ ମୋର ମନେ ହେଲା ନାହିଁ ସେ ଆଖି ବୁଜି ନାହିଁ ସିନା, ଶୀଘ୍ର ବୁଜି ଆସିବ। ମୋ ଆଡ଼କୁ ଅନେଇଛି ଏଇକ୍ଷଣି, ହେଲେ ମୋତେ ଦେଖୁନାହିଁ। ଦୂରକୁ ଅନେକ ଦୂରକୁ ଚାହିଁଛି, ଛବିର ନିର୍ନିମେଷ ଚରିତ୍ରମାନେ ଯେମିତି ଚାହିଁଥାଆନ୍ତି....ସେତିକି ଦୂର ଶେଷରେ ନିଃଶେଷ ଅଛି, ପ୍ରେମରୁ ବଳି ମାୟା, ଆ' ଆ' ବୋଲି ହାତ ବଢ଼େଇଛି। କହୁଛି, ତୁ ତ ଦେଖି ପାରିଲୁଣି ମୋତେ, ମୁଁ ଆଉ ଲୁଚିବି କେଉଁଠି ? ଏମିତି ଚାହିଁ ରହିଲେ ଆଖି ଦି'ଟା କେତେବେଳେ ଯାଏଁ ଚେଇଁ ପାରିବ ?

ଦି'ଜଣ ଯାକ ଶୋଇ ପଡ଼ିଲେ ମୋ ସାଙ୍ଗରେ କଥା ନକହି। ଅବଶ୍ୟ ମୁଁ ତାଙ୍କୁ ଦୋଷ ଦେଉ ନାହିଁ, କାରଣ ଅନେକବେଳ ହେଲା ମୁଁ ବି ତାଙ୍କ ସାଙ୍ଗରେ ପାଟି ଫିଟେଇ ନାହିଁ।

ଜାଣିଛି ଆପଣମାନେ ମନେ ମନେ ହସୁଛନ୍ତି ଯେ ମୋର ଅନୁମାନ ଦି' କଡ଼ାର ନୁହେଁ। ମୁଁ ତୁଚ୍ଛାକୁ ରବେଇ ଫବେଇ ହେଉଛି। ପୃଥ ମୋର କଡ଼ାଏ ଖାଇଲି, କିନ୍ତୁ ମାନିବାକୁ ଚାହେଁ ନାହିଁ। ଆଚ୍ଛା, କେତେ ସହରରେ ବନ୍ଧୁମାନଙ୍କ ହାତକୁ ମନକୁ ଛୁଇଁବାକୁ ବସିଥିଲି······

ବନ୍ଦ କରନ୍ତୁ ! ସେମାନେ ପାଗଳ, ମାଇଚିଆ ବୋଲି ମୂଳରୁ ଜଣା ଥିଲା; କିନ୍ତୁ ମୁଁ କେମିତି ଭାବ ପାଉ ଥାଆନ୍ତି ଯେ ପାଗଳାମି ଏତେ ବଢ଼ିଯିବ, ଆଉ

ଆମର ଚହର ଶୋଭା ଦେଖେଇବ ? ପୁଣି ମାଇଚଅସି ଏମିତି ଅଳଜୁକ ଢଙ୍ଗ ଭରିବ ଯେ ପ୍ରେମ ପରି ଢଳିବ ।

ନାଇଁ ନାଇଁ, ମୁଁ ମାନିବି ନାହିଁ । ମୁଁ କୋଉ ଅଦେଖା କୁଦେଖା ଅଧମ୍ କି ଆନର ଭକ୍ତ ହୋଇ ପାରିବି ନାହିଁ । ମୁଁ ନିର୍ମଳ୍ । ମୁଁ ନିଜ ହାତରେ ଚଉଦ ପା' ହେଇଛି, ହେବି । ମୋର ନିଜତ୍ୱ ମାନେ ପୁରୁଷତ୍ୱ ଅଛି ମୁଁ ନିଜ ବିଦ୍ୟା ବୁଦ୍ଧି ବଳରେ ଏଡ଼େ ବଡ଼ ସଙ୍ଖ୍ୟରଣାପ୍ତ କମ୍ପାନୀ ଚଳିକା ବିଲଡ଼ର୍ସ ଓ କଣ୍ଟ୍ରାକ୍ଟର୍ସର ମାଲିକ ହୋଇଛି । ଏଥର ଦେଖ, ପ୍ରବଳ ପ୍ରତିଯୋଗିତା ସତ୍ତ୍ୱେ ମୁଁ ଆସାମ ସରକାରଙ୍କଠାରୁ କଣ୍ଟ୍ରାକ୍ଟ ନେଇ ପାରିଲି, ତାଙ୍କ ସ୍ପେଶାଲ ସିକ୍ୟୁରିଟି ଦଳଙ୍କ ପାଇଁ ସ୍ପେଶାଲ୍ କ୍ୱାର୍ଟର୍ସ, ଯାହା ଭିତରୁ ବୋମା କିମ୍ବା ବିପ୍ଳବର ବାପ ଯାଇ ପାରିବ ନାହିଁ । ବାରବରି ଜଣି ନାହିଁ, ତାଙ୍କ ପିଲାଲିଆ ଶିନିଛକ ଫୁଃ କିନି ଉଡ଼ିଯିବ । ତା ଛଡ଼ା—ହଁ, ତା' ଛଡ଼ା ମୋର ଯଥାଯୋଗ୍ୟ ସ୍ତ୍ରୀ ପରିବାର ଅଛି । ମୋ'ର ସେକ୍ସ ଘରକାମ ତୁଲେଇ ଆପଣା ସୁଖ କରୁଛି, କରିବ । ମୋର ଧନ ଘରକାମ ସାରି—।

ଥାଉ । ମୋର କାହାରିକୁ ସଫେଇ ଦେବା ଦରକାର ନାହିଁ; କିନ୍ତୁ ମୁଁ ସ୍ୱତିସ'ସ୍ୱ ଶୋଇବି ନାହିଁ । ତାଙ୍କ ପ୍ରଶାନ୍ତିକୁ, ଲିବିଧିକାମ ଅଧମର ବଢ଼େଇବୁ ସେଇ ମୋର ଉତ୍ତର । ଝରକାର ପରଦାଟା ଫଡ଼ଫଡ଼ ହେଉ ନାହିଁ ଏଇକ୍ଷଣି, ଚୁପ୍‌ଚାପ ହୋଇ ପଡ଼ିଛି । ବାହାର ପୃଥିବୀ ଦେଖା ଯାଉନାହିଁ; କିନ୍ତୁ ମୁଁ ତାକୁ କହିଲି ଖୋଲି ଯା' ମୁ ଦେଖିବି । ମୋର ସେଇ 'ଗ୍ରହମାନଙ୍କ, ଭୂତମାନଙ୍କୁ । ଦେଖୁଥିବି ବସି ।

ହେଲେ ବର୍ଷା ଛାଡ଼ିଗଲା ପରେ ଟିଣ ଛାତ ଉପରେ ପୁଣି ପଡ଼ୁଥାଏ ଟୁପ୍, ଟୁପ୍ ଟୁପ୍ । ମୋତେ ଫୁସୁଲଉ ଥାଏ, ସ୍ୱରସଙ୍ଗୀତରେ ସୁଅଗ ଦେଖାଉଥାଏ । ଜନ୍ମ ନକଲି ମାଆ ପରି ।

ଯାହାହେଉ ତା' ପରିଦିନ ସକାଳେ ମୁଁ ଝାଡ଼ିଝୁଡ଼ି ହୋଇ ଉଠିଲି । ମୋର ସମ୍ପୂର୍ଣ୍ଣ ଓ ସ୍ୱାଭାବିକ ତେଜ ନେଇ ଉଠିଲି, ସେଥିରେ ବିକୃତିର ସତ୍ତା ନଥିଲା । ଏଇଥିରୁ ବୁଝିବେ, ମୁଁ ସ୍ଥିର କଲି ଯେ ହଜାରିକା ରେଣୁକା ବିଷୟରେ ମୁଁ ସରକାର ଘରେ କି ଆଉ କାହା ଆଗରେ କିଛି ହେଲେ କହିବି ନାହିଁ ବରଂ ମୁଁ ପ୍ରାର୍ଥନା କଲି ଯେ ଧରଣୀର ତୃଷ୍ଣାପ୍ତା ସ୍ତ୍ରୀ ବିଧବା ହେଉ ପଛେ ତାକୁ ଛାଡ଼ିକରି ନ ଯାଉ; କିନ୍ତୁ ଆଜିକାଲି ଖାଲି ଗୋଟିଏ କଥା ବାରମ୍ବାର ମନକୁ ଆସେ । ସାବଧାନ, ମୋତେ ହସିବେ ନାହିଁ । ସେଦିନ ରାତିରେ ତାଙ୍କ ଯାହା କିଛି ଅଧିକା ମିଳିଲା ସେଥିରେ କଣ ମୋର ଯତ୍‌ସାମାନ୍ୟ ହାତ ନଥିଲା ? ●

# କେବଳ କୁକୁର

ଷ୍ଟପ୍ ! ଷ୍ଟପ୍ !! ଷ୍ଟପ୍ !!!

ବୈଷ୍ଣବବାବୁ ସ୍ୱରକୁ ଅଧିକ ଆହୁରି ଉଚ୍ଚେଇଲେ, ଛଣକରେ ଗଳା ଫାଟି ଯିବ ବୋ'ଲି ମନେ ହେଲା ଏବଂ ଗ୍ରେଟିଆ ବୁମା କୁକୁରଟାକୁ ତା'ର କ୍ୟାଉଁ କ୍ୟାଉଁ ବନ୍ଦ କରିବାକୁ କହିଲେ; କିନ୍ତୁ ଟିମ୍ମି କେଉଁ ଭୂତ ଦେଖିଥିଲା କେଜାଣି, ବଗିଚାର କଦଳୀ ବଣ ଉଦ୍ଦେଶ୍ୟରେ ଭୁକିବାକୁ ଲାଗିଲା । ମାଲିକଙ୍କ ଚିତ୍କାର ପ୍ରବଳ ହେଲାରୁ ତାଙ୍କ ଆଡ଼କୁ ବଲ ବଲ ହୋଇ ଅନାଉଥାଏ, ତା'ପରେ ପୁଣି ତା'ର କାନ୍ଦୁରା ଅଥଚ ଧାରୁଆ ବକ୍ତବ୍ୟ ଆରମ୍ଭ କରି ଦେଉଥାଏ । ହ୍ୟାପ ଏଡ଼୍‌ଟାଏ ହେଲାଣି, ମଣିଷଙ୍କ ପରି (ମାନେ କୁକୁରଙ୍କ ପରି) ଭୁକୁ ନାହିଁ କାହିଁକି ? ଏମିତିକା ମାଇଚଥ କ୍ୟାଉଁ କ୍ୟାଉଁ କାନରେ ଗଳି ଯାଉଛି, ମଚିଆ କାଳୁ ଅସବା ପିଲାଗୁଡ଼ାକ ପେଟିତ ପାଟି କରି ଉଠନ୍ତି···ବୈଷ୍ଣବବାବୁ ଆଉ ସମ୍ଭାଳି ପାରିଲେ ନାହିଁ ।

ବୈଷ୍ଣବବାବୁ ବାଡ଼ି ଖୋଜିଲେ ! ଭାଗ୍ୟ ଭଲ, ଘର ନୁହେଁ ବାରିଆଡ଼ ! ତେଣୁ ଅନାୟାସରେ ଗଛ ଡାଳ ଖଣ୍ଡେ ମିଳିଗଲା । ନହେଲେ ମାରଣାତ୍ମକ ଛଡ଼ି ଠେଙ୍ଗା ଆଉ ହାତକୁ ଆସି ଆସନ୍ତା ଏବଂ ସେ ଟିଂପାକୁ ପିଟିବାକୁ ଲାଗିଲେ ।

ତାଙ୍କ ପିଟିବାର ଦୃଶ୍ୟକୁ ଦେଖି ବସିଲେ ଜଣା ପଡ଼ନ୍ତା ଯେ ତାଙ୍କ ମୁହଁର ମାଂସପେଶୀ ଯେପରି ଭାବରେ ବ୍ୟଥିତ, କୁଞ୍ଚିତ, ଆନ୍ଦୋଳିତ ହୋଇ ଉଠୁଛି, ହାତରେ ବାଡ଼ି ସେହି ଅନୁପାତରେ କାମ କରୁନାହିଁ । ଟିମ୍ମାର ପିଠିଯାଏ ନ ପହଞ୍ଚୁଣୁ ଅଟକି ଯାଉଛି । ଯେମିତିକି ସେ ଆଶାନୁରୂପ ତାଳ ପାରୁ ନାହାନ୍ତି, ତେଣୁ ଆହୁରି ବ୍ୟସ୍ତ ହୋଇ ଉଠୁଛନ୍ତି, ଫଳରେ ଶକ୍ତି ଘାବରେଇ ଯାଉଛି । ଟିମ୍ମା ନିଜକୁ ଖସେଇ ନେଇଛି । ଖଣ୍ଡେ ଦୂରକୁ ଯାଇ "ଇସ୍ କଣ କଲ ?" ଏହି ଭାବରେ ମାଲିକ ଆଡ଼କୁ ଚାହିଁଟାଏ ବିଲମ୍ବିତ ଭ୍ୟା-ଉଁ-ଉଁ ପେଶି ଦେଇଛି । ତହୁଁ ମାଲିକ ତା' ପଛେ ପଛେ ଗୋଡ଼େଇ ପୁଣି ଥରେ···

ବୁଢ଼ୀ ରାଧାମଣି ଦେଈ ଏହି ସମୟରେ ନଇଁ ନଇଁ ବାରିଆଡ଼କୁ ଆସୁ-ଥିଲେ । ଦରବୁଢ଼ା ବଡ଼ ପୁଅର କୁକୁରକୁ ପିଟିବାର ଦୃଶ୍ୟ ତାଙ୍କ ଆଖିରେ ପଡ଼ି

ନଥିଲା । ପଢ଼ିଥିଲେ ମଧ୍ୟ ସେ ବସ୍ତୁରେ ଥାଆନ୍ତେ ଯେ ତାଙ୍କ ପୁଅର କିଛି ଅବାଗୁଣ ନାହିଁ, ଥାଇ ନପାରେ । ଆମ ବାବୁନ ଅତି ଦୟାଳୁ, ସେମିତି, ସେଇଥିପାଇଁ ଖଚଡ଼ା କୁକୁରଟା ତା'କୁ ଏମିତି ହଇରାଣ କଲା ।

ବୋଉକୁ ଆସିବାର ଦେଖି ବୈଷ୍ଣବବାବୁଙ୍କ ହାତରୁ ବାଡ଼ି ଖସି ପଡ଼ିଲା । ଖସି ପଡ଼ିବାର କୌଣସି କାରଣ ନାହିଁ, ଏହି ଭାବରେ ସେ ବାଡ଼ିକୁ ଉଠେଇ ନେଲେ; କିନ୍ତୁ ତାଙ୍କ ମୁହଁର ଯାବତୀୟ ବକ୍ରବିକୃତ ରେଖା ମଧ୍ୟ ସଳଖି ଗଲା । ଚେହେରା ପୁଣି ସୌମ୍ୟରୂପ ଧାରଣ କଲା । ରବର୍ ବଲ୍ ଭଳି ଗ୍ରୁଏଁ ଗ୍ରୁଏଁ ଆପଣା ଅବସ୍ଥାକୁ ଫେରି ଆସିଲା । ହେଲେ ସେ ମନକୁ ମନ କହିଲେ—ଯାଉ, ବୋଉ ଆସିଲେ ଆସୁ, ସେଇଥି ପାଇଁ କଣ ମୁଁ ଟିମ୍ମୀକୁ ଛାଡ଼ିଦେବି ? ଅବଶ୍ୟ ପୁଅ ବୋଲି, ବଡ଼ପୁଅ ବୋଲି ସେ ମୋତେ ଟିକିଏ ବେଶି ପ୍ରଶଂସା କରେ, କେତେବେଳେ ରାମଚନ୍ଦ୍ର, କେତେବେଳେ ହରିଶ୍ଚନ୍ଦ୍ର, ଅବା ଗାନ୍ଧିଜୀଙ୍କ ସାଙ୍ଗରେ ତୁଳନା କରେ । ବୋଉ ନିହାତି ନରମପନ୍ଥୀ, ନିହାତି ସେଣ୍ଟିମେଣ୍ଟାଲ, ଆଗକାଳିଆ ଲୋକ । ବୋଉ ସବୁବେଳେ ବୋଉ । ତା' ବୋଲି ବୋଉ ସାମନାରେ ଟିମ୍ମୀକୁ ପିଟିବି ନାହିଁ, ଏଭଳି ପ୍ରଶ୍ନ ଆସୁଛି କାହିଁକି ? କଥା ହେଉଛି କୁକୁରଟା ବହୁତ ମାଡ଼ ଖାଇଲାଣି । ସବୁଥିର ଗୋଟାଏ ସୀମା ଅଛି । ଦେଖୁନା ବୋକାଙ୍କୁଆ କେମିତି ଅନେଇଛି ମୋ ଆଡ଼କୁ ? ସତେକି ସେ ମୋତେ ଦୟା ଦେଖାଉଛି !

ବୈଷ୍ଣବବାବୁ ହିଁ ହିଁ ହସ ହସିଲେ । ଅର୍ଥାତ୍ ତାଙ୍କର ପୂରିଲା ଓଠ ଇଷତ୍ ଲମ୍ବି ଗଲା । ନରମ ଗୁହାଣୀ ଆହୁରି ନଇଁ ଆସିଲା । ଫୁଲୁକା ଗାଲ ହନୁହାଡ଼ ପାଖରେ ଘୁଟେଲେଇଗଲା ଏବଂ ସ୍ୱକୀୟ ସ୍ୱରୂପକୁ ଉତ୍ତମ ଭାବରେ ଅନୁଭବ କଲା ପରି ସେ ଧୀର ନିଃଶ୍ୱାସ ନେବାକୁ ଲାଗିଲେ, ତଥା ଧୀରେ ଧୀରେ ତାଙ୍କର ପଶ୍ଚାଦ୍‌ଗାମୀ ଚକ୍ଷୁକୁ ସାଉଁଳେଇଲେ ।

ରାଧାମଣି ଦେଈ ଏଇ ମାସେ ହେଲା ବଡ଼ ପୁଅ ପାଖରେ ଆସି ଅଛନ୍ତି । ସ୍ୱାମୀଙ୍କର ମୃତ୍ୟୁପରେ ସେ ଖାଲି ମୁଢାବକ ତାଙ୍କ ପୁଅ ତିନିଙ୍କ ପାଖରେ ପାଳି କରି ରହୁଛନ୍ତି । ବଡ଼ପୁଅର ପାଳି ବେଳେ ବେଳେ କଟିଯାଏ । କାହିଁକିନା ତା'ର କୋଉ ଭୁଇଁଖୋଳା (କଏଲକଷ୍ଟ୍) କାମ କେଜାଣି, ସେ ମାସ ମାସ ଧରି ଅନ୍ତର୍ଦ୍ଧାନ ହୋଇଯାଏ । ତା'ଛଡ଼ା ବୋହୂ ସ୍କୁଲରେ ପାଠ ପଢ଼ାଏ । ତା'ଛଡ଼ା... । ମୋଟ ଉପରେ ଆମ ବାବୁନଟା ନିହାତି ଅଘୋରି । ବାବାଜୀ ! ଏହି ଭାବରେ ରାଧାମଣି ଦେଈ ନିଜକୁ ଓ ପୁଅକୁ କ୍ଷମା କରି ଦିଅନ୍ତି । ଅଗତ୍ୟା ମାସ ମାସ ଧରି ଆର ପୁଅ ପାପୁନ ଏବଂ ବାବା ହେଲା ତିନି ମାମୁନ ପାଖରେ ରହନ୍ତି । ସେମାନଙ୍କ ଭିତରୁ ହୁଏତ ଜଣେ ଅଧେଙ୍କ ପାଖରେ ଅପେକ୍ଷାକୃତ ବେଶିଦିନ ରହି ହୋଇଯାଏ । ଧରି

ମାମୁଁଙ୍କର ଝିଅ ଯେତେବେଳେ ବଡ଼ହେଲା, ଦୁର୍ବଳିଆ ବୁଢ଼ୁଗୁଡ଼ିଆ ମାମୁଁଙ୍କୁ ଦମ୍ଭ ଦେବା ପାଇଁ ଆହୁରି କିଛି ଦିନ ରହିବାକୁ ପଡ଼ିଲା; କମ୍ପା ପାପୁନିର ପୁଅ କେଉଁ ଖେଳରେ ମେଡ଼ାଲ ପାଇବାକୁ ଥିଲା, ଆଉ ପାପୁନି କହିଲା—ବୋଉ ଦେଖ ରୂପଦ ଯେତେବେଳକୁ ମୋ ପାଖରେ ନଥାଉ ମୁଁ ତୋ' ସାଙ୍ଗରେ ପାର୍ଟି ଫିଟେଇବି ନାହିଁ, ମୋଟେ ପାର୍ଟି ଫିଟେଇବି ନାହିଁ, କହି ମୋତେ ଦୁଇ ହାତରେ ଟେକି ଧରି ଏମିତି ଘୂରେଇଲା ଯେ ଘୂରେଇଲା···ବୁଢ଼ି ଚଗଲିଟାଏ ! ପିଲାଦିନୁ ସେମିତି ।

ନଈଁ ନଈଁ ଆସିବାକୁ ପଡ଼ିଲେ ମଧ୍ୟ ରାଧାମଣି ଦେଈ ବେଶ୍ ଦ୍ରୁତଗତିରେ ଚାଲନ୍ତି । ତେବେ ଲକ୍ଷ୍ୟସ୍ଥଳରେ ପହଞ୍ଚିଲା ପରେ ଥକା ହୋଇ ବସି ପଡ଼ନ୍ତି । ଉପସ୍ଥିତ ଲୋକବିଶେଷଙ୍କ ଦୟା ସହାନୁଭୂତିର ପରୁଆ ନକରି ଧଇଁ ପେଲନ୍ତି । ମନେ ହେବ ସେ ଜଣେଇବାକୁ ଚାହାନ୍ତି ଯେ ବୁଢ଼ୀ ହେଲେ କଣ ହେଲା, ମୋର ଅଧିକାର ଅଛି ଡ଼ଗଡ଼ଗ ହୋଇ ଚାଲିବି, ଟିକିଏ ସଁଅ ସଁଅ ହେବି; କିନ୍ତୁ ଲୋକବିଶେଷଙ୍କ ମନରେ ଆସେ ଯେ ବୁଢ଼ୀ ମୋ ପାଇଁ ବୋଧହୁଏ ଏତେ କଷ୍ଟ କଲେ । ଅକାରଣରେ ଦୋଷ କଲା ପରି ଲାଗେ । ହେଲେ କିଛି କରି ହୁଏ ନାହିଁ । କଣ ବା କରି ହୁଅନ୍ତା ? ଗୁରିଫୁଟିଆ ଚେହେରା ହେଉ ନା ଙ.ଧିକ, ସ୍ୱର୍ଗତ ସ୍ୱନାମଧନ୍ୟ ଓକିଲ ତଥା ତୁଙ୍ଗ ସାମାଜିକ ନରହରି ମହାନ୍ତିଙ୍କ ପୃଷ୍ଟ ପୃଥୁଳା ଏବଂ ସୁସଂପନ୍ନା ବିଧବାଙ୍କୁ କାହାର ସାହସ ଅଛି ଅସହାୟ ବୋଲି ମଣିବ ? ଆଗେଇ ଯାଇ ହାତ ଧରି ପକେଇବ ?

ତେବେ ବୈଷ୍ଣବ ମହାନ୍ତି ତାଙ୍କର ବଡ଼ପୁଅ, ଲୋକବିଶେଷ ନୁହନ୍ତି । ସେ ସାକ୍ଷୀଗୋପାଳ ପରି ଠିଆ ହୋଇ ନ ରହି ଖଣ୍ଡେ ବାଟ ଆଗେଇ ଯାଇପାରି ନଥାନ୍ତେ ? ଟିକିଏ ହସ ନ ହସି ପଦେ ଅଧେ ମିଠା କଥା କହି (ଅବା କହିଲା ପରି ହୋଇ) ବୋଉଙ୍କୁ ନିଜ ଦେହରେ ଆଉଜେଇ ଦେଇ ପାରି ନଥାନ୍ତେ ? ସନ୍ତର୍ପଣରେ ବସେଇ ଦେଇ ପାରି ନଥାନ୍ତେ ? କିନ୍ତୁ ବୈଷ୍ଣବବାବୁ ସେ ଢଗରେ ଚଳେ ମାତ୍ର ଉଦ୍ୟତ ହେବାର ଦେଖାଗଲା ନାହିଁ । ଯେହେତୁ ତାଙ୍କର ମତ ଯେ ଯେଝା ଯେଝାର ଧର୍ମ କରିଯାଆନ୍ତୁ, ସେଥିରେ ବ୍ୟତିକ୍ରମ ଘଟାଇବା ଅନ୍ୟାୟ । ଆଜି ନୂଆ ନୁହେଁ । ବୋଉ ଏମିତି ଆସେ । ଆଉ ମୁଁ ସ୍ୱାଗତ ଜଣାଏ । ମୁଁ କଣ ପାପୁନି ହୋଇଛି କି ବୋଉକୁ ଧରି ଥେଇ ଥେଇ ହୋଇ ନାଚିବି ?

ବଡ଼ପୁଅ ବାବୁନି ଉଚ୍ଛୃଙ୍ଖଳ ନୁହେଁ । କେଉଁ କଥାରେ ହମହମ ହୁଏ ନାହିଁ । ଚାଳି ଉଠେ ନାହିଁ । ଖାଙ୍କି ପଡ଼େ ନାହିଁ । ହେଲେ ସ୍ନେହ, ଦୟା, କ୍ଷମା, ଆଦି ଯେତେକ ଭଲଗୁଣ ତା'ଠାରେ ଖୁନ୍ଦି ହୋଇଅଛି ଏ କଥା କିଏ ନ ଜାଣେ

ହୋଇଥିବାରୁ ଆରମ୍ଭ କରି ବାକୀ ସମସ୍ତେ । ଏ ବିଷୟରେ ମୋତେ ତାର ପ୍ରମାଣ ପରିଚୟ ଦେବାକୁ ପଡ଼ିବ ନାହିଁ ।

କିନ୍ତୁ ରାଧାମଣି ଦେଇ ନାଥିକାନ୍ତ ଗୋଟାଏ ଅନାବନା ପଥର ଉପରେ ବସିପଡ଼ିଲା ପରେ (ଏବଂ ଧଇଁ ପେଲିଲା ପରେ) ତାଙ୍କ ସଦ୍ୟ ପାନଖିଆ ଓଠରେ କଉଳି ଏକ ପରସତା ଫୁଟି ଉଠିଲା, ଗାଲର ଚେନାଏ ସକାଳିଆଁ ହୋଇ ଢୁଲୁ-ମାରିଆ ଦିଶିଲା, ଅବା ଝୁଲୁଝୁଲିଆ ପବନ ହେତୁ ତାଙ୍କ ଖୋଲା ବାହୁର ରୋମାଞ୍ଚ କୁନୁମୁନିଆ ଦେଖାଗଲା, ବୈଷ୍ଣବବାବୁଙ୍କ ମନରେ ହଠାତ୍ ଗୋଟାଏ ଅସ୍ୱାଭାବିକ, କହିବାକୁ ଗଲେ ଲଜ୍ଜାଜନକ, ଇଚ୍ଛା ଉଦୟ ହେଲା । ସେ ମୋ ବୋଉ । ଝିଅ ଶ୍ୟ ଶ୍ରେଷ୍ଠ, ପିଲାଦିନର ବୋଉ । ମୋର ଚରମ ଇମେଜ୍ ଇତ୍ୟାଦି ଚୁଲିକୁ ଯାଉ, ମୋର ଅଧିକାର ଅଛି, ଅବଶ୍ୟ ଅଧିକାର ଅଛି, ତା'କୋଳରେ ଲେପ୍‌ଟେଇ ପଡ଼ିବ । ମନେ ମନେ କହିବ, ମୁଁ ଦୁଦୁ ଖାଇବି' ମୁଁ ପିଲା ହୋଇଯିବି । ଆଉ କିଛି ଭାବିବାକୁ ନ ଥିବ, ଡରିବାକୁ ନଥିବ, ଖାଲି ଦୁଦୁ ଖାଇବ । ଆଉ ଅଧାଖିଆରୁ ତା' ମୁହଁକୁ ଜୁଳୁଜୁଳୁ ହୋଇ ଅନେଇବ । ବାସ୍ତବରେ ଏମିତି ହୋଇ ନ ଥିଲା ବୋଲି କୁହି ନାହିଁ । ଶୁଣିଛି, ଜାଣିଛି, ଯେ ମୁଁ ଜନ୍ମ ହେଲା ପରେ ପରେ ତା'ର ଅନହିଁ ହୋଇ ଥିଲା, ଆଉ ମୋତେ କେଉ ମାଧିଆ ମାଆ ...କିନ୍ତୁ ମୁଁ କଣ ମୋଟେ ତା' କୋଳକୁ ଫେରି ଯାଇ ନାହିଁ ? ପାପୁନି, ମାମୁନି, ପୃଥିବୀର ଯାବତ ପିଲା ତାଙ୍କ ମାଆ ପାଖରୁ ଯାହା ପାଇଛନ୍ତି, ମୁଁ କଣ ସେଥିରୁ କିଛି ପାଇ ନାହିଁ ? ବାଜେ କଥା । ତା ହୋଇଥିଲେ ମୋର ମନେ ପଡ଼ୁଛି କେମିତି ?

ହଁ, ମନେ ପଡ଼ୁଛି । ମୋ ବେଳକୁ ବୋଉ ଅଳ୍ପ ବୟସୀ ଥିଲା । ମୁହଁ ଏତେବଡ଼ ଦିଶୁ ନଥିଲା, ଚମ ଓହଳି ଯାଇ ନ ଥିଲା, ନାକରେ ନାକମାଛି ନାଇ ଥିଲା । ମୁଁ ତା'ର ସେବେକା ଫଟ ଦେଖିଛି । ଉଇଖିଆ ହୋଇ କୁଆଡ଼େ ଗଲାଣି ସେ ଫଟ, ଆଉ କେହି ଦେଖି ନାହାନ୍ତି କି ଦେଖିବାକୁ ମନେ କରି ନାହାନ୍ତି । ଛବି କଥା ଛାଡ଼, ବଡ଼ ପୁଅ ହେଲାରୁ ମୁଁ ଯୋଉ ସବୁ ଦୃଶ୍ୟ ଦେଖିଛି, ଆଉ କୋଉ ଭାଇଭଉଣୀଙ୍କ ଆଖିରେ ପଡ଼ିଥିବ ? ବାପାଙ୍କ ପ୍ରଥମ ପ୍ରେମ । ଗୋଟି ତଳୁପାତଳୀ ରାଧିକା, ଚଞ୍ଚଳୀ, ଚୁନ୍‌ମୁନ୍ ପ୍ରଭୃ ପ୍ରେମ । ଓଃ, କେତେ ଗେହ୍ଲା ନାଆଁରେ ଡାକୁ ନ ଥିଲେ ବୋହୁକୁ ? ମୁଁ ମନରୁ ଫାନ୍ଦ କହୁନାହିଁ, ଇଏ ମୋର କଳ୍ପନା ନୁହେଁ···

ମୋର ମନେ ପଡ଼ୁଛି ମୁଁ ଗୋଟାଏ ହାତରେ ତା'ର ନାକମାଛି (କମ୍ପା ଢାନଫୁଲ) ସାଙ୍ଗରେ ଖେଳୁଥିଲି, ଆର ହାତରେ ମୋର ପ୍ରାପ୍ୟ ବସ୍ତୁଟିକୁ ମୁଠେଇ ଧରି ଚୁଚୁମୁଥିଲି, ଏହି ସମୟରେ ବାପା ଆସିଲେ । ଖଟର ଆର ପାଖକୁ ଗୁଞ୍ଜିଯାଇ ମୁଁ ଯାହା କରୁଥିଲି···

ଦରବୁଢ଼ା ବୈଷ୍ଣବବାବୁଙ୍କ ପରିମ୍ଳିତ ବଦନ ରଙ୍ଗା ହୋଇ ଉଠିଲା କି ନାହିଁ ନିରୂପଣ କରିବା ଦୁଷ୍କର, କାହିଁକିନା ସେ ନୂଆ ଦେଖିଲା ପରି ଆକାଶରେ ଉଠେଇ ଥିବା ମେଘ ଆଡ଼କୁ ଚାହିଁଲେ ଓ ଗୋଟାଏ ବିଶେଷ ସମ୍ବାଦ ଶୁଣାଇବା ଆବେଗରେ କହିଲେ—"ବୋଉ ଦେଖିଲୁଣି ଆକାଶରେ କେମିତି ମେଘ ଉଠେଇଲାଣି। ଆଜି କଣ ଆମେ ଅମ୍ବିକାଙ୍କ ପାଖକୁ ଯାଇ ପାରିବା ?"

ରାଧାମଣି ଦେଈ ଘାସ ଉପରେ ନ ବସି ଆବୁଡ଼ା ଖାବୁଡ଼ା ପଥର ଉପରେ ବସିବାକୁ ବାଧ୍ୟ ହୋଇଥିଲେ, କାରଣ ସେ ତଳେ ବସିବାକୁ ଚାହାନ୍ତି ନାହିଁ, ବସିଲେ ଉଠିବା କଷ୍ଟ। ଅଣ୍ଟୁ ଗଣ୍ଠି ବାତ। ଏଇଥିରୁ ଅନୁମେୟ ଯେ ସେ ପୁଅ ସାଙ୍ଗରେ କିଛି ଜରୁରି କଥାଭାଷା ହେବାକୁ ଆସିଥିଲେ। ପୁଅ ଦେଖାଦେଖି ସେ ମଧ୍ୟ ଆକାଶକୁ ଅନେଇଲେ; କିନ୍ତୁ ବର୍ତ୍ତମାନ ପାଇଁ ମେଘ କିମ୍ବା ଅମ୍ବିକା ଠାକୁରାଣୀଙ୍କ ସହିତ ତାଙ୍କର କୌଣସି ସମ୍ପର୍କ ନାହିଁ ବୋଲି ମନେ ହେଲା। ବରଂ ସେ ଯାହା କହିବାକୁ ଆସିଥିଲେ, ସେଥିରେ କିଛି ବିଳମ୍ବ ଘଟିଲା।

ଇତ୍ୟବସରେ ବୈଷ୍ଣବବାବୁ ତଳୁଟାରେ ବୋଉଙ୍କ ପାଖରେ ବସି ପଡ଼ିଲେ। ବଢ଼ିଲା ମେଘର ଛାଇ ଭୂଇଁର ଏଇ ଅଂଶକ ବେଶି ଶୀତଳେଇ ଦେଇଛି, କାଙ୍କୁଡ଼ ଗାଡ଼ର କେଉଁ ଗହ୍ୱରରେ ପଶିଥିବା କଣ୍ଟି କାକୁଡ଼ ମୋତେ ହଙ୍କି ମାରୁଛି, ଚିଂପା କେତେ ସୁନ୍ଦର ସୁନାପିଲା ପରି ଚୁପ୍ ହୋଇଗଲାଣି, ମୋ ବଗିଚା ଫୁଲ-ଫଳରେ ଭରିଯିବ, ମୋର ଛୋଟିଆ ବଙ୍ଗଳା ଓ ବଗିଚା ଥିବ, ଅନେକ ଧନ ରହିବ, ଆଉ ବୋଉ ମୋ ପାଖରେ ରହିବ, ଅମ୍ବିକା ଦେବୀଙ୍କୁ ଦେଖିବା ପାଇଁ ରହିବ, ନିତ୍ୟଗୋପାଳଙ୍କୁ ଦେଖିବା ପାଇଁ ରହିବ—ଇତ୍ୟାଦି ଭାବଭାବନାକୁ ନେଇ ଏକ ନୂଆ ପାଇବାର ସୁଖ ତାଙ୍କ ମନକୁ ଆସିଲା ଏବଂ ସେ ତାକୁ ଧରି ରଖିବାକୁ ଚାହିଁଲେ। ଯେମିତିକି ଇଏ ପିଲାଳିଆ ଦୁଦୁଖିଆ ଆବେଗର ମାର୍ଜିତ ଓ ସ୍ଥାୟୀ ସଂସ୍କରଣ! ଏହାକୁ ହାତଛଡ଼ା କରିବାର ନୁହେଁ।

ସୁନା ପାଖରେ ଥିଲେ ହୁଏତ ଭିନ୍ନ ରକମର ହୋଇଥାଆନ୍ତା; କିନ୍ତୁ ତା'କୁ ସ୍କୁଲରୁ ଛୁଟି ମିଳି ନାହିଁ। ସେ ଏଠିକାର କୋଉ ସ୍କୁଲକୁ ବଦଳି ହୋଇ ପାରିଲା ନାହିଁ, ଯେଉଁଥିପାଇଁ ମୁଁ ଦାୟୀ ନୁହେଁ। କହିଲା ସେଠି ଯେଉଁଭଳି ପ୍ରତିଷ୍ଠା ଓ ପ୍ରାଧାନ୍ୟ ଆସିଗଲାଣି, ଆଉ କେଉଁଠି ମିଳିବ ନାହିଁ। ଅବଶ୍ୟ ଖରାଛୁଟିକୁ ଆସିବ ବୋଲି କଥା ଦେଇଛି। ପୁଅ ବମ୍ବେରେ ଚାକିରି କରିଛି। ଝିଅ କଲିକତାରେ ହଷ୍ଟେଲରେ ଅଛି, ୟୁନିଭରସିଟିରେ ଡ଼କ୍ଟରେଟ କରୁଛି, ପଢ଼ି ଚାଲିଛି। ଘରେ ଜଗନ୍ନାଥ ପୂଜାରୀ, ହାତବାରଣି ବାହାର ଟୋକା (ବାହାରଘର ବୋଲି ବୋଉକୁ ବୁଝା ହୋଇନାହିଁ। କହିବା ଦରକାର କଅଣ, ବୋଉ କଣ ଜାଣେ ନାହିଁ ଯେ ମୁଁ

ୁ୍ଅାଁ ତୁଇଁ ମାନେ ନାହିଁ ?) ଏବଂ ହିମା କୁକୁର । ଅର୍ଥାତ୍ ଖାଲି ମାଆ ଓ ତା'ର ବୁଢ଼ା ପୁଅ । ଏମିତ କେବେ ହୋଇନାହିଁ । ହେଉ, ହେଇଥାଉ ଏମିତ । ବୋଉର କଅଣ ଗରଜ ପଡ଼ିଛି କି ଅଉ କୋଉଠିକି ଧାଇଁ ପଳେଇବ ? ମୋର ତ ଆଉ ଫିଲଡ ଡ଼ାଉଛି ବୋଲି କିଛି ନାହିଁ ଏବଂ ମୁଁ ଏବେ ଆସିଛି ଏଠିକି, ଶୀଘ୍ର ବଦଲି ହୋଇ ଯିବ ର ପ୍ରଶ୍ନ ଉଠୁନାହିଁ ।

ଏହାପରି ଭାବରେ ସେ କିଛି ସମୟ ପାଇଁ ଏକ ଦୀର୍ଘ ସୁନ୍ଦର ତୃପ୍ତିଭାବ ଅନୁଭବ କଲେ । ସ୍ନିଗ୍ଧ ଶ୍ୟାମଳ ଘାସରେ ଲୋଟିଯିବାକୁ ଇଚ୍ଛା ହେଲା । ସେଇଠୁ ସେ ହାତ ଗୋଡ଼ ଲମ୍ବେଇ ଘାସ ଉପରେ ଲେଟିଗଲେ ଏବଂ ଦୃଷ୍ଟି ଊର୍ଦ୍ଧ୍ୱକୁ ଟେକି ଧରିଲେ । ଆକାଶ ଅନେକ ଦୂରରେ, ପାଖରେ ବୋଉ ।

ସେ ବୋଉଙ୍କୁ କେବଳ କଣେଇ କଣେଇ ଦେଖି ପାରିଲେ; କିନ୍ତୁ ବୈଷ୍ଣବ ବାବୁଙ୍କର ମନେ ହେଲା ସେ ଏତେ ନିକଟକୁ ଆସି ଯାଇଛନ୍ତି ଯେ ଖାଲି ସମ୍ପୂର୍ଣ୍ଣ ବୋଉକୁ ଦେଖି ହେଉଛି ନୁହେଁ, ନିଜକୁ ଆବିଷ୍କାର କରି ହେଉଛି । ଏଇ ଆପଣା ଦେହର ଭବିଷ୍ୟତ, ବାର୍ଦ୍ଧକ୍ୟ । ଗୋରା ଚମରେ ଗୁଞ୍ଜୁଗୁଞ୍ଜିଆ ଦାଗ, ପୁଚୁକା ଗାଲର ପରିଣତି, ନରମ ଗ୍ଭହାଣୀର ଅବନତି (ବୋଉର ଗ୍ଭହାଣୀ ନରମ ନୁହେଁ ବୋଲି କିଏ କହିଲା ? ଚଞ୍ଚଳ ବୋଲି ମୁନିଆଁ, ତେଣୁ ମୋ ପରି ନୁହେଁ, ଏକଥା ମୁଁ ମାନିବାକୁ ନାରାଜ), ମୁଣ୍ଡରେ ଧଳା ଚକଚକିଆ ଧଳା ଟୋପର (ବୋଉର ମୁଣ୍ଡ-ବାଳ କେବେ କୃଏତ କହିବା ଥିଲା, ଏଇକ୍ଷଣି ତ ପୂରା ଧଳା) । ମୋର ଆରମ୍ଭ ଆଉ ମୋର ଶେଷ ।

ଏମିତ ସବୁଜ ଶୀତଳରୁ ଶୁଭ୍ରଶୀତଳକୁ ଖସି ଯାଇ ହେବ. ଜୀବନରୁ ମୃତ୍ୟୁରେ ମିଶି ଯାଇ ହେବ । ଜନମର ନାଗରିରେ—ନା, ଆଉ କାହାର ନାଗରିରେ ନୁହେଁ, କାହିଁକିନା ସେଥିରେ ଶୁଭ୍ରତାରେ କେଉଁଠିନା କେଉଁଠ ରଙ୍ଗ ଲାଗିଥିବ ରକ୍ତ ଲାଗିଥିବ—ଖାଲି ଜନମର ଶାନ୍ତିରେ ଶୋଇ ଯାଇ ହେବ ।

"ବର୍ଷା ନ ହେଲେ ବି' ଆମେ ବୋଧହୁଏ ଅମ୍ବିକାଙ୍କ ପାଖକୁ ଯାଇ ପାରିବା ନାହିଁ ଅଜି" ଗ୍ଭଧାମଣି ଦେଇ ଅଙ୍ଗେଇ ଅଙ୍ଗେଇ ଆରମ୍ଭ କଲେ । ବୈଷ୍ଣବବାବୁ ଦରଶୁଣା ହୋଇ ଶୁଣିଗଲେ ।

"ଆଜି ପାପୁନି ଆସିବ ପରା ? ଆଜି ଗୁରୁବାର ନା ?"

ବୋଉ ପ୍ରଶ୍ନ ପଗ୍ଭରୁଛି ବୋଲି ଚଟ୍‌କିନି ଧରି ହେଲନି । ଏବଂ ଯେ ଯାହା କଥା ପଗ୍ଭରୁଛି ସେ ଆଉ କେହି ନୁହେଁ, ମୋର ସାନ ଭାଇ, ବୋଉର ଅଉ ଗୋଟିଏ ପୁଅ; ଏଥିରେ ତାତ୍ପର୍ଯ୍ୟ ବୁଝିବାରେ ବିଳମ୍ବ ହେଲା । ବୁଝିଲାରୁ ଅଖାଡ଼ୁଆ

ଲଗିଲା । ସେମିତିକ ଅବେଳରେ ଜଣେ ଆଗନ୍ତୁକ ମୁହଁ ଦେଖେଇଲା । ମିଥ୍ୟାପକ୍ଷ, ହେଲେ ଅବାନ୍ତର । ପାପୁନି ଆସିବ ଆସୁ, ମୁଁ କ'ଣ କରିବ ? ବୋଉର ସେଥିରେ କଅଣ ଅଛି ? ତେବେ ସଂଘାତରେ ତାଡ଼ିନାରେ ତାଙ୍କୁ ଉଠି ବସିବାକୁ ପଡ଼ିଲା । ରାଧାମଣି ଦେଈ ପୁଣି କହିଲେ—

“ବୋହୂ ନାହିଁ । ତୁ ତ ମନ୍ଦିରରୁ ଫେରି ଅଫିସ୍ ଯିବୁ ବୋଲି କହୁଥିଲୁ ? ସେ ଆସି ପହଞ୍ଚିଲେ ତା'ର ଦେଖା ଶୁଣା କରିବ କିଏ ?”

ଉତ୍ତର ଦେବା ଆଗରୁ ବୈଷ୍ଣବବାବୁଙ୍କ ମନରେ ଅନେକ ଓଲଟା ପ୍ରଶ୍ନ ଠେଲାପେଲା ହେଲେ. —ବୋଉ, ତୋର ପରି ମୁଣ୍ଡ ଠିକ୍ ରହୁନାହିଁ. ପୂଜାବ୍ରତରେ ବାର, ତିଥି ଭୁଲି ଯାଉଛୁ; କିନ୍ତୁ ଆଜି ଗୁରୁବାର ବୋଲି ମନେ ରଖିଛୁ କେମିତି ? ହଁ, ପାପୁନି ଲେଖିଥିଲା ସେ ଏଇ ଗୁରୁବାର ଶୁକ୍ରବାର ବେଳକୁ ଆସିବ, ବୋଉ ଗଉରୀ ମାଙ୍କରେ ଦେଖା କରିବାର ଅଛି ' ସେ ମୋ ପାଖକୁ ଲେଖିଥିଲା ତୋ ପାଖକୁ ନୁହେଁ; କିନ୍ତୁ ତୁ ମୋ ଠାରୁ ବେଶି ମନେ ରଖିଲୁ କାହିଁକି ? ଶୁକ୍ରବାରଠାରୁ ଗୁରୁବାର ଭଲ. ଆସନ୍ତା କାଲି ଠାରୁ ଆଜି ନିଶ୍ଚୟ ଭଲ. ଅତଏବ ପାପୁନି ଆଜି ଆସିବ, ଏମିତିକା ବୁଦ୍ଧି, ବୋଉ ହେଲେ ମଧ୍ୟ ଏମିତିକା ମାଇପି ବୁଦ୍ଧି କଣ ତୋ ମୁଣ୍ଡରେ ପଶିବା ଉଚିତ ?

ଧାତ୍, ବୋହୂର ମାଇପି ବୁଦ୍ଧି ହେବ ନାହିଁ ତ ଆଉ କଣ ହେବ ? ବୋଉ ସେମିତି, ସବୁଦିନେ ସେମିତି, ବାଲୁଙ୍ଗା ।

( ବୋଉ କଣ ସତରେ ବାଲୁଙ୍ଗା ? ବକୁଳ ବନରେ, ହଁ ସେଇ ନଇକୂଳିଆ କୁଡ଼ିଆରେ, ପଛରେ ଭଙ୍ଗା ଦେଉଳ, ଅଗଣାରେ କାଠଚମ୍ପା…ସେଉଠି ସନ୍ଧ୍ୟା ନଦବେଳାରେ ଝିଲିମିଲି ହୋଇ ହସେ ··ସେଉଠି ଖାଲି ବାପା ଥିଲେ, ବୋଉ ଥିଲା, ମୁଁ ଥିଲି, ଆଉ କେହି ନ ଥିଲେ, ସେଇଠି କଣ ମୋ ବୋଉ ବାଲୁଙ୍ଗା ଥିଲା ? ମୋଟେ ନୁହେଁ । ସେ ଥିଲା ବାପାଙ୍କ ରାଧିକା, ଚଞ୍ଚଳୀ, ଚତୁରୀ, ସୁନାଖଣ୍ଡିକା । ମୋର ମନେ ଅଛି ।)

ଯାହାହେଉ ବୈଷ୍ଣବବାବୁ ରାଧାମଣି ଦେଈଙ୍କ କଥାରେ ମୁଣ୍ଡ ଟୁଙ୍ଗାରିଲେ । ତାଙ୍କର ଅଙ୍ଗଅଙ୍ଗ କହିବାର ଭଙ୍ଗୀ ଓ କୁଞ୍ଚାଣରେ ସହାନୁଭୂତି ଦେଖେଇଲେ ସେ ବୋଉ ସତରେ ବୁଢ଼ୀ ହୋଇଯାଉଛି; କିନ୍ତୁ କିଛି ସମସ୍ତ ପୂର୍ବର ଆବେଶ ଫେରି ଆସିଲା ନାହିଁ ଏବଂ ସେ ଘରରେ ପୁଣି ଲେଟି ଯାଇପାରିଲେ ନାହିଁ । ଖାଲି ଆମୋଦରେ ଗୋଟାଏ ରହସ୍ୟ ଲୁଚେଇ ରଖିଲେ, ଏକ୍ଦମ୍ ନିଜ ଭିତରେ । ବକୁଳ ବନରେ ମୁଁ ଯାହା ଦେଖିଛି, କେବଳ ତା'ର ବଡ଼ ପୁଅ ଦେଖି-ପାରିଛି, ଆଉ କେହି ନୁହେଁ ।

ଆଦେଶ କରିଗଲ ପିନା, ତାଙ୍କର ସ୍ୱାଭାବିକ ପ୍ରସନ୍ନତା ଜାରି ହେଲ ବୈଷ୍ଣବବାବୁ ପାନବାଇ ଆଗମନର ମହତ୍ତ୍ୱ ଗ୍ରହଣ କଲେ । ସ୍ୱୀକାର କଲେ ଯେ ଜଗନ୍ନାଥ ଯେତେ ପୁରୁଣା ପୁଝାରୀ ହେଲେ ମଧ୍ୟ ତା' ହାତରେ ଅଡିଓ ବକ୍ସର ଗ୍ରାଉଣ୍ଡେଇ ହେବ ନାହିଁ । ଦୁଃଖ ପ୍ରକାଶ କଲେ ଯେ ଆଜି ଅଫିସ୍‌ରେ ଗୋଟାଏ ଜରୁରି କାମ ନ ଥିଲେ ସେ ନିଜେ ଷ୍ଟେସନ ଯାଇଥାଆନ୍ତେ । କହିଲେ ଅମ୍ବିକାଙ୍କ କଥା ଭାବେ ନା, ମୁଁ ତୋତେ ଯେମିତି ହେଲେ ନେଇଯିବ ସେଠିକି, ତୁ ତ' ଅଳ୍ପ ଏଇକ୍ଷଣି ଅନେକ ଧନ···!

ସେଇଠୁଁ ରାଧାମଣି ଦେଇ ଏମିତି ଗୋଟିଏ ଦୁର୍ବଳ ହସ ହସିଲେ ଯେ ବୈଷ୍ଣବବାବୁଙ୍କ ଗ୍ଲାନି ଦବିଗଲ । ବୋଉ କ'ଣ ଶୀଘ୍ର ପଳେଇଯିବ ବୋଲି ବସିଛୁ ?

"ଅନେକ ଧନ କଣରେ ବାପ ? ମୋର ଆଉ କେଇଟା ଦିନ ରହିଲ ? ସହଜେ ଆଶୁ ଗଣ୍ଡି ବାତ, ତା' ପାଇଁକୁ ଆଜିକାଲି ମୁଣ୍ଡ ଏମିତି କଣ ହେଉଛି ବେଳେ ବେଳେ ଯେ ମୋର ମନେ ହେଉଛି ମଲଗଲେ ମଙ୍ଗଳ—"

ବୋଉ ମିଛୁଟାରେ ଡ଼ରଉଛି । ତାଙ୍କୁ ଏମିତି କେତେ ବର୍ଷ ହେଲ କି ? ଆଜିକାଲି ଯୁଗରେ ଚଉଷ୍ଠଣ ବର୍ଷ ଏମିତି କେତେ କି ? ବ୍ଲଡପ୍ରେସର କେତେ-ବେଳେବଢ଼ି ଯାଉଛି, କେତେବେଳେ କମି ଯାଉଛି, ସେଇଥିପାଇଁ ମୁଣ୍ଡ ଘୂରେଇବା ସ୍ୱାଭାବିକ । ହୁଏତ ଡାକ୍ତରମାନେ କହନ୍ତି ଯେ ପ୍ରାୟ ଘନ ଘନ ଉତ୍ତେଜିତ ହେବା ଉଚିତ ନୁହେଁ, ତା' ବୋଲି ସେଥିରେ ଶଙ୍କି ଯିବାର କିଛି ନାହିଁ । ବୋଉ ବଞ୍ଚିବ, ଅନେକ ଦିନ ବଞ୍ଚିବ, ବଞ୍ଚିବା ଉଚିତ ।

ଯେମିତିକି ବୋଉ ନାମକ ବସ୍ତୁଟିକୁ ନୂଆ ଭାବରେ ଦ୍ରହଣ କରି ପାଇବା ପୂର୍ବରୁ ସେ ଖସି ପଳେଇବ, ଏଇଟା ନିହାତି ଅନ୍ୟାୟ ।

"ସେଇଲାଗି ମୁଁ ଭାବୁଥିଲି, ଯଦି ପାରୁନି ଆସେ, ଏଇଥର ସବୁ ଭାଗବାଣ୍ଟୁ ଛୁଣ୍ଡେଇ ଦେବା ଭଲ । ଜମିବାଡ଼ି, ଟଙ୍କା ପଇସା, ଯାହା ଅଛି, ସେ ତ ବନ୍ଧୁ ଠାଉ ଥାଉ ଠିକଣା କରି ସାରିଛନ୍ତି । କାହିଁକି କେଜାଣି ଗୋଟାଏ ଥୁଣ୍ଟା ବାକି ରଖିଗଲେ, ବକୁଳ ବନ ।"

ବକୁଳ ବନ ! ବୋଉ କଣ କହୁଛି ? ଚମକି ପଡ଼ିବା ସଙ୍ଗେ ସଙ୍ଗେ ବୈଷ୍ଣବବାବୁ ହସି ପକେଇଲେ । ବୋଉଟା ସାଇକୋଲଜିଷ୍ଟ, ମୋ ମନ କଥା ଧରି ନେଇଛି । ମୁଁ ବକୁଳବନ ବିଷୟରେ ଯାହା ଭାବୁଥିଲି—; କିନ୍ତୁ ପରକ୍ଷଣରେ ସେ ନିଜକୁ ଚେତେଇ ଦେଲେ ଯେ ଏମିତି ହୁଏ ନାହିଁ । ବୋଉ ସିରିଅସ୍ । ଗୋଟାଏ ପାରିବାରିକ ଥୁଣ୍ଟା ଛୁଣ୍ଡେଇ ଦେବାକୁ ଚାହେଁ । ସାମାନ୍ୟ କୁଡ଼ିଅ ଖଣ୍ଡେ ହେଉ

ପଢ଼େ, ସେଇଆଡ଼କୁ ନେଇ ପରେ ଗଣ୍ଡଗୋଳ ହୋଇଯାଏ । ହେଇଠ ବୈଷ୍ଣବ ବାବୁଙ୍କର ମନହେଲା ସେ ବର୍ଷା ବୋଉକୁ ବୁଝେଇଦେବେ ଯେ ତା'ର ଆଶଙ୍କା ଅମୂଳକ । ବକୁଳବନ ଗୋଟିଏ ଅମୂଲ୍ୟ ଧନ । ହିମାଳୟ, ଗଙ୍ଗା, ଏଇଭଳି ଗୋଟିଏ ଗୋଟିଏ ବସ୍ତୁ, ନାଆଁକୁ ବାସ୍ତବ, ପ୍ରକୃତରେ ଧାରଣା, କଳ୍ପନା କବିତା । ତା'କୁ ବାଣ୍ଟି ହେବ ନାହିଁ, ବ୍ୟବହାର କରି ହେବ ନାହିଁ; କିନ୍ତୁ ସେ ଥିବ ଆମ ସମସ୍ତଙ୍କ ପାଇଁ (ହୁଏତ ମନ ଭିତରେ ମୋ ପାଇଁ) ସୁନ୍ଦର, ସତ୍ତ୍ୱର, ଭବିଷ୍ୟତର । ଭାବିଲେ ବୋଉକୁ ପାଠ ପଢ଼େଇବେ ।

କହିବେ, ଦେଖେ ଏ ଭୂଇଁ, ବାଗ, ବଗିଚା, ମେଘଭଙ୍ଗା ଆକାଶ, ଦୂରରେ ଦିଶୁଥିବା ନେଳି ପାହାଡ଼, ପାହାଡ଼ରୁ ଉଠିଥିବା ଚୂଳ ଖଣ୍ଡିକ, ମାଇକଲ୍ ପଛରେ ବସି ଯାଉଥିବା ଯାନଷ୍ଟିଅଟିର ମୁକୁଳା ହସ, ଦେହଛୁଇଁଯା ପବନ, ସଜ ଫୁଲକୁ ଚମା ଦେଉଥିବା ଭଅଁର ଏବଂ ମୋ ବୋଉକୁ ପୁଣି ପାଇ ଥିବାର ସୁଖ. ଏଥିରେ ବକୁଳବନ ନାହିଁ ତ ଆଉ କଅଣ ଅଛି ? କିନ୍ତୁ ତାକୁ କାଢ଼ିଦେଲେ · ଭୂଇଁରେ ଅଟଂଗ୍ରା ଘାସ, ଅସ୍ୱଏ ଅସ୍ୱଏ ହଳଦିଆ, ହାଣ୍ଡିଆ ଗୋଡ଼, ଅସନା ମାଟି, ବଗିଚାରେ ଯେତେକ ପୋକ ଜୋକ, ଶାଗୁଆର ବାମ୍ପ, ଆକାଶରେ କୋଇଲା ଧୂଆଁ, ପାହାଡ଼ରେ ଯେତେକ ଧୂମ, ବେଢ଼ଙ୍ଗ ହୋଇ ମେଞ୍ଚାଏ ବାହାଘର ପଣ୍ଡିତୁ ଆଗକୁ ଘଷର ସ୍ୱରରେ ମାଇକେଲ୍. ବୋକା ଦିଶି ହସିବ ନାହିଁ ତ ଆଉ କଣ କରିବ, ପବନରେ ଥଣ୍ଡା ଲାଗୁଛି, ବୋଉର ଆଣ୍ଠୁଗଣ୍ଠି ବାତ ଆହୁରି ବଢ଼ିଯିବ, କାଳିଆ ପୋକଟା କଖାରୁ ଫୁଲକୁ ଦଂଶୁଛି ।

ପଟ ପରିବର୍ତ୍ତନ ସେହି ସମୟରେ ତା'ଙ୍କୁ ଦିଶିଗଲା ଯେ ବୋଉ ମାଦଳ ପରି ବସିଛି ପଥରଟା ଉପରେ, ସେ ଟାଏ ପୁରୁଣା ପୃଥୁଳ ଦେହ, ତାକୁ ଆବୃତ ବସିବା ହାସ୍ୟାସ୍ପଦ, ତାକୁ ନଜର ବୋଲି କହିଲେ କହୁଥା—ନା !!!

"ଆରେ, ବର୍ଷା ପକେଇଲଣି ମ ? ଘରକୁ ଯିବାନାହିଁ ?" ରାଧାମଣି ଦେଇ କଷ୍ଟେ ମଷ୍ଟେ ବସିବା ଥାନରୁ ଉଠି ଘରଆଡ଼କୁ ମୁହେଁଇଲେ । ନଇଁ ନଇଁ ଡଗଡ଼ଗ ହୋଇ (ମାଟିକୁ ଦରଣ୍ଡି ବଦାମ ଜନ୍ତୁ ପରି ଦେଖାଗଲା ବୈଷ୍ଣବବାବୁଙ୍କୁ) ଚାଲିବାକୁ ଲାଗିଲେ । ପଛେ ପଛେ ବୈଷ୍ଣବବାବୁ । ଛତାଟାଏଁ ଡ଼ାକ ଖୁଣ୍ଡିବା କମ୍ପା ନିଜେ ଦୌଡ଼ି ଯାଇ ଛତା ନେଇ ଆସିବାପାଇଁ ଇଚ୍ଛା ହେଲାନାହିଁ । ଏପରି କି ନିଜ ପାଇଁ ତରତର ହେବାକୁ ଇଚ୍ଛା ହେଲା ନାହିଁ । ଭାବିଲେ, ବରଂ ଟୋପାଗୁଡ଼ାକ ଆହୁରି ବଡ଼କୋଳିଆ ହୋଇ ଉଠୁ, ସର୍ବାଙ୍ଗରେ ପିଟି ହେଉ । ମୋର ବକୁଳବନକୁ ବାଧୁ, ସେ କହୁ ମୋର ବି ଜୀବନ ଅଛି, ଅଢ଼ ପାଟି କରି ଉଠୁ କୁଆ କୁଆଁ-କୁଆଁ—

ମୁଁ ଯେଉଁଠି ଜନ୍ମ ହୋଇଥିଲି, ବୁଦ୍ଧୁ ଖାଇଥିଲି । ବୋଉ ଯେତେବେଳେ ·· ରବସ୍ !

ବୈଷ୍ଣବବାବୁ ଦ'ଡ଼ଆଁରେ ବୋଉଙ୍କ ପାଖରେ ଯାଇ ପହଞ୍ଚିଲେ । ସେତେ-ବେଳକୁ ଜଗନ୍ନାଥ ଛତା ଖଣ୍ଡିଏ ଧରି ଆସିଲାଣି । ବୈଷ୍ଣବବାବୁ ତା' ହାତରୁ ଛତା ନେଇ ଆସି ବୋଉଙ୍କୁ ସଂରକ୍ଷଣରେ ଘର ଯାଏଁ ଚଳେଇ ନେଲେ ।

ପାପୁନି ବନାମ ଭୈରବବାବୁଙ୍କ ଟ୍ରେନ୍‌ଲେଟ୍ ଥିଲା । ତେଣୁ ଏମିତି ହେଲା ଯେ ସେ ଘର ଦୁଆର ମୁହଁରେ ପାଦ ନ ଦେଉଣୁ ବୈଷ୍ଣବବାବୁ ତାଙ୍କ ··· ଫେରିଲେ । ଭୈରବବାବୁ ଏକା ନଜରରେ ବଡ଼ଭାଇଙ୍କ ପାଦ ଛୁଇଁ ଅଣ୍ଟା ସଳଖି ଛିଡ଼ା ହୋଇଥିବା ସହାସ୍ୟ ବୋଉଙ୍କ ପାଦ ଛୁଇଁଲେ, ଏବଂ ତତ୍‌କ୍ଷଣାତ୍ ହାସ୍ୟ-ମୂର୍ତ୍ତିକୁ ଏମିତି କୁଣ୍ଢେଇ ପକେଇଲେ ଯେ ସେ ପଡ଼ିଯିବେ ବୋଲି ମନେ ହେଲା । ଆଇ ଆମ ସରି କହି ଭୈରବବାବୁ ତାଙ୍କୁ ସମ୍ଭାଳି ନେବାର ଢଙ୍ଗ କଲେ ଏବଂ ଗୁଧାଗୁଣି ଦେଇ ମିଛ ରାଗ ଦେଖେଇ କହିଲେ—ଦୁଷ୍ଟ ଟୋକା ରହ ଦଉଛି ତୋତେ···! କିନ୍ତୁ ତାଙ୍କ ମୁହଁର ହସ ସଶବ୍ଦ ହୋଇ ଉଠିଥିଲା ।

ବୈଷ୍ଣବବାବୁ ସେମାନଙ୍କୁ ଅନେଇ ରହିଲେ ଏବଂ ନିଜକୁ ପଚାରି ହେଲେ—ଏଥିରୁ କଣ ମିଳେ ?

ସଞ୍ଜବେଳେ ମାଆ ତିନି ବଡ଼ ପୁଅ ଶୋଇବା ଘରେ ପଡ଼ିଥିବା ଯୋଡ଼ି ପଲଙ୍କ ଉପରେ (ଯେଉଁଠି ବୈଷ୍ଣବବାବୁ ଓ ସୁରମା ଦେବୀ ରାତିରେ ଏକାଠି ଶୋଇବା କଥା) ବିଭିନ୍ନ ଭଙ୍ଗୀରେ ଜମି ଯାଇଥିଲେ । ଗପ ମାରୁଥିଲେ । ଗୁଧାମଣି ଦେଇ ଖଟବାଡ଼ରେ ଭରା ଦେଇ ଗୋଡ଼ ଲମ୍ବେଇ ବସିଥିଲେ । ଭୈରବବାବୁ ତାଙ୍କ ଗୋଡ଼ ପାଖରେ ଖାଲି ଦେହରେ ପିନ୍ଧା ଲୁଙ୍ଗିକୁ କୌଣସିମତେ ସଜାଡ଼ି ବସି ଯାଇଥିଲେ । ଖଣ୍ଡେ ଦୂରରେ କୁର୍ତ୍ତା ପାଇଜାମା ପିନ୍ଧା ବୈଷ୍ଣବବାବୁ ଖଟ ତଳକୁ ଗୋଡ଼ ଓହଳେଇ ବସିଥିଲେ ।

ଯେଉଁ ଗପ ପଡ଼ିଗଲା, ସେଥିରେ ବୈଷ୍ଣବବାବୁଙ୍କ ଯୋଗ ଦେବାର ବିଶେଷ ଅବକାଶ ନଥିଲା । ଭିନ୍ନ ସହରର କଥା, ବୋଉର ପାପୁନି ସାଙ୍ଗରେ ରହିବା ବେଳର କଥା । ଖାଲି ସେଇଥିପାଇଁ ନୁହେଁ । ପୋଦନା ଚଟଣି ବଡ଼ିଆ, ତେଲଙ୍ଗାଣୀ ମାନେ ଭଲ ବାସନ ମାଜନ୍ତି, ଟେିା ଗଉମାଟିଜିମ୍ ପାଇଁ ମୁଁ ଗୋଟାଏ ସ୍ପେଶାଲ ଔଷଧ ଆଣିଛି, କୋଉ ଏଲୋପ୍ୟାଥି, ହୋମିଓପ୍ୟାଥି ତା' ପାସଙ୍ଗରେ ପଡ଼ିବ ନାହିଁ—ପାପୁନି ଏଭଳି ଅନେକ ତଥ୍ୟ ଗୋଟିକ ପରେ ଗୋଟିଏ ବାଢ଼ି ଚାଲିଥାଏ, ଯାହା ଏତେ ଇତର ସାଧାରଣ ଯେ ତାକୁ ନେଇ ଯୁକ୍ତି କରିବାକୁ ଇଚ୍ଛା ହେଉ

ନଥାଏ । ତେଣୁ ସେ କେବଳ ଉଦାର ପଣରେ ମୁରବିପଣ ଦେଖାଉଥାନ୍ତି । ଅବଶ୍ୟ ତାଙ୍କର ଉଚ୍ଛୁଳା ହସକୁ କଳି ନପାରି ବେଳେ ବେଳେ ଗମ୍ଭୀର ହୋଇ ଉଠୁଥାଆନ୍ତି; କିନ୍ତୁ କ୍ଷଣକ ପରେ ହର୍ଷିତ ଅବସ୍ଥାକୁ ଫେରି ଆସୁଥାଆନ୍ତି ।

କାନ୍ଥରେ ଟଙ୍ଗା ହୋଇଥିବା ସୁରମା ଦେବୀଙ୍କ ଫଟୋ ତାଙ୍କ ଆଖିରେ ପଡ଼ିଲା । ମନେ ହେଲା ସୁରମା ଦେଖୁଛି, ଏଇ ମଧୁର ମାଆପୁଅ ଦୃଶ୍ୟ, ଆଉ ତାଙ୍କୁ ଠଟ୍ଟା କରୁଛି—ତମେ କୋଉଥିପାଇଁ ବସି ରହିଛ ସେଠି ? ସେମାନେ କଣ ବୁଝି ନାହାନ୍ତି ଯେ ତମେ ବୋର୍ ହୋଇଗଲଣି ? ତମେ ଚେଷ୍ଟାକଲେ ବି ତାଙ୍କ ସାଙ୍ଗରେ ଯୋଗଦେଇ ପାରିବ ନାହିଁ, ତାଙ୍କ ଖୁସିରେ ସାମିଲ୍ ହୋଇ ପାରିବ ନାହିଁ । ବେରସିକ, ଅଯୋଗ୍ୟ···।

ବାଜେ କଥା । ତମେ ଆମ ମାଆ ପୁଅଙ୍କ ବିଷୟରେ କଣ ଜାଣିଛ ? ଆମେ ଦୁ'ଭାଇ କଅଣ ଏକା ଭଳି ହୋଇ ଥାଆନ୍ତେ । ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନଙ୍କ ସ୍ୱଭାବ ଚରିତ୍ର କଣ ସମାନ ଥିଲା ? କିଓ, ଆମ ବେଳର ରାଜୀବ ଗାନ୍ଧି ସଂଜୟ ଗାନ୍ଧିଙ୍କ ଭିତରେ କେତେ ଫରକ୍ ଦେଖୁନ ? କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ମାଆ ଜାଣିଛି । ସମସ୍ତେ ମାଆର ପୁଅ, ବିବିଧ ରଙ୍ଗର ରଶ୍ମି, ହେଲେ ସପ୍ତରଙ୍ଗ ସେଇ ସୂର୍ଯ୍ୟଠାରୁ ବାହାରିଛି, ଭଲ ପାଇବାରେ ଭିଜା ଯାଇଥିବା ସୂର୍ଯ୍ୟ ।

ଇସ୍, କି ହସ ! ହର୍ଷଧ୍ୱନିର ଏକ ଉଚ୍ଛଳ ତରଙ୍ଗ ହଠାତ୍ ବୈଷ୍ଣବ-ବାବୁଙ୍କ ଭାବନା କଳ୍ପନାକୁ ଧସେଇ ଦେଲା । ସେ କାବା ହୋଇ ସେମାନଙ୍କ ଆଡ଼କୁ ଚାହିଁଲେ । ପାପୁନର ମୁହଁ ଭଲ ଭାବରେ ଦିଶୁ ନଥାଏ । ଖାଲି ତା' ମୁଣ୍ଡର ଦରପାଚିଲା ବାଳ, ମୋଟା ପରି ଗୋଟିଏ ଦରବୁଢ଼ା ପୁଅ; କିନ୍ତୁ ବୋଉ···ତା'ର ମୁହଁ ଝଲି ଉଠୁଛି, ଓହଳା ଚମ ଟାଙ୍କି ହୋଇ ଆସିଛି ଆଖି ଦୁଇଟା ହସରେ ନସ୍ତାନ୍ତ ହୋଇ ମିଞ୍ଜି ମିଞ୍ଜି ହେଉଛି ଆନନ୍ଦର ବିନ୍ଦୁ ପରି, ତାକୁ ଶେତା ବୋଲି କହିବ କୋଉ ସାହସରେ, ସତେ କି ଏଇ ଚରିଲା ଧାନପୁଅଟା ତା'ର ବୟସକୁ ଖସେଇ ଦେଇ ପାରିଛି, ପାଞ୍ଚ କି ଦଶ ।

ସ୍ମୃତିରେ ଶୋଇଥିବା ବୋଉର ଚେହେରା ସାଙ୍ଗରେ ମଧ୍ୟ ମିଶୁ ନାହିଁ; କିନ୍ତୁ ତା'ଠୁ ସୁନ୍ଦର ନୁହେଁ, ମୋଟେ ନୁହେଁ । ସେ ଥିଲା ଯୌବନ, ବକୁଳବନ—

ଯାହାହେଉ ସେଦିନ ରାତି ଅଧଯାଏ ପୃଥିବୀଯାକର ଗପ ପଡ଼ିଲା । ସବୁ ଯେ ହାସ୍ୟୋଦ୍ଦୀପକ ତା' ନୁହେଁ । ପରିବାରର କେତେଗୁଡ଼ିଏ ଦୁଃଖାତ୍ମକ ବିଷୟକୁ ବାଦ ଦେଇ ହେଲା ନାହିଁ । ଯଥା—ସାନ ଭଉଣୀ ମାମୁନିର ଗୋଟିଏ ବୋଲି ପୁଅ ମାନସର କଣ ରୋଗ ହୋଇଛି କେଜାଣି, ସେ ଖାଲି ଶୁଖି ଶୁଖି ଯାଉଛି,

ସେଇଥିପାଇଁ ତ ଅମ୍ବିକା ଠାକୁରାଣୀଙ୍କ ପାଖକୁ ଯିବାର କଥା । ବାବୁନର ହିଁଥ ଅଳକା ଅପଥରେ ଗୁଡ଼ାଏ ପାଠ ପଢ଼ୁଛୁ, ବର୍ଗସ୍ଥ ଅଭିଆଡ଼ୀ ହୋଇ ରହିଯିବ । ପାପୁନର ହିଁଥ ମନ୍ଦର ଦାନ୍ତଗୁଡ଼ାକ ଏମିତ ବେହେଡ଼ା କାହିଁକ ହେଲ ? ତା'ର କିଛି ଉପାୟ କର ହେବ ନାହିଁ ? ଗାଆଁ ଜମିକୁ କଣ ଏମିତ ଭୂତ ଖାଉଥିବେ, ତୁମେ ଭାଇମାନେ ଥରେ ଅଧେ ଯାଇ ବୁଲି ଆସନ୍ତ ନାହିଁ ? ଇତ୍ୟାଦି । ମନେ ହେଉଥିଲା ଯେ ପରିବାରର ଅଧିଷ୍ଠାତ୍ରୀ ଦେବୀ ହିସାବରେ ରାଧାମଣି ଦେଈ ପରିବାରଗତ ଦୁଃଖସୁଖର କୌଣସି ଆଇଟମ୍ ବାଦ୍ ଦେବାକୁ ରାଜି ନାହାନ୍ତି । ତା' ଛଡ଼ା ବିଷୟବସ୍ତୁ ସାଙ୍ଗରେ କିଛି ସମ୍ପର୍କ ନଥିଲେ ମଧ୍ୟ ସେ ଦଶ ବର୍ଷ ପୂର୍ବେ ସ୍ୱର୍ଗାରୋହଣ କରିଥିବା ସ୍ୱାମୀଙ୍କ କଥା ପକେଇ ଆଖି ଛଳ ଛଳ କଲେଣି । ଏକରୁ ଅଧିକ ପୁଅ ଝିଅଙ୍କ ସାଙ୍ଗରେ କଥାବାର୍ତ୍ତା କଲାବେଳେ ତାଙ୍କର ଏମିତ ମନେପଡ଼େ; କିନ୍ତୁ ଏତେ ଆଳାପ ଆଲୋଚନା ଭିତରେ ବୈଷ୍ଣବବାବୁ ଅପେକ୍ଷା କଲେ, ଅପେକ୍ଷା କରି କରି ବହୁତ ବ୍ୟସ୍ତ ହୋଇ ଉଠିଲେ, ଝିମ୍ପା କୁକୁରକୁ ପାଖରେ ବସେଇ ଆଉଁସିଲେ ମଧ୍ୟ (ସେଥିରେ ଅନୁଶୋଚନା ନିଶ୍ଚୟ ଥିଲା) କାହିଁକ ଅସ୍ଥିର ହେଉଛନ୍ତି ବୋଲି ଥାପୁଡ଼ାଏ ମାରିଲେ, ଏତେ ଶୀଘ୍ର କାହିଁକ ନିଦ ଲାଗୁଛି ବୋଲି ନିଜ ଉପରେ ବିରକ୍ତ ହେଲେ, ତଥାପି ଅପେକ୍ଷା କଲେ—କାହିଁ ଥରେ ହେଲେ ବକୁଳବନ କଥା ପଡ଼ିଲା ନାହିଁ ତ ! ହୋଉ ତା'ହେଲେ କାହିଁକ କହିଲା ସେମିତ ? ମୋତେ ବଡ଼ାଥିଲା ?

ତା'ପରଦିନ ସକାଳେ ବକୁଳବନର ଅବତାରଣା ହେଲା । ଉତ୍‌ଫୁଲ୍ଲ ବଦନା ରାଧାମଣି ଦେଈ ସଦ୍ୟ ଠାକୁରଘରୁ ଫେରିଛନ୍ତି, ମନେ ହେଉଛି ଠାକୁରେ ତାଙ୍କୁ ବିଶେଷ ସୁସମ୍ବାଦ ଦେଇଛନ୍ତି । ଭୈରବବାବୁ ଅଳସ ଭଙ୍ଗୀରେ ପଦଚାରଣ କରୁ କରୁ କହିଲେ, "ଭାଇ, ମୁଁ ଭାବିଛି ଗୋଟାଏ କୁକୁଡ଼ା ଫାର୍ମ କରିବି ।"

ପାପୁନ ତା'ର ଜୀବନରେ ଏମିତ କେତେ ଫାର୍ମ, ସୋସାଇଟି, କ୍ଲବ୍ ଗଢ଼ିଛି, ଭାଙ୍ଗିଛି, ସେଥିରେ ନୂଆ କଥା କିଛି ନାହିଁ । ଧନ ଧନଟା ସ୍ତ୍ରୀକର ଗୁଡ଼ଲଣି । ଏଇକ୍ଷଣି ଗୋଟାଏ ବଡ଼ ଯନ୍ତ୍ରପାତି କମ୍ପାନୀରେ ସେଲ୍‌ସ୍ ଅଫିସର ହୋଇଛି; କିନ୍ତୁ ସବୁବେଳେ ଧମକଉଛି ଯେ ଏ ଚାକିରି ଛାଡ଼ିଦେବ । କୋଉଥିରେ ଲାଗି ରହିବା ଲୋକ ନୁହେଁ ସେ । ପ୍ରଭେଦର ଆଉ ଗୋଟାଏ ଦାଗ ଆମ ଭିତରେ । ବୈଷ୍ଣବବାବୁ ଅବହେଳାସୂଚକ "ଅଚ୍ଛା" ବୋଲି କହିଲେ ।

କେଉଁଠି କରିବ ଜାଣିଛ ? ବକୁଳବନ । ଫାଷ୍ଟ କ୍ଲାସ ହେବ ।"

ସେଇଠୁଁ ରାଧାମଣି ଦେଈ ପୁଅମାନଙ୍କ ହାତରେ ପଞ୍ଚାମୃତ ବାଢ଼ି ଦେଉଁ ଦେଉଁ ଫିକ୍ କିନା ହସି ଉଠିଲେ । କହିଲେ—

"ଆରେ ପାଗଲା ! ଆଗେ ତ'ର କିଛି ଗୋଟାଏ ବ୍ୟବସ୍ଥା ହେଉ—"

ଭୈରବବାବୁ ତାର ମାନେ ବୁଝିପାରଲେ ନାହିଁ; କିନ୍ତୁ ବୈଷ୍ଣବବାବୁ ବୁଝିଲେ ଏବଂ ଦେଖିଲେ ବୋଉ ଅନେଇଛି ତାଙ୍କ ଆଡ଼କୁ । ମୁଁ କିଛି କହିବି । ବଡ଼ ପୁଅ ।

କଣ କହିବି ? କହିବି ଯେ ବକୁଳବନକୁ ଭଦ୍ରଲୋକମାନେ ବସି ଭାଗ କରି ବାଣ୍ଟିଲେ ଶୋଇବା ଘର ଭାଗଟା କିଏ ନେବ ? ଯେଉଁଠି ଡେଲ ଚକଟା ପପ ଉପରେ ବୋଉ ଶୋଇଥିଲା, ଜଗତ୍ ମେଡ଼ ଉପରୁ ପାଚିଲା ପଣସର ବାସ୍ନା ଆସୁଥିଲା, ଆଉ ତା' ଦେହରୁ ତେଲ ହଳଦିର ବାସ୍ନା (ଅନ ପାଣି ନଥିଲା, ସେଥିରେ ଔଷଧ ବୋଲା ହୋଇ ନଥିଲା), ମୁଁ ତାକୁ ଜାବୁଡ଼ି କରି ଧରିଥିଲି, ସେଇଠୁଁ ବାପା ଆସି ପହଞ୍ଚିଲେ । ସେପେଇ ଘର ଭାଗଟା କିଏ ନେବ ? ମୁଁ ପିଣ୍ଡାରେ ଗୁରୁଣ୍ଡୁଥିଲି । ଯେଉଁଠି ସିମେଣ୍ଟ ଉଖୁଡ଼ି ଯାଇଛି, କେଡ଼େ ସୁନ୍ଦର ଗାତମାନ ହୋଇଛି, ମୁଁ ସେଥିରେ ହାତ ପୂରଉଥିଲି, ଝଟା ଲୁଣିଆ ଚଜ ପାଟିକୁ ନେଉଥିଲି, ଆଉ ମୋ କାରବାର ଦେଖି ବୋଉ ସେପେଇ ଘରୁ ଧପାଇ ଆସିଲା । ବୋଉର ମୁହଁ ଲାଲ୍ ଦେଖା ଯାଉଥିଲା । ମୋ ହାତରୁ ଗୋଡ଼ମାଟି ଛଡ଼େଇ ନେଲାବେଳେ ମୋ ଉପରକୁ ଝୁଙ୍କି ପଡ଼ୁଥିଲା, ଆଉ ମୁଁ ତ'ର ମୁକୁଳା ଗ୍ରୁଡକୁ ଦେଖି ଲୋଭେଇଲି । ମୁଁ କାନ୍ଦିଲି । ବାଉପଟକୁ ଗଡ଼ଗଲେ ନାହିଁ । ସେ ଖଣ୍ଡିକ କିଏ ନେବ ? ସେଇଠି ବଉଳ ଗଛ ଥିଲା । ଆଉ ସେଇଠି ମାଙ୍କଡ଼ଟିଏ ଖିଙ୍କାରି ଆସିଲା ମୋ ଆଡ଼କୁ । ବୋଉ ମୋତେ ଟାଣି ନେବାକୁ ଧାଇଁ ଆସିଲା, ଝୁଣ୍ଟି ପଡ଼ିଲା, ବାପା ବୋଉକୁ ଉଠେଇ ନେଲେ । ଇଏ ମିଛ ନୁହେଁ । ବୋଉର କଣ ମନେ ନାହିଁ ? ନା ସେ ମନେ ପକାଇବାକୁ ଚାହୁଁ ନାହିଁ ?

ବକୁଳବନ ଭାଗ ଭାଗ ହୋଇ ପାରିବ ନାହିଁ । ଦରକାର ହେଲେ ଗୁଳା ପଡୁ, ଯାହା ଭାଗରେ ପଡ଼ିବ··· ।

ବୋଉ ଅନେଇଛି ମୋ ଆଡ଼କୁ । ମାଗିଲା ପରି । ଆଚ୍ଛା କଥା ମୁଁ କଣ କରିବି ? ମୁଁ କଣ କହିବି ?

"ବ୍ୟବସ୍ଥା କଣ ହେବ ମ ? କୁକୁଡ଼ା ଫାର୍ମ ପସନ୍ଦ ହେଉ ନାହିଁ ତୋର ? ମୁଁ ମଧ୍ୟ ଭାବୁଛି, ଏତେ ଚମତ୍କାର ଜାଗା, କୁକୁଡ଼ା ଫାର୍ମ କଲେ ଲାଭ ନାହିଁ । ଘୁଷୁରି ଫାର୍ମ କରିବା, ଦେଦାର୍ ଲାଭ ହେବ । କଅଣ କହୁଛ ଭାଇ ?"

ରାଧାମଣି ଦେଇ ସାନ ପୁଅର ପିଠିରେ ସ୍ନେହା ବଧାଟିଏ କଷିଦେଲେ ।

ଆରେ, ମୁଁ ଏତେବେଳଯାଏଁ ଚୁପ୍ ହୋଇ ରହିଛି କାହିଁକି ? ମୁଁ ସିନା ରାମଚନ୍ଦ୍ର ହରିଶ୍ଚନ୍ଦ୍ର ଇତ୍ୟାଦି, ନିଜକୁ ଆନନ୍ଦ ଦେବାର ସାହସ ମୋ ପାଖରେ ନାହିଁ, ଅନ୍ୟମାନଙ୍କ ଆନନ୍ଦ କେମିତି କେଉଁବାଟେ ଆସେ ମୁଁ କଣ ଜାଣେ ନାହିଁ ? ଉତ୍ତର ମିଳି ଯାଇଛି । ବୈଷ୍ଣବବାବୁ ନାଚି ଉଠିଲେ । କହିଲେ—

"ହଁ, ବ୍ୟବସ୍ଥା ସେଇଆ ହେବ । ବକୁଳବନ ପାପୁନିର । ସେ ସେଇଠି ପୁଷ୍ପର ଫାର୍ମ କରିବ ।"

ଭୈରବବାବୁ ଆନନ୍ଦର ଆତିଶଯ୍ୟରେ ବୋଧହୁଏ ପୁଣି ଥରେ ରାଧାମଣି ଦେଈଙ୍କୁ କୁଣ୍ଢେଇ ଧରି ପକେଇବାକୁ ଯାଉଁଥିଲେ; କିନ୍ତୁ ରାଧାମଣି ପୁଅର ମତଲବ ବୁଝିପାରି ଘୁଞ୍ଚି ଗଲେ । ସେଇଠୁ ସେ ବୈଷ୍ଣବବାବୁଙ୍କୁ ଉଚିତରୁ ଅଧିକ ଉଚ୍ଚ କଣ୍ଠରେ ଆହ୍ୱାନ ଦେଲେ—

"ଏଇ ବ୍ୟବସାୟରେ ଯାହା ଲାଭ ହେବ, ସେଥିରୁ ଅଧେ ତମର, ଅଧେ ମୋର—ବୁଝିଲ ନା ? ଆମେ ଏଇ ହତଭାଗା ଦେଶର କଲଚର ବଦଳେଇ ଦେବା । ଘରେ ଘରେ ଖାଲି ପୋର୍କ୍, ହାମ୍, ବେକନ୍, ହରେକ କିସମର ସସେଜ ..."

ବୈଷ୍ଣବବାବୁ କିନ୍ତୁ ବୋଉର ଭଲ ପାଇବା ଆଡ଼କୁ ଚାହିଁ ରହିଥିଲେ । ଗୋଟିପଣେ ତନ୍ମୟ ହୋଇଯାଉଛି । ମନସ୍କାମନା ପୂର୍ଣ୍ଣ ହେବାର ଅନବଦ୍ୟ ବାର୍ତ୍ତା । ବଡ଼ ପୁଅଠାରୁ ଯାହା ଆଶା କରାଯାଇଥିଲା, ସେଇଆ ହେଲା । ସେ ହେଉଛି ରାମଚନ୍ଦ୍ର ପରି ନା, ଯୁଧିଷ୍ଠିର; କିନ୍ତୁ କୁନ୍ତୀ ଅର୍ଜୁନର । କାହିଁକି ନା ଅର୍ଜୁନକୁ ଭଲ ପାଇବାରେ ଆହୁରି କିଛି ଅଛି, ଆନନ୍ଦ, ବଞ୍ଚିବାର ରଙ୍ଗ, ଧ୍ୱନି, କୁହାଟ । ବୋଉ, ମୁଁ ଭୁଲ ବୁଝିଥିଲି । ତୁ ମୋତେ ବକୁଳବନରେ ଜନ୍ମ ଦେଇଥିଲୁ ସତ । ମୁଁ ଯେଉଁ ବୋଉକୁ ସେଠି ପାଇଥିଲି, କି ନପାଇ ପାଇଲି ଭଳି ହେଉଥିଲି, ତାକୁ ବି ମିଛ ବୋଲି କହି ହେବନାହିଁ । ହେଲେ ବାପା ବୋଉଙ୍କ ଉଚ୍ଛୁଳା ପ୍ରେମର ସନ୍ତକ, ପରିଣାମ, ମୁଁ ନୁହେଁ, ପାପୁନି । ସେଇଠି ସେ ପେଟରେ ରହିଥିଲା—ନୁହେଁ ?

ମୋର ଦରବୁଢ଼ାପଣର ଶୂନ୍ୟତାରେ ତୋତେ ପାଇବି ବୋଲି ବସିଥିଲି । ପିଲାମାନେ ବଡ଼ ହୋଇ ଦୂରେଇ ଗଲେଣି । ସୁମା ତ ସହଜେ ପତ୍ନୀ, ଯାହା ସାଙ୍ଗରେ ଦିଆନିଆର ସମ୍ପର୍କ ଏବଂ ଅନିବାର୍ଯ୍ୟ ଅଭିମାନ ଯେ ମୁଁ ଦେଇଛି ବେଶି; ପାଇଛି କମ୍ । ସେଇଲାଗି ଭାବିଥିଲି ପଛକୁ ଫେରିଯିବି, ଶାଶ୍ୱତ ମାଆ-ପୁଅ ଭଳି ପାଇବାର ଜାନି ଧରିବି । ...କିନ୍ତୁ ମୁଁ କଣ କିଛି ପାଇନାହିଁ ବୋଲି ଭାବୁଛୁ ? ତୁ ତୋ ଗୁଣମଣି ବଡ଼ପୁଅକୁ ଚିହ୍ନି ନାହୁଁ ।

(ରାଧାମଣି ଦେଈ ଇତି ମଧ୍ୟରେ ବଡ଼ପୁଅ ପ୍ରତି ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲେ । କହୁଥିଲେ—ମୁଁ ସେଇଆ କହୁଥିଲି ପରା ! ମୋତେ ସବୁଥର ହେଳଣା କହୁଥିଲେ ଯେ ଅମିନ ଡାକିବା ଚୂନା ପକେଇବା, ଅମୁକ କରିବା, ସମୁକ କରିବା । ମୁଁ କହୁଛି ନାହିଁ । କୋଉ ବକଟେ ନାକୁରୁ ଜାଗା, କୁଡ଼ିଆ ଖଣ୍ଡେ, ପନ୍ତପନ୍ତଆ ଜମି କେଇ ଗୁଣ୍ଠ । ଶ୍ୱଶୁରେ ଗୋଟାଏ ଖିଆଲରେ କିଣି ପକେଇଥିଲେ, ଆଉ ଭଏ ନଥା ନଥା କେଇଟା ବର୍ଷ ବହିଯାଇଥିଲେ ସେଠି । ହୁଁଃ ! ତାକୁଇ ନେଇ ଏତେ ମୁଣ୍ଡ ଘୂରେଇବା ଦରକାର ନାହିଁ । ସବୁ ସେଇ ବଡ଼ ପୁଅ ଉପରେ ସ୍ଥୁଡ଼ିଥ, ସେଇ ମୋର ଯୁଧିଷ୍ଠିର ।)

ହଁ ବୋଉ, ଠିକ୍ କହୁଛୁ; କିନ୍ତୁ ତୋ ଯୁଧିଷ୍ଠିର ଯେଉଁ ନଖ୍ୟ ପାଉଛି, ଅହୃତ ପାଇବ, ତୁ ବୁଝିପାରିବୁ ନାହିଁ । ତୃଷ୍ଟିଯିବାର ପ୍ରସାଦ । ଅବିଚ୍ଛେଦ୍ୟ ଅଚ୍ଛେଦ୍ୟ ଅବିନାଶୀ ସଂପଦ, ଯାହାକୁ ଶାନ୍ତି ବୋଲି କହନ୍ତି । ସେଇଠୁଁ ସ୍ୱର୍ଗ ।

× × × ×

ଭୈରବବାବୁ ବିଦାୟ ନେବାର କିଛି ଦିନ ପରେ ଅମ୍ବିକା ଦେବୀଙ୍କ ଦର୍ଶନ କରିବାର ସୁଯୋଗ ଆସିଲା । ରାଧାମଣି ଦେଈ ବାରମ୍ବାର କହି ଆସିଛନ୍ତି ଯେ ବଡ଼ପୁଅର ଚାକିରି ଜାଗାକୁ ଗଲେ ସେ ନିଶ୍ଚୟ ଏଇ ପ୍ରତ୍ୟକ୍ଷ ଠାକୁରାଣୀଙ୍କ ପାଖକୁ ଯିବେ ଏବଂ ମାମୁନିର ପୁଅ ପାଇଁ ମାନସିକ ମାଗି ଆସିବେ; କିନ୍ତୁ ଦୁର୍ଭାଗ୍ୟ ଯେ ପାହାଡ଼ର ଦି ପାହାଚ ନ ଚଢ଼ୁଣୁ ସେ ହାଁଫେଇ ଗଲେ । ବସି ପଡ଼ିଲେ । ତଥାପି ବସି ଉଠି ଯିବାକୁ ଚାହିଁଲେ; କିନ୍ତୁ ବୈଷ୍ଣବବାବୁ କହିଲେ—ନା, ମୁଁ ତା' କରେଇ ଦେବି ନାହିଁ । ମୁଁ ଯିବି । ତୋ ପାଇଁ, ମାମୁନି ପାଇଁ,—ମାମୁନିର ପୁଅପାଇଁ ଯାହା କହିବାର କହି ଆସିବି ଦେବୀଙ୍କୁ । କିଛି କ୍ଷତି ଅଛି ?

ରାଧାମଣି ଦେଈ ଅଗତ୍ୟା ରାଜି ହେଲେ । ପାହାଡ଼ର ପାଦଦେଶରେ ଥିବା ଚଟି ଘରେ ଅପେକ୍ଷା କଲେ; କିନ୍ତୁ ଟିମ୍ମା ସାଙ୍ଗରେ ଆସିଥିଲା, ସେ ବି ଲାଙ୍ଗୁଡ଼ ଫଟ୍‌ଫଟ୍ କରି ବୈଷ୍ଣବବାବୁଙ୍କ ପିଛା ଧରିଲା । ବୈଷ୍ଣବବାବୁ ତାକୁ ମନା କଲେ, ହସିଲା ପରି ହୋଇ କହିଲେ—ବୋକା, ତୁ ସେଠିକି ଯାଇପାରିବୁ ନାହିଁ । ତୁ କେବଳ କୁକୁର, ବୁଝିଲୁ ?

ଦୁଃଖର ବିଷୟ କୁକୁର ବୁଝିଲା ନାହିଁ କି ମାନିଲା ନାହିଁ । ବାଧ୍ୟ ହୋଇ ବୈଷ୍ଣବବାବୁ ତାକୁ ପିଟିବାକୁ ଯାଉଥିଲେ, କିନ୍ତୁ ସେ ଅଟକିଗଲେ । ଟିମ୍ମାର ଏକ ନୂତନ ସ୍ୱର ଶୁଣିବାକୁ ପାଇଲେ । ପ୍ରତିବାଦ ନୁହେଁ, ବିଳାପ ନୁହେଁ, ସକରୁଣ ଯାଚନା । ମୋତେ ଫେରାଇ ଦିଅ ନାହିଁ, ମୁଁ ତୁମର ବିଷାଦକୁ ଜଗି ରହିବି, ମୋତେ ବିଶ୍ୱାସ କର, ଅନ୍ତତଃ ଅଧବାଟ ଯାଏ···

●

# ଏବଂ ଅତିରିକ୍ତ

ସରସ୍ୱତୀ ସ୍ୱାମୀଙ୍କ ମୁହଁକୁ ନ ଅନେଇ ଉଦାସ ମନ୍ଥର ଗୁଆକଟା ବନ୍ଦ ନ କରି କହି ଚାଲିଲେ—

“ମଣିଷ କ’ଣ କରିବ ଏଥିରେ କହିଲ ? ଡାକ୍ତରବାବୁ ଘରେ ନାହାନ୍ତି, ଥିଲେ ମଧ୍ୟ ଆସିପାରିବେ ନାହିଁ । ଦୋକାନ ବଜାର ଖୋଲିବାକୁ ନାହିଁ । କାର୍‌ଫେଇ ପଦାକୁ ବାହାରି ହେବ ନାହିଁ, କାହିଁକିନା ସେମାନେ ଟେକା ପକେଇବେ । ଚାଲି ଚାଲି ଗଲେ କେତେବେଳେ କେଉଁ କଥା । ଏ ଗଣ୍ଡଗୋଳ କ’ଣ ବନ୍ଦ ହେବ ନାହିଁ ? କେବେ ସରିବ ?”

ସ୍ୱାମୀ କେତେବେଳେ ଯୋଡ଼ି ଝଟର ଅଫଲଗ୍ନ ଚକିଆ ଆଡ଼େ, କେତେବେଳେ ମାଛ କାଢରେ ପ୍ରସ୍ତୁତ ଭଗବାନଙ୍କ ଛବି ଆଡ଼େ, ଅବା କେତେବେଳେ ଗୁଆକଟାକୁ ଅନାଉଥିଲେ । ପ୍ରଶ୍ନର ଉତ୍ତର ଦେବେ ବୋଲି ମନେ ହେଉନାହିଁ ।

“ମୁଁ କଣ ଆଉ କୋଉଥିପାଇଁ କହୁଛୁ ? ଆମର ଏତେବଡ଼ ବିପଦ; କିନ୍ତୁ କୋଉଠୁ କିଛି ହେଲେ ସାହାଯ୍ୟ ମିଳିବାର ନାହିଁ । ବାପା ଯଦି ପାଟଣାରେ ଆମ ପାଖରେ ଥାଆନ୍ତେ—”

କଥା ନ ସରୁଣୁ ସ୍ୱାମୀ ଗୌରବାବୁ ପ୍ରସ୍ଥାନ କଲେ । କାହିଁକି ବୋଲି ପଚାରିଲେ ହୁଏତ କହି ପାରିଥାନ୍ତେ ଯେ ପୁରୁଣା ଗାଉଣା, ମୋର ଶୁଣିବାକୁ ସମୟ ନାହିଁ । ହେଲେ ତାଙ୍କ ପାଖରେ ସମୟର ଅଭାବ ନଥିଲା । ଖଡ୍ଗପୁରରେ ଥିବା ଏକ ପୈତୃକ ଘରେ ସେ ସବୁଦିନେ ସାନବାବୁ, ତାଙ୍କର କିଛି କରିବାକୁ ନାହିଁ, ବୁଝିବାକୁ ନାହିଁ ଏବଂ ସେ ଯେଉଁଥିପାଇଁ ସସ୍ତ୍ରୀକ ଆସିଛନ୍ତି, ପନ୍ଦର ଦିନରୁ ଉପରେ ହୋଇଗଲାଣି, ତା’ର ଫଇସଲା ହୋଇ ସାରିଛି । ଗୌରବାବୁଙ୍କୁ ଜଣା ଯେ ବାପା ମରିବେ । ଆଜି ନହେଲେ କାଲି । ତେଣୁ ଅଧିକା ସମୟ ପାଇ ଲାଭ କ’ଣ ?

ଲାଭ ନାହିଁ; କିନ୍ତୁ ଯେତେବେଳେ ମୋ ବାପା । ସରସ୍ୱତୀର ନୁହେଁ କି ମୋ ପିଲାଙ୍କର ନୁହେଁ କି ଆଉ କାହାର ନୁହେଁ । ତାଙ୍କର ଏଇ ଶେଷ ମୁହୂର୍ତ୍ତରେ

ମୋର ଯେତେ ଯାହା ଭାବିବାକୁ ଅଛି ତା' ମୁଁ ଜାଣେ । ପାଟଣାରେ ତାହିଁକି ଆମ ପାଖରେ ରହିଲେ ନାହିଁ, ଏଇଠି ଏକୁଟିଆ ପଡ଼ି କଷ୍ଟ ପାଇଲେ ଏଭଳି ଧାରଣା ଅନ୍ୟମାନଙ୍କ ମନକୁ ଆସିପାରେ । ସେଥିକରେ ସେମାନେ ଟଳସ ହୋଇଯାଇ ପାରିବେ । ମୁଁ ନୁହେଁ, ଏଠି ଅଛୁ ବୋଲି ଆମେ ବୃଣପଟେ ଲଗିଥିବା କଥାଁ ମଝିରେ ଅଟକି ଯାଇଛୁ, ପାଟଣାରେ ଅବସ୍ଥା ଭିନ୍ନ ହୋଇଥାଆନ୍ତା, ଏଗୁଡ଼ା ବ ବାଜେ କଥା, ମାଇପି କଥା । କଥାଁ କୋଉଠି ଲଗିନାହିଁ ? ତାହିଁକି ଲଗିବ ନାହିଁ ? ସେଥିଯୋଗୁ ବାପା ମରୁ ନାହାନ୍ତି । ବିପ୍ଳବ ଯେଉଁବାଟେ ଯାଉ ବାପା ମରିବେ । ପୂର୍ଣ୍ଣଚ୍ଛେଦ ।

ହୃଦୟର ହେଉ ବାକ୍ୟଟି ମନେ ମନେ ଉଚ୍ଚାରଣ କଲାରୁ ଗୁଡ଼ାଏ ଭିତର କୋଣ ହୋଇଯାଏ । ଗୌରବାବୁ ବେଦନାକୁ ସହିନଥାନ୍ତି, ଉପଭୋଗ କରନ୍ତି । ମୋତେ କଷ୍ଟ ହେବ ନାହିଁ ତ ଆଉ କାହାକୁ ହେବ ? କିଏ ତାହିଁକି ସେଥିରେ ଭାଗ ପକେଇବ ? ନା ମୁଁ କାହା ପାଖରେ ବସି ସକେଇବ ? ସହଧର୍ମିଣୀ ଛଡ଼ା ଆଉ କାହା ସହିତ ଏଭଳି ଆଚରଣ କରିବାର ପ୍ରଶ୍ନ ଉଠୁ ନାହିଁ, ଅତଏବ ଗୌରବାବୁ କଣ କେବଳ ତାଙ୍କୁ ହିଁ ଆପଣାର ଏକାନ୍ତ ବ୍ୟକ୍ତିଗତ ଦୁଃଖରୁ ଦୂର୍‌ଦୂର କରୁଛନ୍ତି ବୋଲି ସନ୍ଦେହ ଆଣିପାରେ; କିନ୍ତୁ ଗୌରବାବୁ ସେହି ମର୍ମରେ କେବେହେଲେ ଭାବ ନାହାନ୍ତି । ବରଂ କହିବାକୁ ହେବ ଯେ ଆଜିକାଲି ସରସ୍ୱତୀ ନିଜେ ସିଧା ହୋଇ ସ୍ୱାମୀଙ୍କ ମୁହଁକୁ ଅନାଉ ନାହାନ୍ତି । ମନେହୁଏ ସେ ସ୍ୱାମୀଙ୍କର ବର୍ତ୍ତମାନର ଚୁପ୍‌ଚାପ୍‌ର ଢଙ୍ଗକୁ ବୁଝନ୍ତି, ତା' ପଛକୁ ଥିବା କୋମଳ ହୃଦୟର କନ୍ଦଳକୁ ଅନୁମାନ କରନ୍ତି । ପ୍ରଶ୍ନ ନ ପଚାରି ରହିପାରନ୍ତି ନାହିଁ, ହେଲେ ଉତ୍ତର ନପାଇଲେ କିଛି ମନରେ ଧରନ୍ତି ନାହିଁ । ଆଉ କେଇଟା ଦିନର କଥା । ବାପା କଣ ସତେ ବଞ୍ଚିବେ ?

ଦୁହିଁଙ୍କର ପୂର୍ଣ୍ଣବିଶ୍ୱାସ ସେ ଗୋଟିଏ ମର୍ମନ୍ତୁଦ ମୁହୂର୍ତ୍ତ ପାଖ ହୋଇଗଲାଣି । ଜଣେ ନିଜକୁ ଜାଣିଶୁଣି କଷ୍ଟ ଦେଲାପରି ପୂର୍ଣ୍ଣଚ୍ଛେଦର ଗାର ଟାଣିଥାଏ । ଅନ୍ୟ ଜଣକ ନାରୀ ଯେତେହେଲେ, ନିଜ ପ୍ରତି ଏତେ ନିଷ୍ଠୁର ହୋଇପାରେ ନାହିଁ । ପ୍ରଶ୍ନବାଚକର ଆଙ୍କୁଡ଼ିକେ ଆଣି ଦେବାପାଇଁ ମନେ କରେ ।

ଗୌର୍‌ବାବୁ ସ୍ତ୍ରୀଙ୍କ ପାଖରୁ 'କୋମା'ର ଅଚେତନ ଅବସ୍ଥାରେ ପଡ଼ିଥିବା ବାପାଙ୍କ ପାଖକୁ ଫେରିଗଲେ । ପୁଣି ସେଇ ଅସାଡ଼ ଦେହ, ସିଠା ମୁହଁର ବ୍ୟାଦାନକୁ ଅନେଇ ରହିଲେ । ଅନଉଁ ଅନଉଁ ହଠାତ୍ ଭୋ'କିନା କାନ୍ଦି ଉଠିଲେ । ଏତେ ବଡ଼ ଶବ୍ଦ କରି କାନ୍ଦିଲେ ଯେ ହୁଏତ ବାହାରକୁ ଶୁଣା ଯାଇଥିବ । ବାପା, ଆପଣଙ୍କ ମୁହଁରେ ହସ ନ ଆସିଲେ ନାହିଁ, ତେଜ ନଥିଲେ ନାହିଁ, କିନ୍ତୁ

ଏମିତି ଲୋକାଙ୍କ ପରି ବିଶ୍ବବନ୍ଧୁ କାହିଁକି ? ଆପଣ ଏମିତି ମରିବେ ନାହିଁ ! ମୋଟେ ଏମିତି ମରିବେ ନାହିଁ !!

ଶବ୍ଦ ଶୁଣି ସ୍ବକର ପୂଜାଶ୍ୱ ଦ'ଜଣ ଅପଣା ଖଞ୍ଜାରେ ଉଙ୍କି ମାରି ଫେରି-ଗଲେଣି । କାଉଟାଏ ମଧ୍ୟ ଡରିଯାଇ ବୁଝିନେଲାଣି ଯେ ଇଏ ଗୋଟାଏ ମିଛ ହାଉ, ଏବଂ ସେ ମନା ପିଣ୍ଡାରେ ପୁଣି ତଗ ତଗ ହୋଇ ବୁଲୁଛି; କିନ୍ତୁ ସରସ୍ୱତୀ ଥରେ ହେଲେ ଗୁଆ କଣ୍ଠା ଗୁଡ଼ି ଆସି ନାହାନ୍ତି ଇଆଡ଼େ । ତା'ର କାରଣ ନୁହେଁ ଯେ ସେ ଶବ୍ଦ ଶୁଣି ପାରିଲେ ନାହିଁ, ଅବା ସ୍ୱାମୀଙ୍କ କାନ୍ଦଣାକୁ ସାମାନ୍ୟ ବୋଲି ଭାବିଲେ । ବାସ୍ତବରେ ତାଙ୍କ କାନ ଠିଆ ହୋଇ ଯାଇଥିଲା, ତାଙ୍କ ହାତରୁ ଚୁଆଁଲାଣ୍ଠ ଖସିପଡ଼ିଥିଲା, ସେ ବୋଧହୁଏ ମୁହୂର୍ତ୍ତିକରେ ଦୌଡ଼ିଯାଇ ସ୍ୱାମୀଙ୍କ ପାଖରେ ଛିଡ଼ା ହୋଇ ଯାଇଥାଆନ୍ତେ; କିନ୍ତୁ ଏହି ସମୟରେ ବାର ତେର ବର୍ଷର ସ୍ବକର ଟୋକା ବହୁ ଧଇଁସଇଁ ହୋଇ ମାଆ ମାଆ ବୋଲି ତିନିଥର ଡାକି ତାଙ୍କର ସମ୍ମୁଖୀନ ହେଲା, ଏବଂ କହିଲା—

'ଲାଗିଗଲାଣି'

'କରେ କଅଣ ?'

'ଯୁଦ୍ଧ । ବନ୍ଧୁକ ମାରିଲାବାଲା, ବଡ଼ ପୁଲିସ୍, ମୁଁ ନିଜ ଆଖିରେ ଦେଖି ଆସିଛି ।'

ସରସ୍ୱତୀ ବୁଝିପାରିଲେ ଯେ ସେ ସି.ଆର.ପି. ଦଳଙ୍କ କଥା କହୁଛି । ଆଉ କିଛି ପଚାରିବା ପୂର୍ବରୁ ସେ କହି ଚାଲିଛି, 'ଚୌଧୁରୀ ପଡ଼ିଆଟାକୁ ପୂରା ଘେରିଗଲେଣି ସବୁ ! ମୁଁ ସତ କହୁଛି—

ବହୁର ଉତ୍ତେଜିତ ଖଣ୍ଡି ଖଣ୍ଡି ଘୋଷଣାକୁ ଏକାଠି କରି ସରସ୍ୱତୀ ନିଜେ ଉତ୍ତେଜିତ ହେବାକୁ ଲାଗିଲେ । ସେଥିରେ ଆଶଙ୍କାର ମାତ୍ରା ବିଶେଷ ଥିଲା ବୋଲି ଜଣା ପଡ଼ୁନାହିଁ । ଅପରନ୍ତୁ ଉଦ୍ୟତ ଚଞ୍ଚଳ ହେବାର କାରଣ ମିଳିଯାଇଛି, ଏହି ଭାବରେ ସେ ଉଠି ଠିଆହେଲେ, ଅଣ୍ଟାରେ କାନି ଭିଡ଼ିଲେ ଓ ବିସ୍ଫାରିତ ନୟନରେ 'ଆଚ୍ଛା ?' 'ଆଚ୍ଛା ?' ବୋଲି କହିଲେ । ମଧୁରିଆ ଘରଣୀପଣ ଗୋଟିସଣେ ଭାସି-ଯାଉଛି ଏବେକଣି, ଗମ୍ଭୀର ବିଷାଦର ଚିହ୍ନବର୍ଣ୍ଣ ନାହିଁ । ସ୍ୱର କାନ୍ଦର ବାହାରେ ବାଜା ବାଜୁଛି ସବୁ । ଘରଣୀ ଚୁପ୍ ହୋଇ ରହିବ କେମିତି ? ଦୋକାନ ବଜାର ବନ୍ଦ ରହିଲେ ଚଢ଼ି ମାଡ଼ିବା କଥା, ଡାକ୍ତର ନ ମିଳିବା ଦୁଃଖର ବିଷୟ; କିନ୍ତୁ ବର୍ତ୍ତମାନ ତ ଆକ୍ସନ ଆସିଗଲାଣି । ଚୌଧୁରୀ ପଡ଼ିଆକୁ ଘେରି ଗଲେଣି ସେମାନେ । ଏଣେ 'ଦୁର୍ଣ୍ଣିବାହିନୀ'ର ଅମାନିଆ ଟୋକାଗୁଡ଼ାକ ମାଡ଼ି ଆସୁଛନ୍ତି

ସେଠିକି ସଭା କରିବେ ବୋଲି । କିଛି ଗୋଟାଏ ଘଟିବ । ଚୌଧୁରୀ ପଡ଼ିଆ ବେଶି ଦୂର ନୁହେଁ, ଆମ ଘରକୁ ନିଶ୍ଚୟ ଶୁଣାଯିବ—

ସେଇଠୁଁ ତାଙ୍କର ଖିଆଲ ହେଲା ଯେ ଖାଲି ଶୁଣାଯିବ ନୁହେଁ ହୁଏତ ଲୋକେ, ପୁଲିସ କି ଟୋକାଏ, ଆମ ଘରକୁ ପଶି ଆସି ପାରନ୍ତି ! ଉତ୍ତେଜନାରେ ସାମାନ୍ୟ ଭୟ ମିଶି ଗଲା ଏବଂ ସେ ଆହୁରି ତେଜସ୍ୱିନୀ ହୋଇ ଉଠିଲେ । କିଛି କରିବାକୁ ହେବ, ତତ୍‌କ୍ଷଣାତ୍ । ଏହି ସମୟରେ ବନ୍ଟୁ ହାତରେ ଧରିଥିବା କାଗଜ ପତାକା ତାଙ୍କ ଆଖିରେ ପଡ଼ିଲା । ନେଳିଆ ରଙ୍ଗ, ମଝିରେ ଗୋଟାଏ ସୁନେଲି ଗୋଲ୍, ସେଥିରୁ ବଙ୍କାଢଙ୍କା ଗାରମାନ ବାହାରିଛି, ଉଡ଼ନ୍ତା ଜଟାପରି ଦିଶୁଛି··· ଆରେ ଏଇ ତ ବାହିନୀର ପତାକା ! ରଙ୍ଗ ଗୋଳମାଳ ହୋଇଯାଇଛି; କିନ୍ତୁ ଇଏ ହେଉଛି ସୂର୍ଯ୍ୟ, ସୂର୍ଯ୍ୟ କିରଣ ! ସରସ୍ୱତୀ ଚଟ୍‌କିନି ପତାକାଟା ବନ୍ଟୁର ହାତରୁ ନେଇ ଆସିଲେ ଓ ମୋଡ଼ିମାଡ଼ି ଭାଙ୍ଗିଦେଲେ । କହିଲେ, କୋଉଠୁ ଆଣିଲୁ ଏୟା'କୁ ? କିଏ ଦେଲା ?

ଏତିକିରେ ଯଥେଷ୍ଟ ନୁହେଁ । ଆହୁରି କିଛି କରିବାକୁ ହେବ । ଅନ୍ତତଃ ତାଙ୍କୁ ଜଣେଇବାକୁ ହେବ; କିନ୍ତୁ ସେ ତ ଆର ଘରେ । ତା' ଛଡ଼ା ଗୋଟାଏ କାନ୍ଦଣାର ଶବ୍ଦ, ଏଇ କିଛି ସମୟ ଆଗରୁ, ବେଶ୍ ବଡ଼ ଧରଣର । ହେଲେ ସେ କିଏ କାନ୍ଦୁଥିବେ ଏତେବେଳଯାଏ ? ଲୁହ ଅବଶ୍ୟ ଶୁଖିନଥିବ, ଶୁଖିପାରିବ ନାହିଁ··· ସରସ୍ୱତୀ ଭାବିଚିନ୍ତି ଅସ୍ଥିର ହେଲେ । ଜରୁରୀ କାମ; ଯେମିତି ହେଲେ କରିବାକୁ ହେବ, ଏହି ଭାବରେ ତତ୍ପର ହୋଇ; କିନ୍ତୁ ମୁହଁରେ ଆପଣା ଦୁଃଖର ଭାଗୀପଣ ଫେରାଇ ଆଣି ସ୍ୱାମୀଙ୍କୁ ଖୋଜିବାକୁ ଗଲେ । ଏଁ ? ଏ କଅଣ ? ଆରଘର ଦୁଆର ମୁହଁକୁ ଯାଇ ଦେଖିଲେ କବାଟ ବନ୍ଦ ।

ଖଟ୍ ଖଟ୍ କରିବାକୁ ଯାଇ ଅଟକିଗଲେ । ଯେମିତିକି ଗମ୍ଭୀରକୁ ଯିବାର ନୁହେଁ ।

ସନ୍ଦେହ ନାହିଁ ଯେ ଗୌରବାବୁ ଦୁଃଖର ଗହ୍ୱରରେ ଡୁବି ଯାଇଥିଲେ । କାନ୍ଦଣା ରହିଗଲା ପରେ ଯେମିତି ହୁଏ । ମାନେ ଅଶ୍ରୁ ସରିଗଲା, ଏଣିକି ଅସହନୀ ଅସରଣିର ଅନୁଭବ । ତା'କୁ ଲଭିବାକୁ ହେବ, ଉପାୟ ନାହିଁ, କିନ୍ତୁ ସେଥିପାଇଁ କବାଟ କିଲିବାକୁ ପଡ଼ି ନ ଥାଆନ୍ତା । କ୍ଷଣିକ ଆବେଗରେ ସେ ଯାହା କରି-ପକେଇଲେ, ତା'ର କାରଣ ହେଉଛି ସେ ଭାବିଲେ ମୋ ଦୁଃଖରେ ଗୋଟାଏ ଗ୍ଲାନି ଅଛି, ବାହାରକୁ ଦିଶିବାର ନୁହେଁ । ଗ୍ଲାନିର ତଥ୍ୟ ଅଜବ୍, ଅଶ୍ଳୀଳ । ମନେ ହେଲା ବାପା କହୁଛନ୍ତି ଯେ ତାଙ୍କ ଶେଷ ଚେହେରା ପାଇଁ ମୁହିଁ ଦାୟୀ, ପୁଅ ଜଣକ । କହୁଛନ୍ତି ମୁଁ ସ୍ୱାକୁ ବଦଳେଇ ପାରିବ ନାହିଁ, ଖାସ୍ ତୋରି ପାଇଁ ଛୁଡ଼ିଯିବ, ମୁଁ

କେମିତି ନଷ୍ଟ ହୋଇଗଲି ବୋଲି ଦେଖଉଥିବ । ମୋର ସ୍ୱାସ୍ଥ୍ୟ, ତେଜ, ପ୍ରତିଷ୍ଠା ସବୁ ଥାଆନ୍ତା, ମୁଁ ସେମିତି ଠେକା ପିନ୍ଧି ପ୍ରଫୁଲ୍ଲ ବଦନରେ ଆଶିର୍ବାଦ ଦେଇଥାଆନ୍ତି; କିନ୍ତୁ ତୁ ସେତିକି କରେଇ ଦେଲୁ ନାହିଁ । ଆରେ, ତୁ ତୋ କାମଦାମ ଗୁଡ଼ ଏଇଠି ଆସି ରହିଲୁ ବୋଲି କହୁନାହିଁ, ତୋ ଦୋଷ ଏବେକାର ନୁହେଁ, ପିଲଦିନରୁ...ତୁ ମୋତେ ସମ୍ମାନ ଦେଇ ପାରିଲୁ ନାହିଁ । ମୋତେ ନାଗବରେ ଗୋଇଠା ମାରିଲୁ, ମୁନିଙ୍କ ପଣ ପାଟି ଫିଟେଇ ମୋର ଧର୍ମଧାରଣା ଭାବଭାବନା ଉପରକୁ ଛେପ ପକେଇଲୁ । ପୁଅ ହୋଇ ପାରିଲୁ ନାହିଁ । ସେଇଥି ପାଇଁ ମୁଁ ଏମିତି ହାରି ଯାଇଛି, ଶେଷ ହୋଇ ପଡ଼ିଛି, ତଳେ ଘୁସୁରୁଛି, ରକ୍ତ ବି ବହୁନାହିଁ ଟିକିଏ, ଖାଲି ଅନେଇଛି ଉପରକୁ, ଅନେଇଥିବ, ପାଟି ମେଲାହୋଇ ଯାଇଛି, ରହିଥିବ ଏମିତି । ଶେଷରେ ବି ପୋଡ଼ାହେବ ନାହିଁ । ଭବାଟ ବଦନକଲେ କେତେ, ନକଲେ କେତେ, କାନ୍ଦିଲେ କେତେ, ନକାନ୍ଦିଲେ କେତେ ।

ପରିଭବ ଜଣଙ୍କର ହୋଇ ରହିପାରେ ନାହିଁ, ତାର ବଶ ଚରିଯାଏ । ପ୍ରଥମେ ପୁଅକୁ ଯାଇବ ନାହିଁ ତ ଆଉ କୋଉଠିକି ଯିବ ?

ବିଶାଳ ମାଂସଳ ମୁହଁ, ହେଲେ ଲୁରୁପୁରୁ ମୋଟେ ନୁହେଁ ! ଲମ୍ବ ନାକ, ବଡ଼ ଆଖିପତା, ମୋଟା ଓଠ, ଚଉଡ଼ା ଯୋମଣି । ଏମିତିକା ମୁହଁରୁ ଭାଷା ବାହାରିଲେ ମନେହେଉଥିଲା ଯେ କଦା ବ୍ୟକ୍ତିତ୍ୱରୁ ବାକ୍ୟ ବାହାରିଲା, ଲେଖିନିଅ । ଯଥା— ସ୍ତ୍ରୀ ଲୋକମାନେ ସମାଜର ଅଳଙ୍କାର । ସିପାହୀ ନୁହଁନ୍ତି, କିରାଣି ନୁହଁନ୍ତି, କି ଚକଚକିଆ ଖେଳଣା ନୁହଁନ୍ତି, ସନ୍ତାନ ପାଳନ .....ଗୁରୁମାନେ ବିଦ୍ୟାର୍ଥୀ, ପାଠ ନ ପଢ଼ିଲେ ବେତ, ପଡ଼ିକା ଧରିଲେ ବାହାରି ଯାଅ ସ୍କୁଲରୁ (ବାପା କଲେଜକୁ ସବୁବେଳେ ସ୍କୁଲ କହିଲେ ଶିଖି ନଥିଲେ)...ଫ୍ୟାମିଲି ପ୍ଲାନିଙ୍ଗ୍—ଛୁଃ ! ତମେ କିଏ କିଣ ପ୍ଲାନ୍ କରିବ ? ତମେ କିଣ ଭଗବାନ୍ ? ଏଇ ନିର୍ବୋଧମାନେ ସେତିକି ବୋଧ ଜାରବାର । ବୁଝିଲି ନା ଗୌର ବୋଉ ? (ବୋଉ ମୁଣ୍ଡ ଟୁଙ୍ଗାଉଥିବାରେ କଦ ସି ହେଲା କରୁନଥିଲା । ମୋର ଧାରଣା ବାପା ତାକୁ ବଞ୍ଚିବା ପାଇଁ ବାଧ୍ୟ କରିପାରିଲେ ନାହିଁ, ନ ହେଲେ ସେ ଆଜିଯାଏ ମୁଣ୍ଡ ଟୁଙ୍ଗାଉ ପାରିଥାଆନ୍ତା, ଆଉ ବସି ଥାଆନ୍ତା, ଏଇକ୍ଷଣି ବାପାଙ୍କ ଗୋଡ଼ ପାଖରେ, ମୋ ଦୁଃଖରୁ ଅଧେ ନେଇଯାଇ ଥାଆନ୍ତା).... ସାମ୍ୟବାଦ, ଫାମ୍ୟବାଦ ବାଜେକଥା । ଯେତେକ 'ବାଦ' ହେଉଛି ବାଦ କରିବା, ସହି ନପାରିବାର ଲକ୍ଷଣ...ଇତ୍ୟାଦି; କିନ୍ତୁ ଶ୍ରୋତାମାନେ କମି କମି ଗଲେ । ଶେଷକୁ ବୋଉ ଖସି ଚାଲିଗଲେ ସେ ସ୍ୱରକୁ । ଗତ ଦ' ବର୍ଷ ହେଲା ବାପା ତ' ହେଲେ କାହାକୁ କିଛି ଶୁଣେଇ ପାରୁ ନଥିଲେ ? ସେଇଥି ଲାଗି ଏଇ ଅବସ୍ଥା ? ମୁଁ ଅବଶ୍ୟ ନାନାଦି ଅସୁବିଧାରେ ପଡ଼ି ବିଶେଷ ଯା'ଆସ କରି ପାରିଲି ନାହିଁ ।

( ୩ )

ପୁରୁଣା ଘରର ପୁଷ୍ଟାଗ୍ର ମଧ୍ୟ କେହି ନଥିଲେ । ପାନା ଘରର ମଣଗଲାଣି, ବାଲୁ ପୁଷ୍ଟାଗ୍ର ନିଜ ହୋଟେଲ ଗଢ଼ିଲାଣି । ବାଲୁ ଆସୁଥିଲା ମଝିରେ ମଝିରେ, ବାପା ତାକୁ ତା' ମୁହଁ ଉପରେ ବେଇମାନ୍ କହୁଲେ ସେ ଦାନ୍ତ ଦେଖଉଥିଲା, ତା' ହୋଟେଲରୁ ବାପାଙ୍କ ପାଇଁ ଗରମ୍ ଗରମ୍ ଚପ୍ ଆଣିଦେଉଥିଲା । ଶୁଣିଲି ସେ ବି କଡ଼ଛଡ଼ା ଦେଲା; କିନ୍ତୁ·· କେଇଟା ବର୍ଷ ତଳର କଥା କଣ ମନେନାହିଁ ଆପଣଙ୍କର ? ଯେତେବେଳେ ମୁଁ ଓଡ଼ଶାରେ ଥିଲି, ଆଉ ମାସେ ଦ'ମାସରେ ଆସି ପହଞ୍ଚି ଯାଉଥିଲି ? ବାପା ଆପଣଙ୍କୁ ମାନିବାକୁ ପଡ଼ିବ ଯେ ଯେତେବେଳେ ମୁଁ ଆପଣଙ୍କ କଥାରେ ମୋଟେ ଗୁମ୍ ହୋଇ ରହୁ ନଥିଲି, ଅଥବା ଓଠଚପା ଅଧା ହସ ହସୁ ନଥିଲି । ସେବକୁ ମୋର ଦୟା, ମାନେ ସହାନୁଭୂତି ଆସି ଯାଇଥିଲା, ମୁଁ ପ୍ରକୃତରେ ଭାବୁଥିଲି, ମୋତେ ବିଶ୍ୱାସ କରନ୍ତୁ ଯେ ଆପଣଙ୍କ କଥାରେ ସତ ନାହିଁ ବୋଲି କହୁ ହେବନାହିଁ । ଯାହାହେଉ ପଛେ ଗୋଟାଏ କିଛି ଆସ୍ଥା, ମୂଲ୍ୟବୋଧ ଥିଲେ ଆମ ସମାଜରେ ଏତେ ଗଣ୍ଡଗୋଳ ହୁଅନ୍ତା ନାହିଁ । ସେଇଥି ପାଇଁ ମୁଁ ମୁଣ୍ଡ ଟୁଙ୍ଗାଉ ଥିଲି, ବୋଉଠାରୁ ବଳି । ତାକୁ ବି ଆପଣ ନକଲ ଦେଖାଣିଆ ବୋଲି ଭାବିଲେ ? ମନେନାହିଁ ? ଯେତେବେଳେ ମାଉର ଲଭ ମ୍ୟାରେଜ୍ କଥା ପଡ଼ିଲା, ସେ କେମିତି ଗୋଟାଏ ଚନ୍ଦ୍ରଆଣୀ ପୁଣି ତେଲଙ୍ଗାଣୀକୁ ବାହା ହୋଇ ବାପା ଭାଇଙ୍କ ମୁହଁରେ କଳା ବୋଳିଲା. ଯେଉଁ ଆପଣ ଲଭ୍ ଶବ୍ଦଟାକୁ ହେଟ୍ କରନ୍ତି ବୋଲି କହୁଲେ, ଆଉ ମୁଁ ପିଲଙ୍କ ପରି କୁରୁଳି ଉଠିଲି, ଆପଣ କଣ ବୁଝିପାରିଲେ ନାହିଁ ଯେ ମୁଁ ତାକୁ ଖାଲି ମଜାକଥା ଭାବି ହସିଲି ନାହିଁ, ମୁଁ ମଧ୍ୟ ସେଥିରେ ଯୋଗ-ଦେଲି ଯେ ମୁଁ ମଧ୍ୟ ଆଜି କାଲିକାର ପ୍ରେମକୁ ଛିଃ ବୋଲି କହୁଲି । ବାପା, ଆପଣ କଣ ଏମିତି ଧରିପାରିଲେ ନାହିଁ ଯେ ଆପଣ ବୁଢ଼ା ହେବା ସଙ୍ଗେ ସଙ୍ଗେ ମୁଁ ବି ବଡ଼ ହେଲିଣି ? ଗତ କେତେ ବର୍ଷ ଭିତରେ ପାଟଣାରୁ ବାରମ୍ବାର ଆସିହେଲା ନାହିଁ, ଆପଣ ବି ସେଠିକି ଯିବାପାଇଁ ମଙ୍ଗିଲେ ନାହିଁ, ନହେଲେ ମୁଁ ଆହୁରି କେତେ ମୁଣ୍ଡ ଟୁଙ୍ଗାଇ ଥାଆନ୍ତି, ଏକାଠି ହସିଥାନ୍ତି ଆପଣଙ୍କ ସାଙ୍ଗରେ, ଆମେ ଦ'ଜଣ କେମିତି ଏକାଭଳି, ବାପ୍-ବେଟା ହୋଇ ଗଲୁଣି ବୋଲି ଜଣେଇ ଦେଇ ପାରିଥାଆନ୍ତି······କିନ୍ତୁ ତା' ହୋଇ ପାରିଲା ନାହିଁ·· ଖାଲି ମୋ ଦୋଷ ନୁହେଁ; ମୋ ଦୋଷ ନୁହେଁ······

ବାପା, ଆପଣ ଏତେ ବିଚକ୍ଷଣ ଥିଲେ ସବୁ, ମୋ ଭିତର ମନକୁ ଦେଖି ପାରିଲେ ନାହିଁ କେମିତି ?

ନା' ଆପଣ ମୋତେ ସମୟ ଦେଲେନାହିଁ । ସବୁ ଆପଣଙ୍କ ଦୋଷ । ଆପଣ ମୁହଁ କରି ଥାଆନ୍ତୁ ସେମିତି, ଅଭି କଲାପରି ·····ମୁଁ ମୋଟେ ଅନେଇବି ନାହିଁ···

ଏହି ସମୟରେ ସରସ୍ୱତୀ ବେଶ୍ ଜୋରରେ କବାଟ ଝଟ୍ ଖଟ୍ କଲେ । କିଛି ସମୟ ପୂର୍ବରୁ ସେ ସ୍ୱାମୀଙ୍କ ଆପଣା ଶୋକରେ ଯଥେଷ୍ଟ ସମ୍ମାନ ଦେଇ ନିଜକୁ ଫେରାଇ ନେଇଥିଲେ; କିନ୍ତୁ ଆଉ ପାରିହେଲା ନାହିଁ । କାରଣ କେବଳ ବନ୍ଧୁ ନୁହେଁ; ପାଖଆଖ ଘରର ଗୃହକର୍ତ୍ତା ଓ ଗୃହିଣୀ ତଥା ବାବୁଆଣୀମାନେ ପଦାକୁ ବାହାରି ଆସିଲେଣି । ଦୂରରୁ ଶୁଭୁଥିବା ଓ ବଢ଼ି ଉଠୁଥିବା କୋଳାହଳକୁ କାଳେ ଦେଖିହେବ ବୋଲି ଅନେଇଛନ୍ତି । ମନେ ହେଉଛି କିଛି ଗୋଟାଏ ଘଟିଲା । ମାଡ଼ଗୋଳ ଆରମ୍ଭ ହୋଇଗଲଣି ନିଶ୍ଚୟ; କିନ୍ତୁ ଏତେ ପ୍ରତିରୂପ କାହିଁକି ? ପୁଲିସ୍ ପିଟୁଛି, ଏମାନେ ଦୌଡ଼ି ପଳାଉଛନ୍ତି । ନା ଏମାନେ ଗର୍ଜୁଛନ୍ତି, ଆଉ ପୁଲିସ ମାଡ଼ି ଆସୁଛି । ଚୌଧୁରୀ ପଡ଼ିଆ ବେଶି ଦୂର ନୁହେଁ, ହେ ଭଗବାନ୍—

ହଠାତ୍, ସେଆଡ଼ୁ ଗୋଟାଏ ଲୋକ ଦଉଡ଼ି ଆସିଲା ଓ ପଡ଼ୋଶୀର ଏକତମ ଖୋଲା ଫାଟକ ଭିତରକୁ ମୁହେଁଇଲା । ତାକୁ ମନା କରାଗଲା, କିନ୍ତୁ ସେ ନେହୁରା ହେଲା । ତା' ପଛେ ପଛେ ଆହୁରି କେତେଜଣ ଦଉଡ଼ିବାର ଦେଖା ଯାଉଛି । ନିଶ୍ଚୟ ବାହିନୀର ଆଗୁଆ କମ୍ପା ପଛୁଆ ଲୋକ । ପୁଲିସ ମାଡ଼କୁ ଡରି ଧାଇଁ ଆସୁଛନ୍ତି ଆମ ଘରକୁ ! ସେମାନେ ଯା' ଘରକୁ ପଶିବେ, ତା' ଘରକୁ ପଶିବେ ନାହିଁ ବୋଲି କିଏ କହୁଛି ? ଏଠି ବୟୋବୃଦ୍ଧ ମୃତ୍ୟୁଶଯ୍ୟାରେ ବୋଲି କହିଲେ ମଧ୍ୟ ଶୁଣିବେ ନାହିଁ । ଟୋକାମାନଙ୍କୁ ବିଶ୍ୱାସ ନାହିଁ । ଆଉ ଅପେକ୍ଷା କରି ହେବନାହିଁ ।

ଝଟ୍ ଖଟ୍‌ରୁ ଧଡ଼୍ ଧଡ଼୍ କରିବାକୁ ପଡ଼ିଲା ।

ଦରଜା ଖୋଲି ହେଲାକ୍ଷଣି ସ୍ୱାମୀ ସ୍ତ୍ରୀ ପରସ୍ପର ନାହିଁ ନଥିବା ଉଦ୍‌ବେଗ ଓ ଉଚ୍ଛ୍ୱାସର ମୁହାଁମୁହିଁ ହେଲେ; କିନ୍ତୁ ତାକୁ କଳିବା ପାଇଁ ବେଳ ନଥିଲା । ସରସ୍ୱତୀଙ୍କ ମୁହଁରୁ ସଞ୍ଚିତ ଶବ୍ଦାବଳୀ ଅଜାଡ଼ି ହୋଇ ପଡ଼ିଲା—

"ସେମାନେ ଆସୁଛନ୍ତି ସବୁ···ଟୋକାମାନେ ପୁଲିସ ଗୋଡ଼ାଉଛି···"

"ବାହିନୀ ?"

"ହଁ-ହଁ-ସେଇମାନେ । ଜଣେ ପାଢୀବାବୁଙ୍କ ଘର ଭିତରେ ପଶିଗଲା । ବାକିମାନେ ଧାଇଁ ଆସୁଛନ୍ତି · ମୁଁ ଅବଶ୍ୟ ଫାଟକ ବନ୍ଦ କରି ଦେଇଛି ।"

"ନା ! ସେମାନେ ଆସିବେ ନାହିଁ ଏଠିକି । ଇମ୍ପସିବ୍‌ଲ"

ସ୍ୱାମୀଙ୍କର ଶକ୍ତିଶାଳୀ ତଥା କମ୍ପମାନ ଘୋଷଣାରେ ସରସ୍ୱତୀ ବିବ୍ରତ ହୋଇ ପଡ଼ିଲେ । ସେମାନଙ୍କୁ ଆସିବା ପାଇଁ ଦିଆଯିବ ନାହିଁ, ଭଲ, ମୁଁ ତ ସେଇଆ କରିବା ପାଇଁ ଆସିଥିଲି; କିନ୍ତୁ ସେଥିରେ ଏତେ ତାଉ, ତମ କାହିଁକି ?

ପାଞ୍ଚିଶ୍ଟି ବାଳଙ୍କର—ସେ ମଣି ନାହାନ୍ତି ଯେତେବେଳେ—କିନ୍ତୁ ଷଣ୍ଢ ହେବେନାହିଁ ତ ? ଲୋକରେ ପୁରୁଷମାନେ, ପୁଅମାନେ, ଏମିତି କାହିଁକି ହୁଅନ୍ତି ?

ମରହଟ୍ଟା ଆଉ ପଦୁଟିଏ କଥା ନକହି ଫେରି ଆସିଲେ। ସ୍ୱାମୀଙ୍କର ଅନ୍ତ-ଃସ୍ଥତା ଜାଣେ ବଢ଼ିଥିବ, ସେଇଥି ପାଇଁ। ଗୌରବାବୁ ତାଙ୍କୁ ପଛରୁ ଡାକିଲେ ନାହିଁ, କିମ୍ବା ବୋଲି କହିଲେ ନାହିଁ। ସେ ଟୋକାମାନଙ୍କ ପଶି ଆସିବାର ଭବିଷ୍ୟତ ଦୃଶ୍ୟକୁ ଯଥାପି ଅନୁମାନ କରୁଥିଲେ, ବରଦାସ୍ତ କରିପାରୁ ନଥିଲେ। ପଶିଆସିବେ ମାନେ ଏଇ ଘର ଭିତରକୁ ମଧ୍ୟ ଆସିବେ ଓ ମୋ ବାପାଙ୍କୁ ଦେଖିବେ। ଦେଖିବେ ତାଙ୍କର ନଙ୍ଗଳା କେମିତି ଭୂଇଁରେ ଲୋଟୁଛି, ହାଁ କରି ଅନେଇଛି। ସେମାନେ ହସିବେ' ଉଠିଣଆ ନଙ୍ଗ ହସ ହସିବେ—ଏଇ ହେଉଛନ୍ତି ଗୋପବନ୍ଧୁ ମହାପାତ୍ର ! ତାଙ୍କର ଏଇ ଦଶା ! ଆଉ କେହି ପଶିଆସିଲେ ଦୁଃଖ ନଥାଆନ୍ତା; କିନ୍ତୁ ଏଇ ଗାଁଗାର ଟୋକାମାନେ, ପୋଷ୍ଟ ମାଷ୍ଟର ଜମେଇ ଭୂୟାଁର ପୁଅ, ଏମ୍. ଏଲ୍. ଏ. ବଂଶୀଧର ପଟ୍ଟନାୟକର ଝିଅ, ମୋଟର ମେକାନିକ୍ ମଙ୍ଗୁଳୁ, ଓକିଲ ଜଗା ସାଉ ସେକ୍ରେଟରୀ ମାର୍କାମର୍ ଯୁବନେତା। ବେଖାତିରିଆ, ସତ୍ୟାନାଶିଆ। ସେମାନେ ଗୋପା ମହାପାତ୍ରଙ୍କ ନା ଶୁଣିଛନ୍ତି, ଆପଣା ବାପଭାଇ ବନ୍ଧୁବାନ୍ଧବଙ୍କଠାରୁ ଅବଶ୍ୟ ଶୁଣିଛନ୍ତି, ତାଙ୍କ ତେଜ, ଠାଣି ଫିଲସଫି। ତାଙ୍କୁ ଇତିହାସର ଶତ୍ରୁ, ବୁଢ଼ାବାଘ ବୋଲି ମଣୁଛନ୍ତି। ଅକର୍ତ୍ତବ୍ୟ ହୁଅନ୍ତୁ ପଛକେ ତାଙ୍କ ଗୁହାର ପାଖ ମାଡ଼ି ନାହାନ୍ତି। ମୁଁ ଜାଣିଛି। ବାପା ମୋତେ ଥରେ କହୁଥିଲେ, ମୁଁ ଯେତେବେଳେ ଗାଁରେ ଆସିଥିଲି ଦଶହରା ପାଇଁ। ଏଇ ଗଲା ମାସରେ। କହିଲେ—ଗୌରି, ତୁ ଏମାନଙ୍କୁ ଜାଣିଛୁ ? ଏଇ ଯେଉଁ ନୂଆଦଳ ବାହାରିଛି ? ଏମାନେ କଂଗ୍ରେସିଆ ନା କମ୍ୟୁନିଷ୍ଟ ? ମୁଁ ବାପାଙ୍କୁ ବୋଧହୁଏ ବୁଝେଇ ପାରି ନଥିଲି ଯେ ଏମାନେ ଭିନ୍ନ। ତାଙ୍କ ବେଳର ଛତରା ନୁହନ୍ତି, ଏବେକାର ସ୍ୱଇଦହଉଡ଼ି କଟା। ଏମାନେ ପ୍ରଚଣ୍ଡ, ଦୁର୍ନିବାର। ସତରେ ସର୍ବନାଶ। ସମ୍ପୂର୍ଣ୍ଣ କ୍ରାନ୍ତିରୁ ବଳି ଆଣ୍ଟି କ୍ରାନ୍ତି ମଶାଲ। ନଷ୍ଟ ପୃଥିବୀକୁ ଖୁହାଁ ଖୁହାଁ ଜାଳିଦେବେ, ଆଉ ନୂଆକରି ଗଢ଼ିବେ ବୋଲି ବସିଛନ୍ତି ଯାହାହେଉ ଆଶ୍ଚର୍ଯ୍ୟ କଥା ବାପା ତାଙ୍କୁ ଶୋଧିଲେ ନାହିଁ। ତାଙ୍କ ଉପରେ ଖାପଣ ଖପପା ବୋଲି ମଧ୍ୟ ମନେହେଲା ନାହିଁ। ବରଂ ଦୁଃଖକଲା ପରି କହିଲେ—ସେମାନେ କେହି ମୋ ପାଖକୁ ଆସି ନାହାନ୍ତି, କିନ୍ତୁ ସେଇଠୁ ଗୋଟାଏ ମଉଳିଆ ହସ ହସିଲେ। ହସୁ ହସୁ କହିଲେ—ଜାଣିଛୁ ନା ? ତୋ ସାଙ୍ଗ ଜମେଇ ପୁଅ (ଜମେଇ ମୋ ସାଙ୍ଗ ନୁହେଁ, ବୋଉ ମାଇନର କ୍ଲାସରେ ପଢ଼ୁଥିଲି ଏକାଠି) ସେଇ ଦଳରେ ଅଛି। ଜନ୍ମହେଲା ବେଳକୁ ଖ୍ରୀଷ୍ଟିଆନ ହୋଇଥିଲା, ମହା ଅଲସୁଆ, କହିଲେ ଶୁଣିଛି ଗୁଣ୍ଡ ନିଜେଇବାର ଓସ୍ତାଦ୍, ତା ବାପ ପରି। ଆଉ ଆମ ସାଉ

ସାହେବଙ୍କ ନାଉ ଅଛି ତାଙ୍କ ଦଳରେ, ବୃଦ୍ଧ ଚଗଲା·· ତା' ପରେ ବାପା ଅନ୍ୟ-
ମନସ୍କ ହୋଇଗଲେ, ନରମି ନଇଁ ଆସୁଥିବା ସୂର୍ଯ୍ୟଙ୍କୁ ଆଉ ନାଲି ଗାଲଗୁଡ଼ରେ ପଇଁତରା
ମାରୁଥିବା ଟିକି ଚଢ଼େଇମାନଙ୍କୁ ଅନେଇଲେ । ସତେ କି ତାଙ୍କ ଆଗରେ ସବୁ
ତେଜ ସାନ ସାମାନ୍ୟ ଓ କ୍ଷମଣୀୟ; କିନ୍ତୁ କେହି ଆସୁ ନାହାନ୍ତି ତାଙ୍କ ପାଖକୁ ।
ବାପା ଶେଷ ଯାଏ ଦୁର୍ବଳ ଅସହାୟ ହୋଇ ନ ଥିଲେ, ହୁଏତ କହୁଣାରେ
ଉଦାରତାରେ କଅଁଳ ପଡ଼ି ଆସୁଥିଲେ ।

କିନ୍ତୁ ଏ ଟୋକାଗୁଡ଼ାକ କଣ ବୁଝିବେ ସେକଥା ? ସେମାନେ ଦେଖିବେ
ଯେ ଏକଦା ଜମିଦାର, ସେ ଯୁଗର ଦୈତ୍ୟ, ଦ' ଦ'ଟା କୋଠାର ମାଲିକ, ଟ୍ରକ୍
କମ୍ପାନୀବାଲା ଗୋପ ମହାପାତ୍ର, ଗୌର ମହାପାତ୍ରର ବାପ ଦାନ୍ତ ନଳୁଟି ପଡ଼ିଛି,
କେଡ଼େ ବୋକାଟା ପରି ଦିଶୁଛି·· ଇସ୍ · ହସ ନାହିଁ···ଅତୀତର ଜାର୍, କାଇଜର୍
ହିଟ୍‌ଲର, ମୁସୋଲିନୀମାନେ ମଧ୍ୟ ଏମିତି ଦିଶୁଥିଲେ ମଲା ବେଳକୁ ।

ସେମାନେ କଣ ବାପାଙ୍କ ଉକ୍ତି, ତଥାକଥିତ ପ୍ରତିକ୍ରିୟାଶୀଳ ମତବାଦ
ଶୁଣିଛନ୍ତି କେବେ ? ହୁଏତ ଜମେଇଁ ଶୁଣିଥିବ, ତା' ପୁଅକୁ କହିଥିବ ·· ।

ଶୁଣନ୍ତୁ ନ ଶୁଣନ୍ତୁ, ସେମାନେ ମୋ ବାପାଙ୍କୁ ଦେଖିବେ ନାହିଁ ଆସି । ତା'
ଆଗରୁ ମୁଁ ମୋ ବାପାଙ୍କୁ ଉଠେଇ ନେବି, ଲୁଚେଇ ଦେବି, ହଜେଇ ଦେବି । ମୁଁ
କଦାପି –

ସହସା ଖଣ୍ଡେ ଦୂରରେ ଗର୍ଜି ଉଠୁଥିବା ଗୁଳିର ଆୱାଜ ସମସ୍ତେ
ଶୁଣିଲେ; କିନ୍ତୁ ବୋଧହୁଏ ଗୌରବାବୁଙ୍କ ପରି ନୁହେଁ । କାରଣ ଗୌରବାବୁଙ୍କ
ହାତ ଆପଣା ଛୁଏଁ ତାଙ୍କ ଛାତିକୁ ଆବୋରିଲା । ସତେକି ଗୁଳି ତାଙ୍କର ଛାତିରେ
ବାଜିଲା । ମରଣୋନ୍ମୁଖ ବୃଦ୍ଧ ପିତାଙ୍କ ସମ୍ମାନ ରକ୍ଷା କରିବାକୁ ଯାଇ ସେ ଟଳି
ପଡ଼ିବେ ··ଚିନ୍ତା ନାହିଁ ମୁଁ ତାଙ୍କ ପୁଅ ଯେତେହେଲେ । ତେବେ ବୀରତ୍ୱର
କଳ୍ପନା ବେଶିକ୍ଷଣ ତିଷ୍ଠିବା ସମ୍ଭବ ନଥିଲା । ଘରଆଡ଼ୁ ଏକ ବିରାଟ କୋଳାହଳ
ଧୂଆଁରେ ଧୂଆଁରେ ମାଡ଼ି ଆସୁଛି ଘେରି ଯାଉଛି, କହୁଛି ଆମ ଟୋକାମାନେ
ମଲେ । ଜଣେ ବା ଦଶ ପଚାଶ ଯାଏଆସେ ନାହିଁ । ଭୋଗପୁରର କାଲିକାର ପିଲା
କେଇଟା ଘରଦୁଆର କଟା ବାଳୁଙ୍ଗା ଟୋକା ଟଳି ପଡ଼ିଲେ । ବଳିଦାନ । ସୂର୍ଯ୍ୟ
ପାଇଁ, କ୍ରାନ୍ତି ପାଇଁ । ···କ୍ରାନ୍ତି, ମାଇଫୁଟ୍···ଫୁଟ୍ ନୁହେଁ, ପୂଜାର ସମ୍ପର୍କ ହୃଦୟ
ସାଙ୍ଗରେ, ସେଇଠୁ ରକ୍ତ ନ ବାହାରିଲେ ସୂର୍ଯ୍ୟଙ୍କ ପୂଜା ହେବ କେମିତି ? ବାଜେ
କଥା, ଜୟପ୍ରକାଶ ନାରାୟଣଙ୍କ ପରି ଲୋକ ସମ୍ପୂର୍ଣ୍ଣ କ୍ରାନ୍ତିର ଧ୍ୱଜା ଉଡ଼େଇଲେ,
ହେଲେ କେଇଟା ବର୍ଷ ନ ଯାଉଣୁ ମାଟି କାମୁଡ଼ି ପଡ଼ିଲେ । ଆଉ ଇଏ ଆସିଲେ
ଆମ ବାନରସେନା । କଣ ନା ଆଣୁଛନ୍ତି । ପ୍ରତି ଗାଁରେ ପ୍ରତି ସହରରେ ଏଇଆ

ଏଇଆ କର, ଏଥିକି ସମସ୍ତ ଭିତରେ । କରିବି ବୋଲି ହାତକାଟି ଦେଖିଦିଅ, ଶପଥ କରିଅ, ନହେଲେ ଗାନ୍ଧି ଗ୍ରନ୍ଥଦିଅ । ସ୍ୱର୍ଗୀୟ ଚାନ୍ଦ୍ରମା ତା' ଦେଖିଲା କାମ କରିବ । ସେତେବେଳେ···ମାଇ ଗଡ଼୍ ! ଗୁଳି କରି ଗୁଳିଥିବ, ମରିବ ନାହିଁ ? ଗୌରବାବୁ ବିଚକ୍ଷଣ ଭାବ ଦେଖାଇଲେ, ଉତ୍କଣ୍ଠିତ ହେଲେ । ସେଇଠୁ ଶାନ୍ତ ହେଲେ । ମୋର ମସ୍ତ କିଛି କରିବା ଦରକାର । ମୋ ପରି ଶ୍ରୀବଳ୍ଲ ଚନ୍ଦ୍ରଲ୍ଲ ନାଗରିକର ହୋଲା ଓ ପୂଜାସ ମନ୍ଦିରେ ଠିଆହୋଇ ତ' ପକ୍ଷକୁ ବୁଝାଇବା ଉଚିତ; କିନ୍ତୁ ମୁଁ ବାହାରି ଯାଇ ପାରିଲି ନାହିଁ । ମୋର ବାପା ମୃତ୍ୟୁ ଶଯ୍ୟାରେ ।

ବାପାଙ୍କର କଣ ଏକଦମ୍ ଚେତା ବୁଡ଼ି ଯାଇଛି ? ସେଇ ଝୋରପୁର ତାଙ୍କର ଆଖି ଆଗରେ ଏଡ଼ୁଟିଏ ଏଡ଼ୁଟିରୁ ହୋଇଛି, ବଡ଼ ଗାଆଁରୁ ଗ୍ରେଟ ସହର, ଗ୍ରେଟ ସହରରୁ ଆସି ବଡ଼ ସହର ହେବାକୁ ବସିଲାଣି, ତାଙ୍କର ଦାନ ପ୍ରୋତ୍ସାହନରେ ସୁପ୍ରସିଦ୍ଧ ଆୟୁର୍ବେଦ କେନ୍ଦ୍ର, ସମେତ ନାନାଦି ଅନୁଷ୍ଠାନ ଗଢ଼ି ଉଠିଛି · ସେଇ ତାଙ୍କର ପ୍ରିୟ ସହରରେ ଏତେବଡ଼ ଘଟଣା ଘଟୁଛି । ଛାତ୍ରର ଏଇ ପ୍ରଥମ ରକ୍ତ ମାନେ ଆମ ଓଡ଼ିଶାରେ ପ୍ରଥମ (ସିଏ ଛାତ୍ର, ହୋଇପାରେ, ତଥାପି ପ୍ରଥମ) ତା'ର ଶବ୍ଦ ରଙ୍ଗ ବାସ୍ନା କଣ କିଛି ବାପାଙ୍କ ପାଖରେ ପହଞ୍ଚୁ ନଥିବ ? ପଡ଼ିଆ ଅଃ ଉକ୍ତି ମୁହଁ କରିଥିବା ଅନ୍ୟମାନଙ୍କ ସଙ୍ଗ ତ୍ୟାଗ କରି ଗୌରବାବୁ ପୁଣି ତାଙ୍କ ବାପାଙ୍କୁ ଦେଖିବାକୁ ଗଲେ ।

ଯାଇ ଦେଖିଲେ ଯେ ବାପାଙ୍କ ମୁହଁ ଆଉ ବୋଲାହୋଇ ନାହିଁ । ଖତେଇ ହେଉଛି । ଖୋଲି ଓଠ ବୁଜିବାର ଢଙ୍ଗ ଦେଖେଇ ନେସେଡ଼ି ଯାଇଛି, ଓହଳା ମାଂସ ସଫିଳ ହେବାକୁ ବସିଛି । ଗୌରବାବୁଙ୍କ ଇଚ୍ଛା ହେଲା ସେ ଉତ୍କଣ୍ଠିତ ଧୋବ ସ୍ୱଦର ଟାଣି ଆଣନ୍ତେ ଉପରକୁ, ବାପ ମରଣକୁ ଘୋଡ଼େଇ ଦିଅନ୍ତେ ଏଥିକି ବେଳୁ ।

କିନ୍ତୁ ସ୍ୱଦର ଘୋଡ଼େଇବାକୁ ଡେରି ଥିଲା । ଗୋପବନ୍ଧୁ ମହାପାତ୍ର ସେଇ କୁନ୍ ଅଠର ତାରିଖରେ ପ୍ରାଣତ୍ୟାଗ କଲେ, କିନ୍ତୁ ପ୍ରାୟ ଦିନ ଶେଷରେ । ସେତେବେଳକୁ ଚୌଧୁରୀ ପଡ଼ିଆ ଶୁନ୍‌ଶାନ ହୋଇ ଗଲାଣି । ମୃତ୍ୟୁର ନୀରବତାର ଆଞ୍ଚ ଲାଗିବାର ଆଶଙ୍କା ନଥିଲା ।

ଗୌରବାବୁ ବାପାଙ୍କର ଅନ୍ତର୍ଦ୍ଧାନକୁ ସ୍ୱୀକାର କଲେ । ସେତେବେଳେ ସବୁସ୍ତର, ସ୍ୱଭାବ ପୂର୍ବାଞ୍ଚ ହତାଶ·ଗୁଳିଆ ଘରେ ଆଶ୍ରିତ କେତେକ ପରିବାର ଓଗେର ବିଭିନ୍ନ ମତେ କାନ୍ଦ ଉଠିଲେ ଅଥବା ଜୁଆ ଗଡ଼ାଇଲେ, ଗୌରବାବୁ ତାଙ୍କ ନଜରକୁ ମିଶାଇବାକୁ ଗ୍ରହିଲେ । ବାପା ସ୍ୱଳ୍ପ ଦିବାର ଶେଷ କଥାକୁ ନଜର

ଗମ୍ଭୀରତାରେ, ଟଣା ନିଃଶ୍ୱାସରେ, ମନଶ୍ଚକ୍ଷୁରେ ବାପାଙ୍କର ଅତୀତ ପ୍ରଖ୍ୟାତ ପାଗବନ୍ଧା ଛବି ଦେଖିବାର ଅନୁଭବ କଲେ ଏବଂ ସନ୍ତର୍ପଣରେ ମୁହଁକୁ ଖଦ୍ଦରରେ ଘୋଡ଼େଇ ଦେଲେ; କିନ୍ତୁ ସେତେବେଳେ ମଧ୍ୟ ତାଙ୍କ ଚେତନାରେ ଗୁଳି ମାଡ଼-ଖିଆ ଟୋକାମାନଙ୍କର ଛବି ଦେଖାଯାଉ ଥିଲା । ସେ ମନେ ମନେ ନିଜକୁ କହି ପକାଇଲେ—ସେମାନେ କେହି ଏଠିକି ଆସିଲେ ନାହିଁ ତା ହେଲେ !

ସନ୍ତୋଷ ଆସିବାର କଥା ଯେ ସେ ଯାହା ଚାହୁଁଥିଲେ, ସେଇଆ ହେଲା । ତଥାପି ଗୋଟାଏ ଅଭାବର ଭାବ ଉଙ୍କି ମାରୁଛି କାହିଁକି ? ଟୋକାମାନେ କ'ଣ ମୋର ଏତେ ନିଜର, ନା ଖେଉପୁର ଏତେ ଆପଣାର ? ଆତ୍ମୀୟତାରେ ଜୁଡ଼ୁବୁଡ଼ୁ ମୋର ଏଇ ମନଟାକୁ ଧନ୍ୟ, ଏହି ମର୍ମରେ ଗୌରବକୁ ସ୍ୱଗତ ମୁଣ୍ଡ ହଲେଇଲେ ।

ସମ୍ଭବତଃ ସରସ୍ୱତୀ ଦୁଃଖପ୍ରକାଶ କଲେ ଯେ ଗଣ୍ଡଗୋଳ ପଛକୁ ଏଇ ଅସମ୍ଭବ (କହିଲେ—ଇଏ କେମିତି ହେଲା ମ ? ପୁଲିସ୍ ଗୁଡ଼ାକ ସିଧା ସିଧା ସେମାନଙ୍କୁ ମାରି ପକେଇଲେ ? ) ଗୁଳିମାଡ଼ ଘଟଣା ଘଟି ନଥିଲେ ଖେଉପୁରର ଯେତେକ ଗଣ୍ୟମାନ୍ୟ ଲୋକ ଆମ ଘରେ ଜମା ହୁଅନ୍ତେଣି । ଅନ୍ତିମ ଶୋଭାଯାତ୍ରା ମାଇଲିଏ ଉପରେ ଲମ୍ବି ଯାଆନ୍ତା, 'ସମାଜ'ରେ ବଡ଼ ବଡ଼ ଅକ୍ଷରରେ ଛପା ହୁଅନ୍ତା । ଶ୍ୱଶୁରେ କ'ଣ ଛୋଟିଆ ଲୋକଟିଏ ଥିଲେ ? ସରସ୍ୱତୀଙ୍କ ଦୁଃଖ ଅମୂଳକ ନୁହେଁ । ଅନ୍ତତଃ ନିମେଇଁ ବାବୁ ଖବର ପାଇ ମହସାଙ୍କୁ କାନ୍ଧେଇବାକୁ ଆସି ଥାଆନ୍ତେ । ଭୁଲିବାର ନୁହେଁ ଯେ ତାଙ୍କ ବାପା ସହାସବାବୁଙ୍କ ମଲାବେଳେ ଗୋପବାବୁ ଅଖିଆ ଅପିଆ ପଣାପାଳି ସାଙ୍ଗର ମୁଣ୍ଡ ପାଖରେ ବସି ରହିଥିଲେ, ଶବଦାହର ମୁଖିଆ ହୋଇ ବାହାରି ଥିଲେ, କିନ୍ତୁ ନିମେଇବାବୁଙ୍କର ଯୁଥ ଅକସ୍ତ ବାହିନୀର ଅନ୍ୟତମ ନେତା ହୋଇ ଥିବାରୁ ବନ୍ଧୁକଧାରୀମାନଙ୍କ ସାମ୍ନାରେ ଥିଲେ, ଏବଂ ଦ୍ୱିତୀୟ ଗୁଳିରେ ଟଳି ପଡ଼ିଥିଲେ । ତେଣୁ ସେ ଏଠିକି ଆସିବେ ବୋଲି ଆଶା କରାଯାଇ ନପାରେ । ଆୟୁର୍ବେଦ କେନ୍ଦ୍ରର ଅଧ୍ୟକ୍ଷ ଯୋଗୀ ମିଶ୍ର ଆସିପାରି ଥାଆନ୍ତେ; କିନ୍ତୁ ସେ ଆନ୍ଦୋଳନ ଘନେଇ ଉଠିବା ପୂର୍ବରୁ ମାନ୍ଦ୍ରାଜ ପଳେଇଛନ୍ତି, ଖବର ପଠେଇଛନ୍ତି ଯେ ଗବେଷଣା ସରିବାକୁ ଡେରି ଅଛି । ବାକି ଯେଉଁମାନଙ୍କୁ ଖବର ଦିଆ ହୋଇଥିଲା—ଏସ୍. ଡ଼ି. ଓ. ହଉମ କର, ବି. ଡ଼ି. ଓ. ଭବନାଥ ଦାସ, ତାଙ୍କ ବାପା ଏକଦା ଗୋପ ବାବୁଙ୍କ ସମକକ୍ଷ ଜମିଦାର ଓ ପ୍ରତିଦ୍ୱନ୍ଦ୍ୱୀ ଟ୍ରକ୍ ମାଲିକ ଥିଲେ, ପୁରାତନ ସ୍ୱନାମଧନ୍ୟ ମୁକ୍ତିଆର ବଟୁ ବାବୁ, ଯେ ଗୋପବାବୁଙ୍କ ପିଲାଦିନର ସାଙ୍ଗ ଏବଂ ଏବେ ସୁଦ୍ଧା ପ୍ରାତଃଭ୍ରମଣ କଲାବେଳେ କୁକୁରମାନଙ୍କୁ ବାଡ଼ି ଧରି ଗୋଡ଼େଇ ପାରନ୍ତି, ଇତ୍ୟାଦି ନାନାଦି ମିତ୍ର-ଭଦ୍ରଲୋକ—ସେମାନେ କିନ୍ତୁ

ତାଙ୍କ ପରିବାରରେ କେହି ନା କେହି ଫୋନ୍‌କୁ ସେପାଖରୁ 'ଏଁ' ! ବୋଲି କହିଲେ, ସେଇଠୁଁ 'ଆହା'ର ଆବେଦନ ଜଣାଇଲେ; କିନ୍ତୁ ଦେଖାଗଲା ଯେ ଅଧିକାଂଶ ପ୍ରବଳ ଇଚ୍ଛା ଥାଉଣୁ ଆସିପାରିବେ ନାହିଁ । ଯେହେତୁ ପରିସ୍ଥିତି ସଙ୍ଗୀନ, ସହରରେ ସାନ୍ଧ୍ୟ ଆଇନ୍ ଜାରି ହୋଇଛି (ସରସ୍ୱତୀ ସ୍ୱାମୀଙ୍କୁ ପଚାରି ଖବର ଭୁଲ୍ ବୋଲି କହିଲେ) ପୁଲିସ୍ ଗୁଳିରେ ଶହେ ଲୋକ ମଲେଣି (ସରସ୍ୱତୀ ସ୍ୱାମୀଙ୍କୁ ନ ପଚାରି ଦୃଢ଼ ସ୍ୱରରେ କହିଲେ, ଶହେ ନୁହେଁ ମାତ୍ର ଛଅ । ମୁଁ ଭଲ ଭାବରେ ଜାଣେ, ଚୌଧୁରୀ ପଢ଼ିଆ ଆମ ଘରକୁ ଦିଶୁଛି ପରା ! ), ମୋର ଭାରି ଯିବାକୁ ଇଚ୍ଛା; କିନ୍ତୁ ଘରେ ଏମାନେ ଡରୁଛନ୍ତି··· । ତଥାପି ସରସ୍ୱତୀ କ୍ଳାନ୍ତ ହେଲେ ନାହିଁ । ସ୍ୱାମୀଙ୍କ ମୁହ୍ୟମାନ ଅବସ୍ଥା ବୁଝିପାରି ସେ ସବୁଆଡ଼କୁ ଫୋନ୍ କଲେ, ଯାହା ଫଳରେ ଦଶବାରଜଣ ବନ୍ଧୁ ବାନ୍ଧବ ଆସିବାର ଭରସା ହେଲା । ଗୌରବାବୁ ସ୍ପଷ୍ଟ ଭାବରେ, କହିଲେ ମୁଁ ଶୋଭାଯାତ୍ରା ଚାହେଁ ନାହିଁ । ଲୋକେ ହାଉଯାଉ ହେବେ, ଗଦା ଗଦା ଫୁଲମାଳ ଆସିବ, ସେଇଥି ପାଇଁ ମୁଁ ମଡ଼ାକୁ ବାସି କରିବି ନାହିଁ । ଆଉ କୋଉ ଛଅଟା କି ନଅଟା ପୁଅ ଅଛନ୍ତି, ଯାହାଙ୍କ ପାଇଁ ବାପା ଅପେକ୍ଷା କରିବେ ?

ରାତିରେ ପୃଥିବୀ ନିସ୍ତେଜ ହୋଇଯାଏ । ଭୋଗପୁର ପୃଥିବୀରୁ ଭିନ୍ନ ନୁହେଁ । ତେବେ ବାହାରର ବସ୍ତି ରହିଥିବା ସୈନ୍ୟ ସେନାପତିମାନେ ମନେ କରୁଥିଲେ ଯେ ତେଜ କମି ଯାଇଥିଲେ କ'ଣ ହେବ, ହୁଳା ଉଠୁଛି ଏଇକ୍ଷଣି ଭୂଇଁର ନିର୍ଦ୍ଦିଷ୍ଟ ସ୍ଥାନ ମାନଙ୍କରୁ । ଯେଉଁଠି ସେମାନେ ଟଳି ପଡ଼ିଲେ, ଯେଉଁଠି ପୁଲିସ୍ ସାହେବ ଚତୁରପଣ ଓ ଇଂରେଜୀର ଚମତ୍କାର ଦେଖାଇ 'ସନ୍‌କ ବସ୍ତୁ'ମାନଙ୍କୁ ଛୁଗୁଲେଇଲେ, ଯେଉଁ ଯେଉଁ ଥାନାମାନଙ୍କରେ ବାପମାନେ ଭାଇମାନେ ଅଥବା ସ୍ତ୍ରୀମାନେ ଲୁହ ଢାଳିଲେ, ମୁଣ୍ଡ କୋଡ଼ି ହେଲେ, ଆଉ ଯେଉଁଠି ସେମାନଙ୍କର ଅକାମୀ ଦେହ ଧାଡ଼ି ଧାଡ଼ି ହୋଇ ରଖା ହୋଇଛି ପୋଡ଼ାହେବ ବୋଲି । ଶବଦାହ ହେଲେ ଯାଇଁ ହୁଳା ଶାନ୍ତ ହେବ ଏବଂ ଯାତ୍ରା ପୁଣି ସୁରୁହେବ । କ୍ରୋଧ ଶୋକ ସନ୍ତାପର ଉଙ୍ଗ ଆଲୁଅମାନ ପୁଣି ମିଶି ଯିବ ଶୁଭ୍ରତାରେ, ଜ୍ୟୋତିରେ, ସୂର୍ଯ୍ୟର ନିଷ୍ଠୁର ନିଷ୍କରୁଣ ତୀବ୍ର କିରଣରେ ।

ତେଣୁ ଏମିତି ହେଲା ଯେ ସେଦିନ ରାତିରେ ଭୋଗପୁରର ମଲା ମଣିଷମାନଙ୍କୁ ପୋଡ଼ି ଭସ୍ମ କରିଦେବାର ଆବଶ୍ୟକତା ଜରୁରୀ ହୋଇ ଉଠିଲା । ଏହି ବିଷୟରେ ଗୌରବାବୁ ଓ ବାହାରର ନେତାମାନେ ପ୍ରାୟ ଏକମତ ଥିଲେ ।

ସଯତ୍ନ ଆଚ୍ଛାଦିତ ଗୋପବାବୁଙ୍କ କୋକେଇ (ଗୌରବାବୁ ସାବଧାନ କରି ଦେଇଥିଲେ ଯେ ମୁହଁ କଦାପି ଖୋଲା ହେବ ନାହିଁ ) ପୁଅ ଏବଂ କେତେକ ସ୍ଥାନୀୟ

ଚନ୍ଦ୍ରାକାନ୍ତଙ୍କ କାନ୍ଧରେ ବୃନ୍ଦାବୋଇ ଷ୍ଟେଶସ୍ନରର ପାଟଷ୍ଟେସ୍ରର ମ୍ୟୁନସିପାଲିଟି ଶଗ ନ 'ଭଦ୍ରକାଳୀ' ଆଡ଼କୁ ଗଡ଼କଲା । ସେତେବେଳକୁ ରାତିର ପ୍ରଥମ ପ୍ରହର ବିତି ଗଲାଣି ।

ଗୌରବାବୁ କହିଲେ ସାକ୍ଷ୍ୟ ଅଭିନ୍ ମିଛକଥା । ତା' ଛଡ଼ା ରାମନାମ ସତ୍ୟ ହେଲେ ମନା ନାହିଁ । ନିଜେ ଆରମ୍ଭ କଲେ, ବୋଲ୍ ରାମ୍ ନାମ୍... । ଅନ୍ୟମାନେ ପାଳି ଧରିଲେ । ଦୋକାନ, ବଜାର ଯାହା କିଛି ଅଳ୍ପ ଖୋଲା ହୋଇ ଆସୁଥିଲା, ଗୁଳିମାଡ଼ ଘଟଣା ପରେ ତୁରନ୍ତ ଓ ଧ୍ରୁଏଁ ଧ୍ରୁଏଁ ବନ୍ଦ ହୋଇଗଲାଣି । ରାସ୍ତାରେ ଚାଲେଇ ପିଲାଟିଏ ଗୁଳିବାର ଦେଖା ଯାଉନାହିଁ; କିନ୍ତୁ ଗୌରବାବୁ ଲକ୍ଷ୍ୟ କଲେ ଏବଂ ଖୁସିହେଲେ ଯେ ଆକାଶର ଚନ୍ଦ୍ର ଫାଳକିଆ ଜହ୍ନ ତାଙ୍କ ସାଙ୍ଗରେ ଗାଳିଛି କମେଇ କରି । ଯେମିତି କ ଜନପ୍ରାଣୀ କେହି କେଉଁଠି ନାହାନ୍ତି, ଭଲ ହୋଇଛି, ସେ ପୁଣ୍ୟଶ୍ଳୋକ ବାପାଙ୍କ ପ୍ରତି ମନ ମୁତାବକ ସମ୍ମାନ ଦେଖାଇ ପାରୁଛି । ବୋଲ ରାମନାମ ସତ୍ୟ ହେ । ମାରବତାକୁ ଚ୍ୟାଲେଞ୍ଜ କଲାପରି ଗୌରବାବୁ ଆହୁରି ବଡ଼ ପାଟିରେ ବାପାଙ୍କୁ, ବାପାଙ୍କ ଆତ୍ମାକୁ ଉଦ୍‌ବୋଧିଲେ ଏବଂ ଏକ ଅଦ୍ଵିତୀୟତାର ଅନୁଭବରେ ଆପ୍ଳୁତ ହେଲେ । ତାଙ୍କର ମନେହେଲା ଯେ ଜ୍ୟୋତ୍ସ୍ନା ଚନ୍ଦନମଖା ଏଇ ମାରବତାର ଆୟୋଜନ ଖାସ୍ ତାଙ୍କରି ପାଇଁ । ଏମିତି ହେବ ବୋଲି ଲେଖା ହୋଇଛି ଆଗରୁ । ବାପ ପୁଅଙ୍କର ଏଇ ଅନୁପମ ଘେନାଘେନ ଏକୁଟିଆ ଗୌରବରେ ଝଳି ଉଠିବ । କାଳ କାଳକୁ ମନେ ରହିବ ।

ଗୌରବାବୁ ଆସନ୍ନ ଧ୍ଵନିକୁ ଭୟ କଲେ ବୋଲି କହି ହେବ ନାହିଁ; କିନ୍ତୁ ତାକୁ ସ୍ଵାଗତ ଜଣେଇପାରିଲେ ନାହିଁ । ବୋଧହୁଏ ବଳ ଥିଲେ କମ୍ଭା ବାପା ଫୁଲ ପରି ଚଢ଼େଇ ପରି ହୋଇଥିଲେ ସେ ଶ୍ମଶାନକୁ ଦି' ଖୋଜରେ ଧରି ପକେଇ ବାପାଙ୍କର ଦାହକ୍ରିୟା ଶେଷ କରି ପାରିଥାଆନ୍ତେ ! ହେଲେ ତାଙ୍କ ଗତି ଧିମେଇ ଗଲା । ଜୟଧ୍ଵନି ଗୁହୁଁ ଗୁହୁଁ ପାଖ ହୋଇ ଆସିଲା ଏବଂ ମନେହେଲା ତା'କୁ କାଟିଦେଇ ହେବ ନାହିଁ । ଜନତା କୋଉଠି ଲୁଚିକରିଥିଲା ଉତ୍ତର ଆସିଛି ଏବଂ ସାବଧାନ କରି ଦେଉଛି—

କିଏ ଅଛ ସେଠି ? ଅଟକିଯାଅ ! ଅଟକିଯାଅ...

ଅଟକିବାର ପ୍ରଶ୍ନ ଉଠୁ ନାହିଁ । ଗତି ଧିମେଇ ଯିବାର ଅନ୍ୟ କାରଣ ହୋଇପାରେ ଯେ ମାଲବୁହାଳିମାନେ ଥକି ଯାଇଥିଲେ । ତା' ଛଡ଼ା ଇଏ କ'ଣ ଘୋଡ଼ ଦୌଡ଼ ହୋଇଛି ଯେ ଆଉ କେହି ଟପିଗଲେ ଆମକୁ ବାଧିବ ? ଆସନ୍ତୁ ସେମାନେ ଯାଆନ୍ତୁ ସେମାନେ, ତାଙ୍କ ସାଙ୍ଗରେ ଆମର ସମ୍ପର୍କ ନାହିଁ । ଗୌରବାବୁ ଭୂଇଁରେ ପାଦ ଦବେଇ ଚାଲିଲେ ଓ ଯଥାପୂର୍ବଂ ସ୍ଵର ଉଠେଇଲେ...ରାମ୍ ନାମ୍...

ସନ୍ଦେହ ଅଚିରେ ଦୂର ହୋଇଗଲା । ସେମାନେ କେବଳ ବାହ୍ମଣର ଟୋକା ନୁହନ୍ତି, ଶବଯାତ୍ରୀ । ପୋଲିସ୍ ଗହଣରେ ଆସୁଛନ୍ତି ତାଙ୍କ ସହିଦମାନଙ୍କୁ ପୋଡ଼ିଦବା ପାଇଁ । କୋଟକେଇର ଧାଡ଼ି ଲାଗିଛି, ପଛକୁ ପଛ । ଅମୁକର ଜୟ, ସମୁକର ଜୟ । କିଓ, ରାମନାମ ମୁହଁରେ ଧରିବାକୁ କ'ଣ ଲାଜ ଲାଗୁଛି ? ହେଲା ଏବେ ସେମାନେ ସହିଦ, ଧରଣୀଅ କେବେ କେଉଁ ସକାଳେ ସୂର୍ଯ୍ୟ ସତରେ ଉଇଁବ ଓ ତାଙ୍କ ନାଆଁରେ ମୂର୍ତ୍ତି ଗଢ଼ାଯିବ । ତା'ବୋଲି କ'ଣ ସେମାନେ ଭଗବାନଙ୍କଠୁଁ ବଡ଼ ? ତାଙ୍କ ଶବ ବ' କ'ଣ ପୋଡ଼ା ଜଳ ପାଉଁଶ ହେବ ନାହିଁ ? ଗୌରବାବୁ ଟୋକାମାନଙ୍କ ପ୍ରଗଳ୍‌ଭତାକୁ ଯୁବସୁଲଭ ବୋଲି ହେଲେଇ ଦେଇପାରିଲେ ନାହିଁ । ଦୁଃଖ କଲେ ଏବଂ ସେଇ ମୁହୂର୍ତ୍ତରେ ସେ ବାପାଙ୍କୁ ସ୍ମରଣ କଲେ— ଦେଖନ୍ତୁ, ଏଥିରେ ମଧ୍ୟ ମୁଁ ଆପଣଙ୍କ ସହିତ ଏକମତ । ମୁଁ ଜାଣେ ଆପଣ କଦାପି ରାମ୍‌ନାମ୍ ଛାଡ଼ି ଏଇ ଜୟ ଜୟ କାରବାର ପସନ୍ଦ କରି ନଥାଆନ୍ତେ ।

ସେମାନେ ଯେତେ ତରଭର ହୋଇ ମେଦିନୀ କମ୍ପାଇ ଆସୁଥିଲେ ମଧ୍ୟ ଗୌରବାବୁଙ୍କ ଦଳ ପ୍ରଥମେ ତାଙ୍କ ମୃତକର ନାଆଁ ଭଦ୍ରକାଳୀ ଶ୍ମଶାନ ରେଜି-ଷ୍ଟରରେ ଦାଖଲ କରିଇ ପାରିଲେ । ପରେ ପରେ ଅପର ଦଳର ମୁଖପାତ୍ର ଖାର ଦର୍ପରେ ଆସି ପାନ ଚାକୁଳେଇ ହେଉଥିବା କରଣିର ପ୍ରସନ୍ନତାକୁ ଭାଙ୍ଗିଦେଇ କହିଲା, ଲେଖନ୍ତୁ—

ସହିଦ ରାମୁ ବେହେରା, ପିତା ରତିକାନ୍ତ ବେହେରା

ସହିଦ ଅଜୟ ଭୂୟାଁ, ପିତା ନମେଇଁ ଚରଣ ଭୂୟାଁ···

(ଗୌରବାବୁ ଶୁଣିଲେ ଏବଂ କିଛି ସମୟ ଅଟକି ଯିବାକୁ ବାଧ୍ୟ ହେଲେ)

ସହିଦ···

କରଣି ମହୋଦୟ ଆପଣା ଆଗ୍ରହରେ ସେମାନଙ୍କ ନାଆଁ ଲେଖିବାକୁ ଲାଗିଲା । ନାଆଁ ଆଗରେ ସହିଦ ଲେଖିବା ଦୂରର କଥା ଶ୍ରୀ ପଦଟିକ ଯୋଡ଼ିଲା ନାହିଁ ଏବଂ ଷଷ୍ଠ ନାଆଁ ଆସିଲା ? ବେଲକୁ ଚହଙ୍କି ଉଠିଲା,···"ଇଏ ପୁଣି କିଏ ? ସପ୍ତମ କୋଉଠୁ ଆସିଲା ମୋତେ ଖବର ଆସିଛି ଯେ ଛଅ ଜଣ ଗୁଳି ମାଡ଼ରେ ମରିଛନ୍ତି । ଛଅ ଜଣଙ୍କୁ ଡାକ୍ତରମାଇନା ଯାଞ୍ଚ କରା ହୋଇଛି...."

"ସେଇଆ ତ—"

"ଆଃ ! କ'ଣ କହୁଛନ୍ତି ଆପଣ ? ଏଇ ଶୁଣନ୍ତୁ, ପ୍ରଥମ —ଗୋପବନ୍ଧୁ ମହାପାତ୍ର···"

ଯୁବନେତା ଅଶ୍ଳୀଳ ଢଙ୍ଗ ସ୍ୱରରେ ହସି ଉଠିଲା । କହିଲା,—"ଧ୍ୟାତ୍, ଘିଏ ଆଉ କିଏ । ସହିଦ ନୁହେଁ, ଅଫେଶିଆଲ୍ ।"

ଭାଗ୍ୟ ଭଲ ଗୌରବାବୁ ଏପର୍ଯ୍ୟନ୍ତ ଫାଟକ ପାର ହୋଇ ନଥିଲେ । ସେ ସେଇଠୁ ପ୍ରତିବାଦ କରିଣିକୁ ତଥା ଜନତାକୁ ଶୁଣେଇଲେ—"ଅଫେଶିଆଲ୍ ନୁହେଁ ! ବ୍ୟକ୍ତିଗତ ! ମାନେ ମୋର—"

ଆଉ ସେଣିକି କିଛି କହି ହେଲାନାହିଁ । ଗୌରବାବୁ ଆବିଷ୍କାର କଲେ ଯେ ପ୍ରତ୍ୟେକର ଦୃଷ୍ଟି ତାଙ୍କର ଅଡ଼କୁ । କାବା ହୋଇ ଚାହିଁଛନ୍ତି ସେମାନେ, ବିଶ୍ୱାସ କରିପାରୁ ନାହାନ୍ତି । କାହିଁକି ? ମୁଁ କ'ଣ ଜଣେ ବ୍ୟକ୍ତି ନୁହେଁ ? ବାପାର ପୁଅ ନୁହେଁ ? ନା ମୋର ବାପା ଆପଣା ସୁଖରେ ମରିବେ ନାହିଁ ? ସେମାନେ ହସୁନାହାନ୍ତି, ହେଲେ ଗୃହିଣୀରେ ଆଙ୍ଗୁଳି ଦେଖାଉଛନ୍ତି । ସତେ କି ମୁଁ ଲଙ୍ଗଳା ଏକୁଟିଆ । ଆରେ, ଆମ ମାଲଭାଇମାନେ ତାଙ୍କ ସାଙ୍ଗରେ ପଡ଼ି ଭଲୁଆ ହୋଇ ଚାହିଁଛ କାହିଁକି ? ବେଲ ବସିଛ ନା କଅଣ ? ଚାଲ, ଉଠ, ବାପାଙ୍କ ଡେରି ହେଉଛି ··

ତେବେ ପୁନଶ୍ଚ ଶୋକରେ ବିଧ୍ୱସ୍ତ ନମେଇଁ ବାବୁଙ୍କର "ଆରେ, ଗୌର ରୁ !" କହି ଭାଙ୍ଗି ପଡ଼ିବାଠାରୁ ଆରମ୍ଭ କରି "ଇଏ ସେଇ ମହାପାତ୍ର ମ !"ର ଫୁସ୍ ଫୁସ୍ ଜାତୀୟ ନାନାବିଧ ଚର୍ଚ୍ଚାଚର୍ଚ୍ଚିର ଉପସ୍ଥିତ ଦୁଇ ଦଳକୁ ଏକାଠି କରିବାକୁ ବସିଲା । ଏକା ଜାଗାରୁ ଜୁଇ କାଠ ମାଟିଘଡ଼ି ଇତ୍ୟାଦି କିଣିବାକୁ ପଡ଼ିଲା । ଗୌରବାବୁଙ୍କ ଦଳର ବ୍ରାହ୍ମଣ କର୍ମକର୍ମିଣି ବିଷୟରେ ଅନ୍ୟମାନଙ୍କୁ କ'ଣ ସବୁ ପାଠ ପଢେଇବାକୁ ଲାଗିଲା । ଯୁବ ନେତାମାନେ କୌଣସି ବିଧିବିଧାନକୁ ମନାକଲେ ନାହିଁ । କେବଳ ଏତିକି ଯେ ଚିତା ଜଳିଲା ବେଳେ ସେମାନେ ଶ୍ମଶାନର ନିୟମ ନମାନି ପୁଣି ଜୟଜୟକାର ଆରମ୍ଭ କଲେ ।

ଗୌରବାବୁ ବାପାଙ୍କୁ ମୁଖାଗ୍ନି ଦେଲେ । କ୍ଷଣକ ପାଇଁ ତାଙ୍କର ଇଚ୍ଛା ହୋଇଥିଲା ଯେ ବାପାଙ୍କ ମୁହଁରୁ ଚାଦର କାଢ଼ି ଦେଇ ଦେଖନ୍ତେ; କିନ୍ତୁ ସେ ପ୍ରଲୋଭନକୁ ଦବେଇ ଦେଲେ । ମନେ ମନେ ବିଦାୟ ନେଲେ । କହିଲେ, ବାପା, ଆପଣଙ୍କ ସତ ମୁହଁ ସବୁଦିନେ ମୋ ମନରେ ଅଙ୍କା ହୋଇ ରହିବ ।

ଚିତା ଜଳିଲା । ଆଗପଛ ହୋଇ ସାତଟି ମଲ ମଣିଷର ଦେହକୁ ଧ୍ୱଂସ କରିବାକୁ ଲାଗିଲା ।

ଗୌରବାବୁ କଡ଼େଇ ହୋଇ ଘାସ ଉପରେ ବସିଥିଲେ ଓ ଜଲ ଜଲ ଚିତାର ଶେଷ କଥାକୁ ଅନେଇ ରହିଥିଲେ । ବାପା—ଅପଣ ଏମିତି ସ୍ୱାଙ୍କର

ସାଙ୍ଗରେ ଜଳଟବ ହୋଇ ଲେଖାଥିଲା, ମୋ ଦୋଷ ନୁହେଁ, ମୋ ଦୋଷ ନୁହେଁ···

କିନ୍ତୁ ଧୀରେ ଧୀରେ ତାଙ୍କ ମନରେ ସନ୍ଦେହ ହେଲା । ବୋଧହୁଏ ଆପଣ ଏଇଆ ଚାହିଁଥିଲେ ଯେ ସ୍ୱାଙ୍କର ସାଙ୍ଗରେ ମିଶିଯିବେ, ଶକ୍ତିରେ ଶକ୍ତି, କ୍ରୋଧରେ କ୍ରୋଧ, ମାଢବନ୍ଧତା, ବ'ଆଁ କ ତ୍ୱ ହାଣ ଯାଏ ଆସେ ନାହିଁ । ସଚେତନ ବୁଦ୍ଧିବସ୍ତର ବେକାରଆ, କେଉଁ କାଳକୁ ନୁହେଁ ଏବଂ ଆପଣ ଅଢଶକ୍ତ ନୁହଁନ୍ତି, ମୁଁ · ମୁଁ ହେଉଛି—

ଟୋକାଙ୍କ ଭିତରୁ ଜଣେ ପୁଣି ଜୟ ଜୟ ଆରମ୍ଭ କରିଦେଲା । ହେଲେ ସେଥିରେ ଗୋଟିଏ ଦୁହା ନ ଥିଲା—ଅଜା ଗୋପବନ୍ଧୁ ମହାପାତ୍ର ଙ୍କ ଜୟ ! ଇଏ ଫାଜିଲାମି ନୁହେଁ, ଫାଜିଲାମି ନୁହେଁ । ଗୌରବାବୁ ଆପଣାକୁ ଦୋହରେଇଲେ ଏବଂ ଏକ ଅପୂର୍ବ ଅଭିନବ ପୁଲକର ଅନୁମାନ କଲେ ।



# ଚିତ୍ରାଂଗଦାର ଚିଠି

ଇମ୍ଫାଲ, ମଣିପୁର ।

ଭଦ୍ରେ !

ତୁମ ସ୍ୱାମୀର ନମସ୍କାର ଗ୍ରହଣ କରିବ । ଚିତ୍ରାଙ୍ଗଦାର ନାଆଁରେ ଚିଠି ଲେଖୁଛି, କାହିଁକିନା ଜଙ୍ଗଲି ଛୋକି ନିଜେ ଚିଠି ଲେଖିପାରିବ ନାହିଁ । ହୁଁ, ମୋ ଚିତ୍ରାଙ୍ଗଦା କେବଳ ଜଙ୍ଗଲି, କେବଳ ଛୋକି, ସୌଖୀନ ସାହିତ୍ୟର ରାଜକୁମାରୀ ନୁହେଁ । ମୁଁ ତା' ନାଆଁରେ ଲେଖିବାର ଆଉ ଗୋଟାଏ କାରଣ ଅଛି । ମୁଁ ଜଣେଇ ଦେବାକୁ ଚାହେଁ ଯେ ସେ ଓ ମୁଁ ଏକାକାର । ଚିତ୍ରାଙ୍ଗଦାର ଜଙ୍ଗଲ, ଜଙ୍ଗଲରେ ବର୍ଷା, ବର୍ଷାଧୁଆ ବାଘ, ସମସ୍ତେ ମୋ ଭିତରକୁ ଆସିଗଲେଣି ପରା ! ଏଠି ଆସି ପହଞ୍ଚୁ ନ ପହଞ୍ଚୁଣୁ ମୁଁ ତା'ର ପ୍ରେମରେ ପଡ଼ିଯାଇଛି ଏବଂ ସ୍ଥିର କରିଛି ଯେ ଏ ପ୍ରେମରୁ ମୁକୁଳିବାର ନୁହେଁ । ତାରି ଠିଇଁ ମୁଁ ମୋର ଯେତେକ ଅଭାବ ଅପୂରଣକୁ ଲିଭେଇ ଦେବି; ଅକ୍ଷତ ଅଣବୁଝିଆ ଉଲ୍ଲାସରେ ମୋର ଅତୀତ ଅର୍ଥାତ୍ ଅତୀତର ତଥାକଥିତ ଶୁକ୍ଳପକ୍ଷ, ସଭ୍ୟତାର ଶୁଚି, ସୁରୁଚି, ସାହିତ୍ୟ, ସଂସ୍କୃତି ଇତ୍ୟାଦିକୁ ଛାଡ଼ପତ୍ର ଦେବି, ପୁଣି ବନ୍ୟ ଜନ୍ତୁଟିଏ ହେବି । ଚିତ୍ରାଙ୍ଗଦାକୁ ଗୋଡ଼ରୁ ମୁଣ୍ଡ ଯାଏଁ, ଘନଗହନ ଆତ୍ମା ଯାଏଁ ରମଣ କରିବି । ତୁମ ଆଡ଼ୁ ଯଥେଷ୍ଟ ଶୁଭେଚ୍ଛା ମିଳିବ ବୋଲି ଆଶା କରୁଛି ।

ଆଃ ! ଏଇ ହେଉଛି ମଣିପୁରୀ ବର୍ଷା ! ଚିତ୍ରାଙ୍ଗଦାର ହସ ପରି । ହୁଏତ କାନ୍ଦ ପରି ! ଏଥିରେ ଭାଷା ନାହିଁ, ଭାବ ନାହିଁ; ଉତ୍ଥାନ ପତନର 'ଆଡ଼ମ୍ବର ନାହିଁ, ଏଣୁ କ୍ଲାଇମାକ୍ସ ମଧ୍ୟ ନାହିଁ । କହିବାକୁ ଗଲେ ଇଏ ସାହିତ୍ୟର ଧାର ଧାରେ ନାହିଁ । ହଠାତ୍ ହାଉଳି ଖାଏ; ଗଳ ଗଳ ହୋଇ ଗାଳି ଦିଏ ଏବଂ ଥପ୍ କିନା ରହିଯାଏ । ପାଞ୍ଚମିନିଟ ନ ଯାଉଣୁ ପୁଣି ହାଉଳି ଖାଏ, ଗାଳି ଦିଏ—କହେ ଏଇତ ଜୀବନର ଚମତ୍କାର ! କେବଳ ଗୋଟାଏ ଶବ୍ଦ, ଅକାରଣ ଉଦ୍ଗିରଣର ଶବ୍ଦ, କ୍ଷଣିକର ହେଣ୍ଟାଳି, ସ୍ୱା'କୁ ଶୁଣେଇ ପାରିଲେ କାମ୍ ଫତେ—ଆଉ କ'ଣ ଦରକାର ? ତୁମେ କହିବ ଧାତ୍, ଜୀବନ ଏମିତି ନୁହେଁ, ଏମିତି ହେଲେ ଅସୁନ୍ଦର; କିନ୍ତୁ ମୁଁ ଦେଖୁଛି ପ୍ରକୃତରେ ଏମିତି ହୁଏ ଏବଂ ଚିତ୍ରାଙ୍ଗଦାକୁ ପ୍ରେମ କଲାରୁ ଜାଣୁଛି ଯେ ଏହି ହେଉଛି ସୁନ୍ଦର । ଜୀବନ ସାହିତ୍ୟ ନୁହେଁ । ସେଇଥି ପାଇଁ ସୁନ୍ଦର ।

ପ୍ରଥମେ ମେ ସାହିତ୍ୟକୁ ଛାଡ଼ପତ୍ର ଦେବ । ଯାହାକୁ ତୁମେ କର୍ଷ୍ଟ୍ରସ୍ୱ ଜରଣ୍ଣ ସପତ୍ନୀ ବୋଲି ଭାବ ଆସିଛ ଏବଂ ରାଗିଲା ବେଳେ ଚୁଲି ଜଆଁ ପାଉଁଶ ବୋଲି କହିଛ, ହେଲେ ଯାହାକୁ ନେଇ ମୋ ସ୍ୱାମୀ ତା' ସ୍ୱାମୀଠାରୁ ବଡ଼ ବୋଲି ଗର୍ବ କରିଛ, ଯାହାକୁ କେବେ ହେଲେ ବୁଝିବାକୁ ଚେଷ୍ଟା କରିନାହଁ, ହେଲେ ଯାହାର ବହିଗୁଡ଼ିକ ମାନେ ତୁମକୁ ଉପହାର ଦିଆ ହୋଇଥିବା ବହିଗୁଡ଼ିକୁ, ଆଦର କରିଛ । ପଢ଼ିଲେ ପଢ଼ିଲେ ସେଗୁଡ଼ିକ ତୁମର ଖାସ୍ ହାତବାକ୍ସରେ ରହୁଥିଲା, ପରେ ଶାଢ଼ି ଗହଣାର ବଡ଼ ବାକ୍ସରେ ରହିଲା, ସେଇଠୁ ବହିଗୁଡ଼ାକ ଓଜନିଆ ହୋଇଗଲା କି ଶାଢ଼ି ଗହଣା ବଳିପଡ଼ିଲା କହି ପାରୁନାହିଁ, ମୋ ହାତରେ ଧରେଇଦେଇ ଗଲେଇ ହେଲ—ପିଲ୍ଲ୍, ତୁମ ପାଖରେ ଥାଉ ଏଇକ୍ଷଣି, ମୁଁ ସୁବିଧା କରି ପରେ ନେଇ ଆସିବି । ହଜେଇବ ନାହିଁ ସାବଧାନ··· । ଶୁଣି ଖୁସି ହେବ, ସେଥିରୁ ଗୋଟିଏ ହେଲେ ହଜି ନାହିଁ । ସଙ୍ଖ୍ୟା ବଢ଼ି ଚାଲିଛୁ, ଦାନ୍ତିଆ ଆକମରା ହୋଇ ମୋ ନିଜ ପେଡ଼ିରେ ଅଧେ ମାଡ଼ିବସିଲାଣି, ହେଲେ ମୁଁ ସେଗୁଡ଼ିକୁ ସମ୍ଭାଳିଛି । କାଳେ ତୁମର ମନେ ପଡ଼ିବ । ଆଜି ମୁଁ ତୁମକୁ ମନେ କରେଇ ଦେଉଛି । ଯେ ମୋର ସମସ୍ତ ସାହିତ୍ୟ ସମ୍ପତ୍ତିକୁ ତୁମ ହାତରେ ଜାଳି ପୋଡ଼ି ଦେବା ପାଇଁ ଛାଡ଼ିଗଲି; କିନ୍ତୁ ତୁମକୁ ଦେଇଥିବା ସେଇକ ପେଡ଼ିର ବାଆଁ ପାଖରେ ଅଛି ତା'କୁ ନ ଜଳେଇଲେ ଭଲ ହୁଅନ୍ତା । କାରଣ ଅନ୍ତତଃ ସେଇ କେତୋଟି କେବଳ ସାହିତ୍ୟ ନୁହେଁ । ସେଥିରେ ମଣିଷ ବାସ୍ନା ଲାଗି ଯାଇଛି, ତୁମ ଦେହର (ପ୍ରେମର) ବାସ୍ନା, ଚନ୍ଦାଙ୍ଗଦାର କାଣିଚ୍ଛ୍ୱ ।

ବାକି ସବୁ ଦସ୍ତାବିଜ ପୋଡ଼ି ଦିଅ । ଯେତେକ ଗଳ୍ପ ଉପନ୍ୟାସ କାବ୍ୟ-କବିତା, ରମ୍ୟରଚନା, ସମ୍ପାଦକମାନଙ୍କ ତାଗିଦା, ପ୍ରକାଶକମାନଙ୍କ ହ'ଧାଡ଼ିଆ ପୋଷ୍ଟକାର୍ଡ କେଉଁ ଅର୍ବାଚୀନ ପାଠକର ପ୍ରଳାପ, କେଉଁ ସମାଲୋଚକର ଇସ୍ତାହାର, ଓଗେର ଏବଂ ମାନପତ୍ର, ଯାହାକୁ ସଂସ୍କୃତିକ କାର୍ଯ୍ୟକ୍ରମର ଆରମ୍ଭରେ କିମ୍ବା ଶେଷରେ ଦିଆଯାଏ, ଯେତେବେଳେ ପ୍ରେକ୍ଷାଳୟ ନୃତ୍ୟଗୀତ ବାହୁନେ ଖାଲି ପଡ଼ିଥାଏ । କେବଳ ତାମ୍ରପାତ୍ରଟିକୁ ରଖିଲେ ହେବ, କାମରେ ଆସିବ । ପାନ ଥାଳିଆ, କିମ୍ବା ଆସ୍‌ଟ୍ରେ ।

ପୋଡ଼ି ଭସ୍ମ କରିଦିଅ । ସେଇ ଅନାବଶ୍ୟକ ଅଭିଶପ୍ତ ଜାରଜମାନଙ୍କୁ । କିଏ କହିଲା ସେମାନେ ମୋ ଆତ୍ମରୁ ଜନ୍ମ ହୋଇଛନ୍ତି ? ପୁରୁଷ କାମର ଶେଯରେ କିମ୍ବା ସଂସାର କାମର ମେଜରେ ହାରିଯାଇ କେଉଁ କଳ୍ପନାର କୁମାରୀକୁ ମାଡ଼ି ବସିଲି, ତହୁଁ କେଉଁ କର୍ମ ବୀର ବାହାରି ଆସିଲା, ତା' ପାଇଁ ଏତେ ମୁଣ୍ଡବିଥା କାହିଁକି ? ସିନ୍ଧୁଠାରେ ନାହିଁକି ରଗିବ ଯେ କେହି ତା'ର ସମ୍ମାନ ଦେଉ ନାହାନ୍ତି ? 'କେହି' ମାନେ

କି ମ ? ହସିବା କଥା । ଦୁଇ କୋଟିରୁ ଊର୍ଦ୍ଧ୍ୱ ନାଗରିକଙ୍କ ଭିତରେ (୧) ମୁଷ୍ଟିମେୟ ସ୍ନାତକ ଅଧ୍ୟାପକ ଯେଉଁମାନେ ଓଡ଼ିଆ ଭାଷାରେ କିଛି ଗୋଟାଏ ସାହିତ୍ୟ ରହିବା ଉଚିତ ବୋଲି ମନେ କରନ୍ତି, (୨) ଇଂରାଜୀ ପଢ଼ୁଆ କେତେଜଣ ଯେଉଁମାନେ ପତ୍ନୀଙ୍କ ନାଆଁରେ ଆସୁଥିବା ଓଡ଼ିଆ ପତ୍ରିକାର ପୃଷ୍ଠା ଓଲଟାନ୍ତି, କବିତା ପଢ଼ୁ ପଢ଼ୁ ଅଖି ବୁଜି ଦିଅନ୍ତି । ଟ୍ରେନ୍‌ରେ ଚେକ'ର ହୋଇ ବସିଥିଲା ବେଳେ ଗୋଟାଏ ଲେଖାଏଁ ଗପ ସାରି ଦିଅନ୍ତି, ଏବଂ (୩) ତାଙ୍କର ଅଳ୍ପ ଇଂରାଜୀ ପଢ଼ୁଆ ପତ୍ନୀଗଣ ଯେଉଁମାନେ ଗୋପନରେ ଆଖି ଛଳଛଳ କରିବା ପାଇଁ ଅଥବା ରୋମାଞ୍ଚିତ ହେବା ପାଇଁ ଆମ ସାହିତ୍ୟକୁ ଖୋଜନ୍ତି, ସବୁ ମିଶି ଶହେ କି ଦୁଇ ଶହ ହେବେ. ନହେଲ ଏବେ ପାଞ୍ଚ ଶହ ହେବେ,—ସେଇମାନେ ମୋ ସୂତ ପୁଚ୍ଛକୁ ପରୁଚୁ ନାହାନ୍ତି ବୋଲି ବ୍ୟସ୍ତ ହେବି ? ଧୈର୍ଯ୍ୟ ଧରିବି ? (ଦୁଷ୍ଟା ଚିତ୍ରାଙ୍ଗଦା ମୋ ଭ୍ରୂଡରେ ଲେପ୍‌ଟେଇ ପଡ଼ି କୁରୁକୁରୁ ହେଉଛି,—କହୁଛି—ମନ ମୋର, ଆଉ କିଛି ଧରିବାକୁ ନାହିଁ ? ଚିତ୍ରାଙ୍ଗଦା ଦିବ୍ୟ ଅଶ୍ଳୀଳ । ସେଇଥିପାଇଁ ତ ଜୀବନର କୃଷ୍ଣ ପକ୍ଷ । କାମ୍ୟ ! ଆଃ କୋଉଠି ଥିଲୁ ଲୋ ଏତେବେଳଯାଏଁ ?) ବୋଧହୁଏ ତୁମେ ଏଇକ୍ଷଣି ଚେଇ ଉଠିବ । ମୋ ସାହିତ୍ୟରୁ କିଛି ନ ବୁଝିଥିଲେ ମଧ୍ୟ, ମୋର ଚନ୍ଦ୍ରାଚେତନାକୁ ବୁଝିବା ଅକାରଣ ବୋଲି ଭାବୁଥିଲେ ମଧ୍ୟ ତୁମ ବିଶିଷ୍ଟ ସ୍ୱାମୀର (ସମ୍ପତ୍ତିର) ମାନ ବଞ୍ଚେଇବା ପାଇଁ ଧାଇଁ ଆସିବ । କହିବ ଯେ ମୁଁ ଅଯଥାରେ ଏମିତି ନିରାଶ ହୋଇ ପଡ଼ିଛି, ନ ହେଲେ ଏମିତି କୁତ୍ସିତ କଥା କହନ୍ତି ନାହିଁ । କହିବ ଯେ ମେତେ ଅନେକ ଶିଷ୍ଟ ସେମାନେ ଖାତିର କରନ୍ତି, ତା'ର ପ୍ରମାଣ ମୋତେ ପୁରସ୍କାର ମିଳିଛି, ସାହିତ୍ୟ ଇତିହାସରେ ମୋ ନାଆଁ ଲେଖା ସରିଲାଣି, ଅନ୍ତତଃ ଓଡ଼ିଆ ବଜାରର ସ୍ନାତକୋତ୍ତର ଛାତ୍ରମାନେ ତା'କୁ ପଢ଼ିବେ, ପଢ଼ିବାକୁ ବାଧ୍ୟ ଇତ୍ୟାଦି । ତୁମର ସରୁ ସରୁ କଣ୍ଠରେ ଚିତ୍କାର କରିବାକୁ ବସିବ—ସାହିତ୍ୟର ଜୟ ହେଉ ! ଅଶ୍ଳୀଳ ଅରିସାହିତ୍ୟ ମରୁ !

ତୁମ ପ୍ରତି ଦୟା ଆସୁଛି ଏବଂ ପୁଣି ଟିକିଏ ଭାବିବାକୁ ପଡ଼ୁଛି । ମୋ ସାହିତ୍ୟ କ'ଣ ସତରେ କିଛି ଥିଲା ? ଠେଲି ଦେଲି ବୋଲି ପିଲାଟାକୁ ବାଧିଲା କି ?

କିନ୍ତୁ ଚିତ୍ରାଙ୍ଗଦା ଆହୁରି ଆହୁରି ଲାଗି ଆସୁଛି, ତା'ର ସମସ୍ତକୁ ମୋ'ର ସମସ୍ତରେ ଥାପି ଦେଉଛି, ଯେମିତି କି ଟିକିଏ ବୋଲି ଫାଙ୍କ ରହିବ ନାହିଁ, ଆଉ ମୋ ଉପରେ ରାଗୁଛି । କହୁଛି ଏମିତି ଦୋ ଦୋ ପାଞ୍ଚ ହେଲେ ଚଳିବ ନାହିଁ । ମୋତେ ମାନିବାକୁ ବାଧ୍ୟ କରୁଛି ଯେ ଖାଲି ମୋର ସାହିତ୍ୟକୁ ଗୁଡ଼ପଦ ଦେଲେ, ବନ୍ଧୁମାନଙ୍କୁ ପୋଡ଼ି ଦେଲେ ଯଥେଷ୍ଟ ନୁହେଁ, ପୋଡ଼ିବାକୁ ହେବ ମୋର ଚନ୍ଦ୍ରା-ଶୀଳତା ତଥାକଥିତ ସତ୍ୟକୁ ଲୋଡ଼ିବାର ଧୁରନ୍ଧଳାପ, ଦେବତାକୁ ଜାଣିବାର

ବହୁପ । ସେଇ ଅସଲ ସଇତାନ୍, ତାକୁଇ ପୋଡ଼ିଦିଅ, ଜାଳିଦିଅ । ଆଉ ଚିତ୍ରାଙ୍ଗଦାଙ୍କୁ ନିଅ, ଗୋଟିପଣେ ନିଅ, ନିରବଚ୍ଛିନ୍ନ ଜଙ୍ଗଲ. ଜଙ୍ଗଲରେ ବର୍ଷା, ବର୍ଷାରେ ବାଘ, ଦେହରେ ଦେହ, ହଂସାରେ ହଂସ··· । ପ୍ରବୃତ୍ତିରେ ପୂର୍ଣ୍ଣିତ ହୋଇ ଖତମ୍ ହୋଇଯାଅ । ସେଇ ବାଟେ ଭଗବାନଙ୍କୁ ଧରିବ ଯଦି ଧର । କିଏ ମନା କରୁଛି ?

କହୁଛି—ଚିନ୍ତା ମଣିପୁର ପ୍ରଥମ ବିଫଳତା । ବଞ୍ଚି ରହିବା ପାଇଁ, ବଞ୍ଚିବାର ସୁଖ କରିବା ପାଇଁ ଯେତିକି ବୁଦ୍ଧି ଦରକାର (ମୋତେ ପାଇବା ପାଇଁ ଯେତିକି କାରସାଦି, ଫେରକାମି, ଛକାପଞ୍ଝା ଆବଶ୍ୟକ ) ସେତିକି ଖର୍ଚ୍ଚ କର, ଆପତ୍ତି ନାହିଁ; କିନ୍ତୁ ସେଇଠୁଁ ଉପରକୁ ଗର୍ବ ବଢ଼ିଲେ ବିପଦ । ସେଥିରେ ଜୀବଧର୍ମ ମାଡ଼ ଖାଇଯିବ । ଯଥା ଉପସ୍ଥିତ ଆହାରକୁ ଗାଭିକନା ମାଡ଼ି ବସିପାରିଲେ ନାହିଁ, ଭକ୍ଷ୍ୟ ଲଙ୍ଗୁଡ଼ ହଲେଇ ପଳେଇଗଲା ଅବା ଉପସ୍ଥିତ ଭକ୍ଷକ ବାଘ ତୁମ ଗଳାକୁ ଚିପି ଧରିଲା, ତୁମେ ପଳେଇ ଯାଇପାରିଲ ନାହିଁ । ଯେହେତୁ ତୁମେ ଗର୍ବ ବଢ଼ିଲ —ମୋର ଭୋକ କ'ଣ ସତ ? ତା ହେଲେ ବାଘର ଭୋକ ସତ ହେବନି କାହିଁକି ? ମୋର ଭୟ କ'ଣ ସତ ? ତା ହେଲେ ଲଙ୍ଗୁଡ଼ ହଲା ପ୍ରାଣୀଟିର ଭୟ ସତ ନୁହେଁ ବୋଲି କିଏ କହିଲା ? ଚିତ୍ରାଙ୍ଗଦା ଯଦି ସତ, ତା'ହେଲେ ସୁଭଦ୍ରାଙ୍କ ହାତ ଧରିଲ କାହିଁକି ? ଇତ୍ୟାଦି । ଚିନ୍ତା ପରିହାର କର । ଦର୍ଶନରୁ ଦୂରେଇ ରୁହ ।

କୁହ ଯେତେବେଳେ ଯାହା ଭଲ ଲାଗିଲା, ସେଇ ହେଉଛି ସତ ।

ସୁଭଦ୍ରାଙ୍କୁ ପ୍ରେମ କଲାବେଳେ ସେଇ ଥିଲା ସତ ।

ଚିତ୍ରାଙ୍ଗଦାକୁ ରମଣ କଲାବେଳେ ଏଇ ହେଉଛି ସତ ।

ବର୍ଷା କୋଉଠି ଥିଲା ପୁଣି ଗଲଗଲ ହୋଇ ଗାଳି ଦେଉଛି । ଅନୁମାନ କରିବାକୁ ଭଲ ଲାଗୁଛି ଯେ ଏଇ ଶେଷ ଦଫା । ମଣିପୁରୀ ବୈଷ୍ଣବ ଧର୍ମ ଏଇଥର ଗୋଟିଏଧରେ ଧୋଇ ହୋଇଯିବ । ଭାରତ ଭୂଖଣ୍ଡରୁ ଆସିଥିବା ବିଦେଶୀ ଧର୍ମ ନିପାତ ହୋଇଯିବ, ବନାନୀ ପୁଷ୍ପପତ୍ର ମୁକ୍ତ ଶ୍ୟାମଳ ହୋଇ ଉଠିବ, ଚିତ୍ରାଙ୍ଗଦା ନାଚିବ, ତା'ର ପ୍ରେମିକ ନାଚିବ, ଛନ୍ଦହୀନ ନାଚ ··

ଚିତ୍ରାଙ୍ଗଦା ନାଚିବାକୁ ନାହିଁ । ମୋତେ ମନେ ପକେଇ ଦେଉଛି । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ତା'ପରେ ଯୋଉ କଥା । ସନ୍ଧ୍ୟା ସାତଟା [illegible] ହେଲଣି । ଅଠଟା ବେଳକୁ ସେ ଆସି ପହଞ୍ଚିବ । ନାଓରେମ୍ ଶ୍ୟାମକିଶୋର ।

ଶ୍ୟାମକିଶୋରକୁ ଚିତ୍ରାଙ୍ଗଦାର ପ୍ରେମିକ ବୋଲି କହିବ ? ଭାବୁ ଭାବୁ ଚିତ୍ରାଙ୍ଗଦା ମୋତେ ଫୁଲ ଏ ଚିମୁଟି ଦେଲା । କହିଲା, ତୁମ ମୁଣ୍ଡ ଖରାପ ? ବୁଝିଲି ଯେ ସେ ତା'ର ନିଜ ଲୋକ, ସୁହୃଦ । ସମତଳିଆ ହୋଇ କି ପାହାଡ଼ିଆ ହୋଇ, ହିନ୍ଦୁ ହୋଇ କି ଆଦିବାସୀ ହୋଇ ଯାଏ ଆସେ ନାହିଁ, ଯେତେ ହେଲେ ମଣିପୁରୀ ମର୍ଦ । ଆଉ ସେ ନିଜେ ହେଉଛି ମଣିପୁରୀ ରମଣୀ, ଅଲସୁଆ, ମହନ୍ତ ହୁଏତ ମତୁଆଲି ମର୍ଦମାନଙ୍କ ମା-ଭଉଣୀ-ସ୍ତ୍ରୀ । କେବଳ ଅପରକୁ ପ୍ରେମ କରିହେବ, ନାହିଁକିନା ସେ ଭିନ୍ନ, ମାୟାଙ୍ଗ୍ । ତାକୁଇ ପ୍ରେମର ହିଂସାରେ ଚିମୁଟି ହେବ । ପ୍ରେମର ହିଂସାରେ ଖତମ କରିଦେଇ ଦେବ । ଆରେ, ହଠାତ୍ ହିନ୍ଦି ଏମିତି ଉଚ୍ଚ ସ୍ୱରରେ ହସି ଉଠିଲି କାହିଁକି ? ମୋତେ ଡର ମାଡ଼ୁଛି । ହେଲେ ମନେ ହେଉଛି ଯେ ଏଇ ଭୟ ଅଛି ବୋଲି ସିନା ଆମ ପ୍ରେମରେ ଏତେ ରଙ୍ଗ, ଏତେ ଜ୍ୱାଳା ! ହାୟ, ତୁମେ ମୋତେ ଜୀବନରେ ଥରେ ହେଲେ ଡ଼ରେଇ ପାରିଲ ନାହିଁ ?

ଶ୍ୟାମକିଶୋର ଅବଶ୍ୟ ବୈଷ୍ଣବ, ଆମ ଜଗନ୍ନାଥଙ୍କ ଭକ୍ତ; କିନ୍ତୁ ସେ ଯାଙ୍କର ଭିତରୁ ଜଣେ । ମଙ୍ଗୋଲୀୟ, ମିଶ୍ର ଜାତି, ମେଇ-ତେଇ । ନାଖୁନା ଚେହେରା, ହଳଦୀ ଆସିଆ ରଙ୍ଗ, ଦବିଲି କପାଳ, ହେଲେ ଆଖି ଦି'ଟା ବଡ଼ ବଡ଼ । ତୁମର ଆଖି ପରି କହିଲେ ଚଳିବ, କିନ୍ତୁ ସେ ତୁମ ଭାଇ ନୁହେଁ । ଚିତ୍ରାଙ୍ଗଦାର ଭାଇ । ଆଉ ମୁଁ ହେଉଛି ବିଦେଶୀ, ପଶ୍ଚିମା, ମାୟାଙ୍ଗ୍ । ଯେଉଁମାନଙ୍କୁ ନ ତଡ଼ିଲେ ମଣିପୁରରେ ନିସ୍ତାର ନାହିଁ । ଚିତ୍ରାଙ୍ଗଦା ମୋ ଆଡ଼କୁ ଅନେଇଛି, ପାପ-ପ୍ରୀତିର ପ୍ରକୃଷ୍ଟ ସ୍ୱାହାଣି ତାଳି ଦେଇ କହୁଛି—ଅଯଥାରେ ଆମ ସମ୍ପର୍କକୁ ଗଣ୍ଡଗୋଳିଆ କରିଦିଅ ନାହିଁ । ମାୟାଙ୍ଗ୍‌ମାନଙ୍କୁ ବହିଷ୍କାର କରିବା ଯାହା, ଅଧିକାର କରିବା ସେଇଆ । ମୁଁ ସେଇଲାଗି ତୁମକୁ ଧରିଛି, ପ୍ରେମରେ ଜାବୁଡ଼ି ଧରିଛି ପରା ! ବୁଝି ପାରୁନାହିଁ ? ତୁମର ସାହିତ୍ୟ ଉତ୍ସାହ ଉଡ଼ି ପଳେଇ ଗଲାଣି କୁଆଡ଼େ, ଚିନ୍ତାର ପୋଷାକ ହୁଗୁଳି ଗଲାଣି, ଅଳ୍ପକରେ ତଳେ ଧୁସୁରିବ । ଲଙ୍ଗଳା ହେବାକୁ ଆଉ କ'ଣ ବାକି ରହିଲା ? ଅନାବିଳ ଆସକ୍ତିରେ ଶରଣ ପଶିବା ପାଇଁ ଆଉ କେତେ ସମୟ ? ଚିତ୍ରାଙ୍ଗଦାର ଜଙ୍ଗଲ, 'ଜଙ୍ଗଲରେ ବର୍ଷା, ବର୍ଷା ଧୂଆଁ ବାଘର ଆତ୍ମାରେ ଅନ୍ତ ହେବା ପାଇଁ ଆଉ କିଛି ବାଧା ଅଛି ବୋଲି ଭାବୁଛ ? ଭଦ୍ରେ ! ଭୟ କେମିତି ଭୟଙ୍କର ହୋଇ ଉଠେ, ମୁଁ ଏଇ ପ୍ରଥମ ଜାଣୁଛି । ଯେତେବେଳେ ଝାସ ଦେବା ଛଡ଼ା ଅନ୍ୟ ଉପାୟ ନାହିଁ । ତଥାପି ମୁଁ ସବୁର କରିବ । ଏତେ ଶୀଘ୍ର ନୁହେଁ, ଏତେ ଶୀଘ୍ର ନୁହେଁ । ନା ଓଁ ରମ୍ ଶ୍ୟାମକିଶୋର କଅଣ ମସୁଧା କରିବାକୁ ଆସିବ । ଯେତେ ହେଲେ ସେ ପୁରୁଷ ତଦୁପରି ବୈଷ୍ଣବ । ତା'ର କଅଣ କିଛି ମୋତେ କହିବାକୁ ନାହିଁ । ଯାହା ଚିତ୍ରାଙ୍ଗଦାର ଅଗମ୍ୟ ।

ନା ! ଚନ୍ଦ୍ରାଙ୍ଗଦାଙ୍କୁ ବାରଣ କଲି । ଇଏ ଶେଷ ବର୍ଷା ନୁହେଁ, ଶେଷ ବର୍ଷା ନୁହେଁ । ଶ୍ୟାମକିଶୋର ସାଙ୍ଗରେ ମସୁଧା ହେଲା ପରେ ତା'ପରେ ଯେଉଁ କଥା ।

ନା । ମୁଁ ଏଯାଏ ଲଙ୍ଗଳା ହୋଇ ନାହିଁ । ସାହିତ୍ୟ ଗଲଣି, ଚନ୍ଦ୍ରା ଗଲଣି (ନ ଯାଇଥିଲେ ମଧ୍ୟ ଯିବାକୁ ବସିଲଣି); କିନ୍ତୁ ଦେହକୁ ଚପି ହୋଇ ଆଉ କିଛି ଅଛି । ଜଙ୍ଘିଆ ବାନିଅନ୍ । ମିଛ । ଚନ୍ଦ୍ରାଙ୍ଗଦା ଆଉ ମୋ ଭିତରେ ବାଡ଼ବତା ଯେତିକି ।

ଶ୍ୟାମକିଶୋରର ଧର୍ମ ଓ ମୋର ମିଛ କୋଳାକୋଳି ହେବନାହିଁ ଗୋ କଟାକଟି ହେବେ । କୁକୁଡ଼ା ଯୁଦ୍ଧ । କି ମଜା !

ଅନ୍ତର୍ଯ୍ୟାମୀ ! ମୁଁ ଭାବୁଛି ତୁମେ କଅଣ ପଶ୍ଚାତାପ ବୋଲି ଛଟପଟ ହେଉଛ । ପ୍ରଥମେ କହିବ ଯେ ମୋ ଭିତରେ ଏଇ ସର୍ବନାଶୀ ଭାବ ଛପି କରି ଅଛି ବୋଲି ତୁମକୁ ଜଣାଥିଲା; କିନ୍ତୁ ମୋର ସାହିତ୍ୟରୁ ତା'ର ସୂଚନା ପାଇଛ ବୋଲି କେବେ ହେଲେ ଦାବି କରିପାରିବ ନାହିଁ । ମହା ମହା ସମାଲୋଚକମାନେ ଯାହା ପାରି ନାହାନ୍ତି···ନା, ତା ନୁହେଁ । ସଦାସର୍ବଦା ମୋ ପାଖରେ ରହୁଥିବା ହେତୁ ତୁମେ ହୁଏତ ମୋର ଗଭୀରଅଧିଆ ପ୍ରଳାପ ଶୁଣିଛ, ଏଇ ମଣିପୁରର ହାଉଳିଖିଆ ବର୍ଷା ପରି । ମୋତେ ପୂର୍ଣ୍ଣିମାର ଜହ୍ନ ଆଡ଼କୁ ଓଠ ନେଫେଡ଼ି ହସିବାର ଦେଖିଛ । ଉନ୍ମତ୍ତ ଅଥବା ଉଷ୍ମ ପରିବେଶରେ ହାଇ ପରେ ହାଇ ମାରୁଥିବାର ତୁମ ଆଖିରେ ପଡ଼ିଛି । ସେଇ ଲାଗି ତୁମେ ଅଙ୍ଗୁଳି ନିର୍ଦ୍ଦେଶ କରି ନିଶ୍ଚୟ କହିପାରିବ—ମୁଁ ଜାଣିଥିଲି । ତୁମର ଏଇ ଦଶା ହେବ ବୋଲି ମୁଁ ଜାଣିଥିଲି, କିନ୍ତୁ ତୁମର ଛଟପଟ ହେବାର କାରଣ ହେଉଛି ଭିନ୍ନ । ତୁମେ ପଶ୍ଚାତାପକୁ ପୁଚ୍ଛୁଛ ଯେ ଏଇ ଅଧଃପତନ ବ୍ରେକ୍‌ଡାଉନ ଏଥି ପୂର୍ବରୁ ହେଲା ନାହିଁ କାହିଁକି ? ଆଉ କେଉଁଠି ହେଲା ନାହିଁ କାହିଁକି ? କାହିଁକି ମଣିପୁର ? ଅବା ଚନ୍ଦ୍ରାଙ୍ଗଦା ?

କହୁଛି ଶୁଣ । ତୁମ ସରଳିଆ ମନ ପାଇଁ ସରଳିଆ ଉତ୍ତରଟିଏ ଦେବି । କିଓ, ପାତାଳକୁ ପଶିବାର ଥିଲେ ପୃଥିବୀର ଆମ ଆର୍ଯ୍ୟାବର୍ତ୍ତର ଅର୍ଥାତ୍ ଦାଣ୍ଡରୁ ଖସିବ ନାହିଁତ ଆଉ କେଉଁଠୁ ଖସିବ ? ପତନର ସୁବିଧା ଆଉ କେଉଁଠି ଅଛି ? ଓଡ଼ିଶା ? କର୍ଣ୍ଣାଟକ ? ନା ମଧ୍ୟପ୍ରଦେଶ ? ହଁ ଥରେ ସୁବିଧା ମିଳିଥିଲା କାଶ୍ମୀରରେ । ହେଲେ କୌଣସି କାରଣରୁ ଅଟକିଗଲି; କିନ୍ତୁ ଏଥର ଅଟକି ହେବ ନାହିଁ । ପୂର୍ବାଞ୍ଚଳର ଏଇ ସୀମାନ୍ତରୁ ଫେରି ଆସି ହେଉ ନାହିଁ, ସ୍ଖଳନର ପ୍ରଲୋଭନକୁ ଦବେଇ ହେଉନାହିଁ । ଦବେଇବାର ପ୍ରଶ୍ନ ଉଠୁନାହିଁ । ମୋହିନୀ ହସ୍ତିନୀକୁ କ'ଣ ଏମିତି ସେମିତି ବୋଲି ଭାବିଛ ?

ଏଠିକି ଆସିଲେ ବୁଝିଥାଆନ୍ତି ମୁଁ କ'ଣ କହୁଛି । ଇଂଫାଲ ସହରକୁ ଆସିବା ମାତ୍ରେ ଜାଣି ପାରିବ ଯେ ଏଇଠି ... ଶେଷ । ଭିନ୍ନ ଦେଶର ଆରମ୍ଭ । ଏଇ ଲୁଙ୍ଗି ବ୍ଲାଉଜ ପିନ୍ଧା ରମଣୀମାନେ, ରାସ୍ତାରେ ସାଇକେଲ ଚଢ଼ି ବୁଲୁଥିବା, ଘର ବିଣ୍ଡାରେ ତନ୍ତ ପକେଇ ସୁନ୍ଦର ବୁଣୁଥିବା, କ୍ୱାଇମ୍‌ବାନ୍ଦ ହାଟ । (କୁଆଡ଼େ ଭାରତର ବିଶାଳତମ ନାରୀ-ହାଟ) ରେ ପସରା ବସୁଥିବା ସୁନ୍ଦରୀ ଅସୁନ୍ଦରୀ ଅପର୍ଯ୍ୟାପ୍ତ ରମଣୀ-ମାନେ କଣ ଆର୍ଯ୍ୟାବର୍ତ୍ତରୁ ଆସିଛନ୍ତି ? ନା ବର୍ମାରୁ, କାମ୍ବୋଡ଼ିଆରୁ ? ଏମାନେ ଏତେ କାମ କରୁଛନ୍ତି, ତଥାପି ହସୁଛନ୍ତି କେମିତି ? ପୁରୁଷମାନେ ଅଛନ୍ତି, ସେମାନେ ମଧ୍ୟ ସୀମାଶୁଳ୍କ ଫାଙ୍କି ଦିଆ ଜିନ୍‌ସ୍ ପିନ୍ଧି ବୁଲୁଛନ୍ତି ଦଳ ଦଳ ହୋଇ, କିନ୍ତୁ ସେମାନେ କେହି କାମ କଲାପରି ଦିଶୁନାହାନ୍ତି । ହେଲେ, ସେମାନେ ମଧ୍ୟ ହସୁଛନ୍ତି । ସତେ କି ପୁରୁଷ ସ୍ତ୍ରୀ ଉଭୟ ମନ ଫୁଲାଣିଆ, ବେପରୁଆ, କିନ୍ତୁ ସ୍ତ୍ରୀଲୋକ-ମାନେ କାମ କରିବାକୁ ଭଲ ପାଆନ୍ତି, ପୁରୁଷମାନେ ତାଙ୍କ କାମ ଦେଖିବାକୁ ଭଲ ପାଆନ୍ତି । ଭିନ୍ନ ଦେଶ ଆଉ କାହାକୁ କୁହାଯାଏ ? ତା'ଛଡ଼ା ତାଙ୍କର ସେଇ ଗୋରା-ହଳଦିଆ ଚେହେରା ଅଥଚ ବଡ଼ ବଡ଼ ଆଖି, ଧୀର କଥା, ଖୋଲା ହସ, ନର୍ଦ୍ଦିଳ ଉଚ୍ଛଳତା, କଥିଁଳ ଗୋପନୀୟତା · ।

ଦେଲା; କିନ୍ତୁ ଏତେ ଆନନ୍ଦ ଏବଂ ଐଶ୍ୱର୍ଯ୍ୟ ସାଙ୍ଗକୁ କ୍ରୋଧ କାହିଁକି ? ଛକମାନଙ୍କରେ ଅଫିସ ସାମନାରେ ଏତେ ବନ୍ଧୁକଧାରୀ ଛିଡ଼ା ହୋଇଛନ୍ତି କାହିଁକି ? ବନ୍ଧୁକ ଖଲ୍ ଧରି ନାହାନ୍ତି, ଉଞ୍ଚେଇଛନ୍ତି । ଏଇ ପାଲସ ଦେହ ଲହୁଣି ରଙ୍ଗ ହସହସ ପ୍ରାଣୀମାନଙ୍କୁ ଏତେ ଡର ? ଥାଉ; କିନ୍ତୁ କର୍ତ୍ତୃପକ୍ଷଙ୍କୁ ପଚାରିଲେ କହିବେ ଯେ ଭୂଇଁତଳିଆ ବିଦ୍ରୋହୀମାନେ ସ୍ୱାଙ୍କର ଭିତରେ ମିଶି ଯାଇଛନ୍ତି ! କାହାରିକୁ ବିଶ୍ୱାସ ନାହିଁ । ପାହାଡ଼ ଅଞ୍ଚଳର ନାଗା ହୁଅନ୍ତୁ, କୁକି ହୁଅନ୍ତୁ, ବା ମଂଗୋଲୀୟ ମେଇ-ଟେଇ ହୁଅନ୍ତୁ । କେହି ନୁହନ୍ତି ।

କେହି ଆମର ନୁହନ୍ତି ! ଆମେ ହେଉଛୁ ମାୟାଙ୍ଗ୍ । ତେଣୁ ଇଚ୍ଛା ହେଲେ ଏଇଠି ଆଚରଣ ଖୋଲି ପକେଇଚ, ଆଭରଣ ଉତାରି ଦେବ, ବର୍ଷ ବର୍ଷ ଧରି ବଢ଼ି ଉଠୁଥିବା ନଷ୍ଟଲତା ଶୂନ୍ୟତାରେ ମୁଣ୍ଡି ମାରି ଦେଇ ଖଲାସ ହୋଇଯିବ ଏବଂ କାମିନୀ ମୋହିନୀ ତହାଙ୍ଗଦାକୁ କୁଣ୍ଢେଇ ଧରି··· । କେହି କିଛି କହିବେ ନାହିଁ । ଖାଲି ଦୃଶ୍ୟ ଦେଖିବେ । ମୋର ବିବସନକୁ ହସିବେ, ପତନକୁ ତାଳି ମାରିବେ । ହେଇରେ ଗୋଟାଏ ମାୟାଙ୍ଗ ! ଆଃ, ତଥାପି ତୁମେ ବୁଝିବାକୁ ନାରାଜ । କହିବାକୁ ଗ୍ଲାହୁଁ ଯେ ମୁଁ ଜାଣିଶୁଣି ଏମିତିକା ଢଙ୍ଗ କରୁଛି, ମଣିପୁରର କିଛି ଦୋଷ ନାହିଁ ମନେ ମନେ ଗୋଟାଏ ସୀମାନ୍ତ ଉପାନ୍ତ ତିଆରି କରି ନାଶ ଯିବାର କନାବା

ଯୋଜନ୍ତୁ, ତୁମକୁ ଆଉ ତୁମ ସଭ୍ୟତାକୁ (ସାହିତ୍ୟ ଚିନ୍ତା ଇତ୍ୟାଦିର ଗାରିମାକୁ) ଛାଡ଼ପତ୍ର ଦେବାକୁ ବସିଛୁ ।

ହଉ, ମୁଁ ହାର୍ ମାନିଲି । ମଣିପୁରର କିଛି ଦୋଷ ନାହିଁ । ସବୁ ମୋର କଳ୍ପନା, କାଉପାଉ । ସାହିତ୍ୟ ବନାମ ମିଛ ସତର ଶେଷ ସମାଧାନ ଛାଡ଼ି ଦେଇଛି —ଚୁଲିକି ଯାଉ ।

ଆଃ, ଆଉ ବିଶ୍ଳେଷଣ କରି ନାହିଁ । ଶ୍ୟାମକିଶୋରର ଆସିବା ବେଳ ହୋଇଗଲାଣି । ମୋତେ ଲାଗୁଛି ଏଇକ୍ଷଣି ଅନ୍ତିମ ଫଇସଲା ହୋଇଯିବ । ସାହିତ୍ୟ ଗଲାଣି, ଚିନ୍ତା ଗଲାଣି (ଗଲାଣି ବୋଲି ଧରିନିଅ) ବାକି କଅଣ ନିଷ୍ପତ୍ତି ଅଛି ବୋଲି ମନେ ହେଉଛି ? ଥିଲେ ଆଉ ସେ ଖଣ୍ଡିକ ମଧ୍ୟ ଯିବ ।

ଶ୍ୟାମକିଶୋର ଦସ୍ତା କରିବ । ତା' ଧର୍ମ ଆଉ ମୋ ନୀତିକୁ ଏକା ସାଙ୍ଗରେ ନେଇ ନେବ ।

ଏଥର ମୁଁ ଚଟାଙ୍ଗଦାକୁ ମାଡ଼ି ବସି ଚିନ୍ତନ କଲି । କେଜାଣି କାହିଁକି ମୋର ଆଶଙ୍କା ହେଉଛି ଯେ ଏଇ ଶ୍ୟାମକିଶୋର ଲୋକଟା ମୋତେ ଭୁଲ୍ କରିଦେବ । ଲାଗୁଛି ସେ ଖାଲି ବୈଷ୍ଣବ ନୁହେଁ, ମହାବୈଷ୍ଣବ, ଯେଉଁମାନେ କୃଷ୍ଣକୁ ଆତ୍ମସାତ୍ କରି ଦେଇଛନ୍ତି । ଅସଲ ମେଇତେଇ, ଯେଉଁମାନେ ହିନ୍ଦୁ ହେଲେ ମଧ୍ୟ ତାଙ୍କ ପୁରୁଣା ସାନାମାହିଙ୍କୁ ବଡ଼ ଠାକୁର ବୋଲି ମାନନ୍ତି । ଉଚ୍ଚା ସାନାମାହି କଣ କମ୍ ବୀର ! କମ୍ ତ୍ୟାଗୀ ।

ଶ୍ୟାମକିଶୋର ସାଙ୍ଗରେ ଏଇ ଗତ କାଲି ଗୋଟିଏ ସାନ୍ଧ୍ୟ ପାର୍ଟିରେ ଚିହ୍ନା ହେଲା । ସେ କରମର୍ଦ୍ଦନ ନ କରି ଲମ୍ବା ଚଉଡ଼ା ପ୍ରଣାମଟିଏ କଲା । କହିଲା —ଆପଣ ଜଗନ୍ନାଥଙ୍କ ଦେଶରୁ ଆସିଛନ୍ତି, ନୁହେଁ ? ଆପଣଙ୍କ ସାଙ୍ଗରେ ଭେଟ ହେବା ପାଇଁ ଖୋଜୁଥିଲି ଅନେକ ଦିନୁ । ଆଜିଯାଏଁ ସୁଯୋଗ ମିଳି ନଥିଲା ।···ଆଉ ସାର୍, ଭଲ ଅଛନ୍ତି ତ ? ଆମ ମଣିପୁର କେମିତି ଲାଗୁଛି ? ଧୀରେ ଧୀରେ ସବୁ ଭଲ ଲାଗିବ (ପ୍ରଶସ୍ତ ହସ । ତାର ନାକରେ ଅଙ୍କା ହୋଇଥିବା ନାମ ତିଳକ ମଧ୍ୟ ଟେପନା ହୋଇ ଆସିଲା ପରି ମନେ ହେଲା), ଆମର ଫାଣିପଙ୍କ୍ତି, ନୃତ୍ୟଗୀତ··· ସାର୍, ଆମର ମୃଦଙ୍ଗ ନାଚ ଦେଖିଲେଣି ?

ମୁଁ କିନ୍ତୁ ଆଉ ବିଶେଷ କିଛି କହିବାର ଅବସ୍ଥାରେ ନଥିଲି । କାରଣ ସେତେବେଳକୁ ମୁଁ ମୋର କଷ୍ଟଚିତ୍ତ କରି ସାରିଥିଲି । ମାନେ ଧ୍ରୁବ ପତନର କ୍ଷେପଡ଼ା ଚିଆଁର କରିବାରେ ଲାଗି ପଡ଼ିଥିଲି । ଚଗଚଗିଆ ସନ୍ଧ୍ୟା ଅନୁଯାୟୀ ମଦ ପିଉଥିଲି । ନିଚତରୁ ଅଧିକ । କହନ୍ତି ସବୁ ଯେ ଛା'ର ମାହାତ୍ମ୍ୟରେ ଅସହ୍ୟ ସଂସାରକୁ

ଭୁଲିବାକୁ ହେବ, ତା'ପରେ ଯାଇଁ ଆପଣାର ସ୍ୱର୍ଗ ଅଥବା ନର୍କ ଗଢ଼ି ହେବ, କିନ୍ତୁ ମୋର ସେଥିରେ ମୁଣ୍ଡ ବଥେଇବା ଝାପ୍‌ସା ଦେଖାଯିବା ଛଡ଼ା ଆଉ କିଛି ଲାଭ ହେଉନଥିଲା । ହେଲେ ଅନ୍ୟ ଉପାୟ କଣ ଥିଲା ? ବିଧି ଅନୁଯାୟୀ ମଦ୍ୟପାନ ପରେ ବାରନାରୀ ଗମନ କରିବା କଥା । ସେଥିରେ କୁଆଡେ ପତନ ଅତ୍ୟନ୍ତ ସୁଗମ ହୋଇଯାଏ । ଶୁଣିଛି ଏଠି ତା'ର ଅଭାବ ହେବ ନାହିଁ; କିନ୍ତୁ ଏ ବୟସରେ ସେ ବାଟେ ଗଲେ ମହା ବିପଦ । ବଳ ପାଇବ ନାହିଁ, ଜନେ ହସିବେ । ଅର୍ଥାତ୍ ସେଇ ଅପସରା ନାରୀ ହସିବ । ନାଃ ଯାହା ହେଉ ପଛେ ଅଧିକରୁ ଅଧିକ ମଦ ପିଇବା ଛଡ଼ା ଅନ୍ୟ ଉପାୟ ନାହିଁ । ସେବକୁ ମୁଁ ମୋର ଆସ୍ପର୍ଣଜ୍ଞ ଅନୁମାନ କରି ପାରି ନଥିଲି ଯେ ସାହିତ୍ୟକୁ ଛାଡ଼ିବା ପୂର୍ବରୁ ମୁଁ ଶେଷଥର ପାଇଁ ମୋର କଳ୍ପନାକୁ ଚଳେଇ ନେଇ ପାରିବି, କୋଉଠି ବୋଲି କୋଉଠିକି । ପତନର ସାଧନ ପ୍ରସ୍ତୁତ କରିନେବି, ନିଜକୁ ନିଜେ । ପରେ, ଆଜି ସାହାନ୍ତିଆ ବେଳକୁ ଯାଇ ବୃଷ୍ଟି ହେଲା । ଆକାଶ ଗର୍ଜୁଥିଲା । ଆଉ ମୁଁ ଯଥାକ୍ରମେ ଗଢ଼ିଲି ସେମାନଙ୍କୁ । ଚହାଙ୍ଗଦା, ଚହାଙ୍ଗଦାର ଜଙ୍ଗଲ, ଜଙ୍ଗଲରେ ବର୍ଷା, ବର୍ଷାଧୂଆ ବାଘ ··

ଭ୍ରଷ୍ଟ ମୁଁ କୁହୁଡ଼ିଆ ଚେତନାର ବଶବର୍ତ୍ତୀ ହୋଇ ତା'ର ସବୁ କଥାରେ ହଁ ଭରିଲି । ମଣିପୁରର ବୈଚିତ୍ର୍ୟ ବିଷୟରେ କଣ ସବୁ କହିଗଲା, ମୁଁ ସିଓର ସିଓର ବୋଲି ଦୋହରେଇଲି । ଶେଷକୁ ସେ ଯେତେବେଳେ କହିଲା ଯେ ସେ ଆସନ୍ତା କାଲି ସନ୍ଧ୍ୟା ଆଠଟା ବେଳକୁ ମୋ ପାଖକୁ ଆସିବାକୁ ଚାହେଁ, କଅଣ ଜରୁରୀ ମସୁଧା କରିବାର ଅଛି, ମୁଁ ବିନା ଦ୍ୱିଧାରେ ମୁଣ୍ଡ ଟୁଙ୍ଗାରିଲି । ବିଦାୟ ନେଲା ବେଳକୁ ପୁଣି ଥରେ ସଭକ୍ତ ପ୍ରଣାମଟିଏ କଲା । ଭଦ୍ରଲୋକ ମୋ ଚେତନାରେ ଆତ୍ମୀୟତାର ଏକ ବିଶେଷ ଛାପ ରଖି ଦେଇଗଲା । କ୍ରମଶଃ ସେ ମୋ ଚହାଙ୍ଗଦାର ବାଘ ଅଥବା ଶ୍ୟାଲକ ରୂପ ଧାରଣ କଲେ, ମୁଁ କଣ ଏ କଥା ଜାଣିଥିଲି ?

ଝିଙ୍ଗ୍·· ଝିଙ୍ଗ୍·· ହେଇ ସେ ଆସି ଗଲାଣି; କିନ୍ତୁ ମୋ ଛାତି ଭିତରଟା ଏମିତି ଧଡ଼ ଧଡ଼ ହେଉଛି କାହିଁକି ? ପ୍ରଥମ ଥର ପାଇଁ ମନେ ହେଉଛି ତୁମେ ପତପତିକା ମୋ ପାଖରେ ନାହଁ, ତୁମେଇ ମୋତେ ଛାଡ଼ି ଦେଇଛ । ଆଉ ଚହାଙ୍ଗଦା ପ୍ରକୃତରେ ନାଓରେମ ଶ୍ୟାମକିଶୋରର ଭଉଣୀ ପରି ଦେଖା ଯାଉଛି । ସେ ବି ତା' ନାକରେ ଚଟା ଲଗେଇଛି ।

× × × ×

ରାତି ଦଶଟା । ସୁଭଦ୍ରେ, ସେ ଆସି ଚାଲିଗଲାଣି । ମୁଁ ଅଛି । ହଁ, ଦେହ ମନକୁ ଅଣ୍ଡାଳି ଦେଖୁଛି ମୁଁ ଅଛି; କିନ୍ତୁ ମୋତେ ଲାଗୁଛି ମୁଁ କନିଷ୍ଠ, ଉଚ୍ଛିଷ୍ଟ ହୋଇ

ପାରୁଲଣି । ମୋତେ ଭ୍ରମମାନଙ୍କ ସାଙ୍ଗରେ ଜୀବନ୍ତ ସଂସାର ଭିତରେ ଗଣିବାର ନୁହେଁ । ମୋର ସିଦ୍ଧୂରମଣା ବୈଶିଷ୍ଟ୍ୟକୁ ସମ୍ମାନ ଦେବା ପାଇଁ, ଚହ୍ଲେଇ ଦେବା ପାଇଁ ବର୍ଷା ମଧ୍ୟ ଉହ୍ଲଗଲାଣି । ଚଟାଙ୍ଗଦା କ୍ରୁରୁଳ ଖାଉଛୁ, ଥାଇ ଥାଇ ମୋତେ ଚପୁଛୁ । ବୋଧହୁଏ ମୁଁ ଉଭେଇ ଯାଇ ନାହିଁ, ଗୋଟିକପଣେ ଅଛୁ କି ନାହିଁ ବୋଲି ପରଖୁଛୁ ।

ମୂଳରୁ କହୁଚୁ କଣ ହେଲା । ଶ୍ୟାମକିଶୋର ଫୁଲ୍ଲ ବଦନରେ ଦମ୍ଭିଲା ରୁମରେ ପ୍ରବେଶ କଲା, ମୁଣ୍ଡ ନୁଆଁଇ ପ୍ରଣାମ କଲେ ଏବଂ ସିଧାସଳଖ ସୋଫା ଉପରେ ବସି ପଡ଼ିଲା । ମୋ ଆଖିରେ ଆଖି ରଖିଲା । ରଖିଲା ଯେ ଉଠେଇବ କୁ ନାହିଁ । ମେଇଠୁଁ ମନ୍ଦ ମନ୍ଦ ହସିବାକୁ ଲାଗିଲା । ସଫଳକାମ ବୁଢ଼ୀଆଣୀ ବୋଧହୁଏ ଜାଲରେ ପଡ଼ିଥିବା ପୋକ ସାଙ୍ଗରେ ଏମିତି ମିତ ହେବାକୁ ଚାହେଁ କହିଲା—

"ସାର୍ । ଶୁଣି ଖୁସି ହେବେ ଯେ ମୁଁ ମଧ୍ୟ ଜଣେ ଲେଖକ । ଅନେକ କବିତା ଲେଖିଛି । ଭକ୍ତିମୂଳକ ।"

ମୋର ଆଶ୍ଚର୍ଯ୍ୟହେବା ସ୍ୱାଭାବିକ । ମୁଁ ଭାରତ ସରକାରଙ୍କ ପ୍ରତିନିଧି ହୋଇ ଏଠିକି ଆସିଛି, କେନ୍ଦ୍ର ସାହାଯ୍ୟରେ ଗଢ଼ା ହୋଇଥିବା ରାଜ୍ୟର ବିଭିନ୍ନ ଶିଳ୍ପ ଉଦ୍ୟୋଗର ସମୀକ୍ଷା କରିବାକୁ ଆସିଛି, ଏତିକି ସମସ୍ତଙ୍କୁ ଜଣା । ସମୀକ୍ଷକର ଆଉ କାମ କଅଣ ? କିନ୍ତୁ ଏଇ ଲୋକଟା ମୋ ବିଷୟରେ ଆହୁରି ଏତେ କଥା ଜାଣିଲା କେମିତି ? ମୁଁ ଓଡ଼ିଶାରୁ ଆସିଛି, ଖାଲି ସେତିକି ନୁହେଁ; ମୁଁ ଜଣେ ଲେଖକ ବୋଲି ବୁଝି ନେଇଛି । ସେଇଥିପାଇଁ କହିଲା ସେ ମଧ୍ୟ ଜଣେ ଲେଖକ । 'ତା' ମାନେ ସେ ମୋର ସମୀକ୍ଷା କରୁଛି, ସ୍ୱା'କୁ ତା'କୁ ପରସ୍ପର ଖୋଲତାଡ଼···ହେ ଭଗବାନ୍ ! ତା'ହା ହେଲେ ସେ ହୁଏତ···

"କାଲି ଯେଉଁ ମନ୍ତ୍ରୀଙ୍କ ସାଙ୍ଗରେ ହୁଇସ୍କି ପିଉଥିଲେ ଆପଣ, ସେ ମୋର ବଡ଼ଭାଇ । ଖୋଦ୍ ମାମୁଙ୍କ ପୁଅ ।"

ସାହିତ୍ୟ ପରେ ହୁଇସ୍କିର ଅବତାରଣା—କଥା କଅଣ ? କହିବାକୁ ଚାହୁଁ ଯେ ମୁଁ କେବଳ ଲେଖକ ନୁହେଁ, ମଦ୍ୟପ ? ବେଶ୍, ତୋର କଣ ଗଲା ? ହଠାତ୍ ମୋତେ ଭୟ ଲାଗିଲା । ଏତେ ଧୂରନ୍ଧର ହୋଇଛୁ ଯଦି କହିଲୁ ଦେଖି ମୁଁ କାହିଁକି ହୁଇସ୍କି ପିଉଥିଲି ? କହି ପାରିବୁ ? ମୋର ସୁଭଦ୍ରା ସାହିତ୍ୟ ଇତ୍ୟାଦିକୁ ଗୋଡ଼ପଚ ଦେଇ ତୋ ଭଉଣୀକୁ କେମିତି ଧରିଛି କହି ପାରିବୁ ? ଧୁର୍....ସେଇଠୁଁ ମୋର ମନରେ ଆସିଲା ଯେ ସେ ମନ୍ତ୍ରୀଙ୍କ ମଦ ପିଇବା ବିଷୟରେ ମଧ୍ୟ କହିଲା । ସେଥିରେ ଯାଏ ଆସେ ନାହିଁ । କିଶୋ କିବାରଣ ଏଠି କାର'ବନ୍ଧନ ହିସାବରେ ଗଣା ହେଉ

ନାହିଁ । ତାହା ହେଲେ ସେ କଣ ମନ୍ତ୍ରୀଙ୍କ ଖୋଦ୍ ମାମୁଁ ପୁଅ ଭାଇ ବୋଲି ମୋତେ ଚେତାଇ ଦେବାକୁ ଚାହିଁଲା ? ରକ୍ଷା କର !

ମୋତେ ବେଶୀ ସମୟ ଧନ୍ଦାଳି ହେବାକୁ ପଡ଼ିଲା ନାହିଁ । ସେ ମୋର ସମସ୍ତ କଳ୍ପନାଜଳ୍ପନାକୁ ଗୋଟାଏ ବୋମାରେ ଉଡ଼େଇ ଦେଲା । କହିଲା,

"ସାର୍, ସେଇ ଯେଉଁ ପି: ପ୍ରୋଜେକ୍ଟ—"

ଏଁ ! ପି. ପ୍ରୋଜେକ୍ଟ କଥା ତୁ କେମିତି ଜାଣିଲୁ ? ମୋର ସମୀକ୍ଷା ବହୁମୁଖୀ; କିନ୍ତୁ ମୂଳ୍ୟ ଉଦ୍ଦେଶ୍ୟ ପି ପ୍ରୋଜେକ୍ଟ । ନାଓରେମ୍ ଶ୍ୟାମକିଶୋର ତା'ର ଟେର୍ ପାଇଲା କେମିତି ? ମୁଁ କଣ ମଦ ନିଶାରେ ତାର' ମନ୍ତ୍ରୀଭାଇଙ୍କୁ କଣ କହି ପକେଇଛି ? ନା, ତା ହୋଇ ନଥିବ । ଯାହା ହେଉ ସେ ଜାଣିଛି, ସେ ଜାଣିଛି । ମୁଁ ସନ୍ତ୍ରସ୍ତ ଚାହାଣିରେ ତା'ର ପରବର୍ତ୍ତୀ ପ୍ରଶ୍ନକୁ ଅପେକ୍ଷା କଲି ।

"ସେଥିରେ କିଛି ଗଣ୍ଡଗୋଳ ନାହିଁ । ଏକ୍‌ସମ୍ ସୁରେନ୍ଦ୍ର ନିର୍ଦ୍ଦୋଷ ।"

ମୋର ମୁଣ୍ଡ ଘୂରେଇ ଗଲା; କିନ୍ତୁ ମୁଁ ନିଜକୁ ସମ୍ଭାଳି ନେଲି । ଏ ଲୋକଟା ସବଜ୍ଞ ହୋଇପାରେ, କିନ୍ତୁ ମୁଁ ନିଜକୁ ଧରା ପକେଇବି ନାହିଁ । ମୁଁ ଭାରତ ସରକାରଙ୍କ ଜଣେ ବରିଷ୍ଠ ଅଧିକାରୀ, ମୋତେ ମୋର କର୍ତ୍ତବ୍ୟ କରିବାକୁ ପଡ଼ିବ । ମୋର ପାଟି ଫିଟିଲା । କହିଲି—

"ଆପଣ କଣ କହୁଛନ୍ତି ମୁଁ ବୁଝି ପାରୁ ନାହିଁ । ସମୀକ୍ଷକ ହିସାବରେ ମୁଁ ଯାହା କରିବାର କଥା କରିବି । କେଉଁ ପ୍ରୋଜେକ୍ଟ କେଉଁ ସୁରେନ୍ଦ୍ର ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ ।" "ସାର୍, ସମ୍ପର୍କ ନାହିଁ ବୋଲି କେମିତି କହୁଛନ୍ତି ? ଆମ ସାଙ୍ଗରେ ଆପଣଙ୍କର ଯୁଗଯୁଗର ସମ୍ପର୍କ (ଚତୁର ଆନନ୍ଦର ନମୁନା ଦେଖେଇ ସେ ବୋଧହୁଏ ଗୋଟାଏ ଟକଲା ଫୁଟେଇଲା) । ମୁଁ ଏହାରି ଉପରେ ଗୋଟାଏ କବିତା ଲେଖିଛି । ଆମ ସାଙ୍ଗରେ ସମ୍ପର୍କ ବାନ୍ଧିବା ଛଡ଼ା ଅନ୍ୟ ଉପାୟ ନାହିଁ, ଭାରତ ହେଉ, ଜାପାନ ହେଉ, ବର୍ମା ହେଉ । ଆମେ କିନ୍ତୁ ଯେଉଁଠି ଥିଲୁ ସେଇଠି ଅଛୁ, ସମସ୍ତେ ଆମକୁ ଭଲ ପାଆନ୍ତି । ସାର୍, ସୁଭାଷ ବୋଷଙ୍କ ଆଜାଦ୍ ହିନ୍ଦ ଫୌଜ କେଉଁଯାଏ ମାଡ଼ି ଆସିଥିଲେ, ସ୍ୱାଧୀନତାର ପତାକା ପୋତିଥିଲେ ଦେଖିଲେଣି ନା ? ଆଃ ମିଛୁଟାରେ କେତେ ଲୋକ ମଲେ···" ମୁଁ ନୀରବରେ ରହିଲି ତା'ଛଡ଼ା ଆଉ କଣ କରିପାରି ଥାଆନ୍ତି ।

ସେ କିନ୍ତୁ ପ୍ରେମର ମାହାତ୍ମ୍ୟ ବିଷୟରେ କହି ଚାଲିଲା । କହିଲା, ଶାନ୍ତ ଦାସ ଗୋସାଇଁ କହିଛନ୍ତି ଯେ ପ୍ରେମ ହିଁ ଶାଶ୍ୱତ, ବାକି ସବୁ ମିଛ । ଯାହା କିଛି କରିବାକୁ ଚାହଁ ସେଇ ପ୍ରେମର ଜରିଆରେ କର ।

ମୁଁ ଅନ୍ୟମନସ୍କ ହୋଇଗଲି । ମୋର ଆଖି ଆଗରେ ନାଚ ଗଲା କିଛି ଦିନ ତଳେ ସ୍ୱାଙ୍କର ପ୍ରସିଦ୍ଧ ସ୍ୱର୍ଣ୍ଣମନ୍ଦିର ଗୋବିନ୍ଦଜୀଉଙ୍କ ଅଗଣାରେ ଦେଖିଥିବା ମୃଦଙ୍ଗ ନାଚ । ଗୋବିନ୍ଦଜୀଉଙ୍କ ଆସିବା ଆଗରୁ ସ୍ଥାନୀୟ ବନ ଦେବତା ଥ୍ୟାଙ୍ଗ୍‌ଜାଙ୍ଗ୍ ଥିଲେ, ତାଙ୍କ ପାଇଁ ମଧ୍ୟ ନାଚ ହେଉଥିଲା । ତାଙ୍କ ନାଆଁରେ ଏବେ ମଧ୍ୟ ମଉଛବ ହୁଏ । ହେଲେ ଖଣ୍ଡା ବଦଳରେ ମୃଦଙ୍ଗ ଆସିଗଲା । ବେଶ୍ ସେଇ ମୃଦଙ୍ଗଟାକୁ ବୁଲେଇ, ବାଡ଼େଇ, କସ୍ତୁଡ଼ି କାଳସୀ ଲାଗିଲା ପରି ନାଚ, ଘୂରି ବୁଲ, ବୋଲ ପ୍ରେମର ଜୟ । ପ୍ରଚଣ୍ଡ ବହୁଳତା । ହିଂସ୍ର ତନ୍ମୟତା । ଯାହା କିଛି କରିବାକୁ ଚାହୁଁ, ସେଇ ପ୍ରେମର ଜରିଆରେ କର । ମୃଦଙ୍ଗକୁ ଖଣ୍ଡା ବୋଲି ଭାବ, ହିଂସାକୁ ଆନନ୍ଦିତ କର, ସେକ୍ସକୁ ସମ୍ମାନିତ କର······

ପ୍ରେମକୁ ପ୍ରଜ୍ୱଳିତ କର........

ମୋର ଅନ୍ୟମନସ୍କତାରେ ସେ ବୋଧ ହୁଏ କ୍ଷୁଣ୍ଣ ହେଲା । କାହିଁକିନା ସେ ହଠାତ୍ ସ୍ୱର ବଦଳେଇଲେ । ମୁହୂର୍ତ୍ତେ ରହିଯାଇ କହିଲା, "ମୋର ଡେରି ହୋଇ ଗଲାଣି । ମନ୍ତ୍ରୀଜୀ ଅପେକ୍ଷା କରିଥିବେ । ମନ୍ତ୍ରୀଜୀ କହିଛନ୍ତି ଯେ ଟଙ୍କା କିଛି ବଡ କଥା ନୁହେଁ, ଲକ୍ଷେ ହେଉ, ପାଞ୍ଚ ଲକ୍ଷ ହେଉ, ଅସଲ ହେଉଛି ଝୁସିବାସିରେ ବ୍ୟାପାରଟାକୁ ସଜାଡ଼ି ଦେବା କଥା, ଯେମିତିକି କାହାର କିଛି କ୍ଷତି ନ ହୁଏ—।"

ଲକ୍ଷେ ହେଉ, ପାଞ୍ଚ ଲକ୍ଷ ହେଉ ! ତା'ମାନେ ପାଞ୍ଚ, ଅଙ୍କ ବସିଲେ ଆହୁରି ବେଶି । ମୁଁ ଚେଇଁ ଉଠିଲି । ଏଥର ମୁଁ ମୋ ଚାହାଣିରେ ତା'କୁ ଖୋଳି ପକେଇଲି । ତା'କୁ କେମିତି ଲାଗିଥିବ, ସେଇ ଜାଣେ ।

ଧାତ୍ କ'ଣ ତୋ ମୁଣ୍ଡରେ ପଶୁଛି କରେ ? ଇଏ କଣ ସାହିତ୍ୟ ହୋଇଛି ଯେ ମନ ଇଚ୍ଛା ବର୍ଜନ କରିବୁ ? ନା ତୋର ଅଭିଲା ଚନ୍ଦ୍ରା ? ଇଏ ସରକାରୀ, କାମ, ପବ୍ଲିକ୍ ଡ଼ିଲ୍ଟି । କୋଉ ସାହସରେ ତା'ର ଅବମାନନା କରିବୁ, ଯାହା ଜୀବନଯାକ କରିନାହୁଁ ।

(ଭୁଲ । ସବୁକି ମୁଁ ଟଙ୍କା ପାଇଁ ଲୋଭଉଛି ? ଆଜିକା ବଜାରରେ ପାଞ୍ଚଲକ୍ଷ ଏମିତି କେତିକି ? ଦିଲ୍ଲୀରେ ଗୋଟାଏ ଭଲ ବଙ୍ଗଳା କିଣିବାକୁ ନିଅଣ୍ଟ ହେବ । ସେ କଥା ନୁହେଁ, ମୋର ଲୋଭ ହେଉଛି ଯେ ଏଇ ସୁବିଧା ମିଳିଛି ସୁଭଦ୍ରା ସାଙ୍ଗରେ ଶେଷ ସୃଷ୍ଟିକୁ ଛିଣ୍ଡେଇ ଦେବ, ଦେହକୁ ଚପି ଧରିଥିବ! ଶେଷପରିଧାନକୁ ଉତାରି ଦେବ ତୁମର ତଥାକଥିତ ନୀତି, ବେଦ ବାକ୍ୟ । ଗଣ୍ଡି ନାହିଁ ମୁଣ୍ଡ ନାହିଁ, ଯୁକ୍ତି ଫୁକ୍ତି କିଛି ନାହିଁ, ଖାଲି ଗୋଟାଏ ଚେତନାକୁ ଆଭରି ବସିଥିବା ଗୃଧ୍ର, ଜେଜେବାପା,

କ୍ୟାଟିଗରିକାଲ୍ ଇମ୍ପରେଟିଭ । ଡ୍ୟାମ୍ ! ପବ୍ଲିକ ଝୁଡ଼ୁଟି ହେଲେ ଖସିଯାଉଛୁ ! ମୋର ସାହିତ୍ୟ ଯେମିତି ଅଣନାୟିଆ, ଆମସଲ୍ସ ମୋର ସମୀକ୍ଷା, ସରକାରୀ କାମ ଯେମିତି ହେବ ନାହିଁ ବୋଲି କୋଉଠି ଲେଖା ହୋଇଛି ? ···ଶ୍ୟାମକିଶୋର, ତୁ କଣ ମୋ ମନ କଥା ଜାଣି ପାରୁଛୁ ? ତୋର ମୁଖମଣ୍ଡଳ ଏମିତି ଉଦ୍‌ଭାସିତ ହୋଇ ଉଠିଛି କାହିଁକି ?)

କାହିଁକନା ତୁ ନିଜ ମୁଖମଣ୍ଡଳକୁ ଦେଖି ପାରୁନାହୁଁ । କେମିତି ମିଛୁଆ-ପଣରେ ରଙ୍ଗା ହୋଇ ଉଠୁଛୁ । କରେ; ତୁ ! ତୋର ସାହିତ୍ୟକୁ ଗ୍ଲୁଡପଟ୍ଟ ଦେଇଛୁ ପରା ? ତା' ହେଲେ ପୁଣି ତା'କୁ ସ୍ୱା ଭିତରକୁ ଆଣୁଛୁ କାହିଁକି ? ଅସଲ କଥା ହେଉଛି ପାଞ୍ଚ ଲକ୍ଷ ଦଶ ଲକ୍ଷ ତୋ ଆଖିରେ ନାଚୁଛି । ଓଝାମ ସଜେନ୍ଦ୍ର ଓ ତା'ର ସାଙ୍ଗ ସାଥୀ କୋଟି କୋଟି ସରକାରୀ ଟଙ୍କା ବରବାଦ କରି ଥାଆନ୍ତି; ସେଥିରୁ ଦ' ପଇସା କମେଇ ବଡଲୋକ ହୋଇ ଥାଆନ୍ତି, ତୋର ସେଥିରେ ଖବବାର କିଛି ନାହିଁ, କାହିଁକନା ତୁ ମଧ୍ୟ ଭଲ ଘର ଖଣ୍ଡେ କିଣି ପାରିବୁ, ସାଉଥ୍ ଦିଲ୍ଲୀ ନ ହେଲେ ନର୍ଥ ଦିଲ୍ଲୀ, ଯମୁନା ସେପାରି । ନୂଆ ମାରୁତି କାର୍ । ବାହା ହେବା ଝିଅ ପାଇଁ ଗୋଟାଏ ଭଲ ରେଫ୍ରିଜରେଟର୍' ଯାହା ବାହାଘର ବେଳକୁ ଦିଆ ହୋଇ ପାରି ନ ଥିଲା । ଏଇସବୁ ଇତର ହାଧାରଣ ଲୋକ, ସମା ଦାମା ଶାମାଙ୍କ ଲୋଭ···

(ନା ! ମୁଁ ସମା ଦାମା ଶାମା ନୁହେଁ !)

ଭଦ୍ରେ; ମୁଁ ତମତମ ହୋଇ ଉଠିଲି । ମୁଁ ତୁମକୁ ସାହିତ୍ୟ ଓଗେରକୁ ଗ୍ଲୁଡ଼ପଟ ଦେଇ ସାରିଛି, ତଥାପି ତୁମକୁ ସାକ୍ଷୀ ରଖି ପଚାରୁଛି—ମୁଁ କଣ ସାଧାରଣ ? ମୁଁ କଣ ନିର୍ଜୀବ ? ମୁଁ କଣ ହାଲୁକା ? ମୋର ସାହିତ୍ୟ ଅଣନାୟିଆ ଅଣବାସ୍ତବ କି ଯାହା ପାରେ ତାହା ହେଉ, ତାକୁ ବୁଝ କି ନ ବୁଝ, ସେଥିରେ କଣ ତୁମର ମର୍ମ ବିଦ୍ଧ ଉଠେନାହିଁ ? ତୁମକୁ ପ୍ରେମ କଲାବେଳେ ତୁମର ଅତଳତଳ ଉତ୍କଟ ଆନନ୍ଦରେ ଅଥବା ବେଦନାରେ ଚିତ୍କାର କରି ଉଠେନାହିଁ ? ମୁଁ ଅନ୍ତରତମ ଗଭୀରତମ ଭାବର ପିଆଦା, ମୁଁ ତୁମତମ ହେବି ନାହିଁ ତ ଆଉ କିଏ ହେବ ।

ଆଜି ମୁଁ ମୋର ଅତୀତକୁ ନଷ୍ଟ କରି କରି ଦେବାକୁ ବସିଛି ସେଥିରେ ମଧ୍ୟ ମୁଁ ମୋର ତମତମ ଧାମସିକତା ଦେଖେଇବି, ଗ୍ଲୁଡ଼ିବି ନାହିଁ । ଅତୀତରେ ଖାଲି ସୁଭଦ୍ରା ନାହିଁ, ସାହିତ୍ୟ ଓଗେର ନାହିଁ, ସରକାରୀ ବେଉସା ଅଛି । ନୀତି ଅଛି । ମୁଁ ତା'ର ମୁଣ୍ଡ ମୋଡ଼ି ଦେବି । ନେଭି···ନେଟ ପାଞ୍ଚ ··ଦଶ···

ମୋର ମନେ ହେଲା ଶେଷ ବର୍ଷା ଗର୍ଜି ଉଠିଲାଣି । ସବୁ ଗାଳିଦେବ ଏଇକ୍ଷଣି । ନାଓରେମ୍ ଶ୍ୟାମକିଶୋର ମୃଦଙ୍ଗରେ ହାତ ପକେଇଛି । ଅଜାଦ୍ ହୁନ୍

ଫୌଜ ମୋଇବଙ୍କ ପାଣି ହୋଇ ମାଡ଼ି ଆସୁଛି ଭିତରକୁ । ଖୁରଶୀଦ୍ ଯେମା ଏକାଡ଼ି ହୋଇ ପଡ଼ୁଛନ୍ତି ସେପାଖକୁ, ମାରିବା ପାଇଁ କି ମରିବା ପାଇଁ ଯାଏ ଆସେ ନାହିଁ । ଚନ୍ଦ୍ରାଙ୍ଗଦା ଖିଲ ଖିଲ ହୋଇ ହସୁଛି, ହସୁଛି ତ ହସୁଛି, (ତୁମକୁ ଠକେଇ ଥରେ ମାଲ୍ୟା ପାଖକୁ ଯାଇଥିଲି, ହଠାତ୍ ତା'ର ହସ ପରି ଦେଖା ହେଲା) । ଏଇ ଗୋଟାଏ ଜୀବନର ଶେଷ ଫଇସଲା ହୋଇଯିବ । ଦାଢ଼ରୁ ଖସିବ, ଖସିଲି । ମୋର ୯୦ ଖୋଲି ଆସିଲା ହୃଷ୍ଟ କନ୍ଦଦେବ, ହଁ ମୁଁ ନେବ; ଜୟ ଜଗନ୍ନାଥ ··

ମୁଁ ହୃଷ୍ଟ ଜନ୍ମଦେଇ ଥାଆନ୍ତି । ମୋତେ କେହି ଅଟକେଇ ପାରି ନ ଥାଆନ୍ତା; କିନ୍ତୁ ଏହି ସମୟରେ ମୂକ ଶ୍ୟାମକିଶୋର ପାଟି ଫିଟାଇଲା । କହିଲା,

"ସାର୍ ! ଆପଣ ଶୁଣିଥିବେ ମିଷ୍ଟର ଅଧିକାରୀଙ୍କ କଥା । ଆଉ କେଉଁ ଡିପାର୍ଟ-ମେଣ୍ଟରୁ ତଦନ୍ତ କରିବାକୁ ଆସିଥିଲେ । ତାଙ୍କୁ ମଧ୍ୟ ଏମିତି ସବୁ ହୋଇଥିଲା, ସିଧାବାଟକୁ ଆଣିବା ପାଇଁ ଚେଷ୍ଟା କରି ହୋଇଥିଲା,, କିନ୍ତୁ ସେ ରାଜି ହେଲେ ନାହିଁ । କିଛି ଦିନ ଉତ୍ତାରୁ ତାଙ୍କ ଶବ ଲେକ୍‌ଟାଉନ୍ ଦରିଆରେ ଭାସୁଥିବାର ଦେଖା-ଗଲା । ଖବର କାଗଜରେ ବାହାରିଲା, ଦୁର୍ବୃତ୍ତ ସମାସବାଦୀ ଆଉ ଗୋଟାଏ ମାଷ୍ଟରଙ୍କୁ ମାରି ପକେଇଲେ—

ଭଦ୍ରେ,, କୋଉ କୁର୍ବକି (ତୁମ ଦୃଷ୍ଟିରେ ବୋଧହୁଏ ସୁରୁକି) ମୋ ଆଖି ଆଗରେ ଝିଲସି ଉଠିଲା, ମୋତେ ଅନ୍ଧ କରିଦେଲା କେଜାଣି, ମୋ ପାଟିରୁ ବାହାରିଗଲା,

'ବେଶ୍ । ମୁଁ ମଧ୍ୟ ରାଜି ନୁହେଁ । ଆପଣ ଯାଇପାରନ୍ତି ।'

ଆଉ କଣ ଲେଖିବି ? ରାତି ଅଧା ହେବାକୁ ବସିଲାଣି । ମୁଁ ନିଶ୍ଚିନ୍ତ ଉଦ୍ବିଗ୍ନ ହୋଇ ସାରିଲିଣି । ଆଜି ନହେଲେ କାଲି, କିମ୍ବା ପରଦିନ ମୋର ମୃତଦେହ ନର୍ଦ୍ଦମାରେ ଭାସିବ, ରାସ୍ତାଘାଟରେ ପଡ଼ିଥିବ । ଲୋକେ ଜାଣିବାକୁ ବଡ଼ ଲୋଭୀ ନାଗା ନ ମେଇଟେଇଁ ଆଉ ·ଗୋଟାଏ ମାଷ୍ଟରଙ୍କୁ ଖତମ କରିଦେଲେ, କିନ୍ତୁ ତୁମେ ତ ବୁଝିବ ! ସେଇଥିପାଇଁ ଏ ଚିଠି ଲେଖୁଛି ଜଣେଇବାକୁ ଯେ ମୁଁ ଚିତ୍ରାଙ୍ଗଦା ଠାରେ ହାରି ଗଲି ସିନା; ଏମିତି ଭାବରେ ହାରି ଗଲି । ଦାଢ଼ିରୁ ଖସିଲି । ଶିବା ଚେଷ୍ଟାରେ ହରିବ, ଅବା ଶହୀଦ ବନିଗଲି । କଣ କହୁଛ ?

ତୁମର ସହବାସରେ ଆହୁରି ପୂଜାଏ କାଗଜ ଗାରେଇଥିଲେ ଅଧିକା କଣ ହୋଇ ଥାଆନ୍ତା ? ମୋ ପାଇଁ ଅପେକ୍ଷା କରିବ ନାହିଁ ।

ତୁମର, ଆର୍ଯ୍ୟପୁଞ୍ଜ

*